# କବିତା କୋଣାର୍କ

ସଂକଳକ

ଡକ୍ଟର ପ୍ରମୋଦ କୁମାର ମହାନ୍ତି
କମଳାକାନ୍ତ ପଣ୍ଡା (କଳ୍ପାନ୍ତ)



ଓଡ଼ିଶା ସାହିତ୍ୟ ଏକାଡେମୀ
ସଂସ୍କୃତି ଭବନ, ଭୁବନେଶ୍ୱର

କବିତା କୋଣାର୍କ

*ସଂକଳକ*

ଡକ୍ଟର ପ୍ରମୋଦ କୁମାର ମହାନ୍ତି

କମଳାକାନ୍ତ ପଣ୍ଡା (କନ୍ତ୍ରାନ୍ତ)

*ପ୍ରକାଶକ*

ଓଡ଼ିଶା ସାହିତ୍ୟ ଏକାଡେମୀ

ସଂସ୍କୃତି ଭବନ, ଭୁବନେଶ୍ୱର - ୭୫୧୦୧୪

ପ୍ରଥମ ପ୍ରକାଶ : ୨୦୧୫

ମୁଦ୍ରଣ : ସତ୍ୟବ୍ରତ ଅଫ୍‌ସେଟ୍

ଟାଉନ ହଲ ରୋଡ଼, କଟକ - ୯

ମୂଲ୍ୟ : ୩୫୦ ଟଙ୍କା (ତିନିଶହ ପଚାଶ ଟଙ୍କା) ମାତ୍ର

Kavita Konark

*Compiled by*

**Dr. Pramod Ku. Mohanty**

**Kamalakanta Panda**



*Published by*

**Odisha Sahitya Akademi**

Sanskrit Bhawan,

Bhubaneswar - 751014

*First Edition* : **2015**

*Printed at*

**Satyabrata Offset**

Town Hall Road, Cuttack - 753009

Price : **Rs.350/-**

**Rupees Three Hundred Fifty only**

**ISBN - 81-7586-204-3**

# ପ୍ରାଗ୍‌ଭାଷ

ଉଭୟ ଓଡ଼ିଆ ଓ ଇଂରାଜୀରେ 'କୋଣାର୍କ'ର କାରିଗରୀ, ଉତ୍କଳୀୟ ସ୍ଥାପତ୍ୟ ତଥା ପ୍ରସ୍ତର ଦେହରେ ଖୋଦିତ ଶିଳ୍ପ ଭାସ୍କର୍ଯ୍ୟକୁ ନେଇ ବହୁଗୁଡ଼ିଏ ଉପାଦେୟ ଗ୍ରନ୍ଥ ଚିନ୍ତାଶୀଳ ଲେଖକମାନେ ବିଭିନ୍ନ ସମୟରେ ରଚନା କରିଯାଇଛନ୍ତି । ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କଠୁ ଆରମ୍ଭ କରି ଏଲିସ୍ ବୋର୍ନର ଓ ଡୋନାଲ୍‌ଡ଼ସନ୍‌ଙ୍କ ପର୍ଯ୍ୟନ୍ତ ବ୍ୟକ୍ତି ବିଶେଷ ଓଡ଼ିଆ ଜାତିର ଏଇ ମହନୀୟ କୃତିକୁ ବିଶ୍ୱ ଦରବାରରେ ଉପସ୍ଥାପନ ଦିଗରେ ଅଶେଷ ପରିଶ୍ରମ ସ୍ୱୀକାର କରିଛନ୍ତି । ତେବେ କୋଣାର୍କକୁ ଉପଜୀବ୍ୟ କରି ଗଢ଼ିଉଠିଥିବା ଓଡ଼ିଆ କବିତାମାନଙ୍କୁ ଏକତ୍ରିତ କରି ଏକ ସଂକଳନ ପ୍ରକାଶନର ଭାର ପ୍ରଥମ ଥର ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ନିଜ ହାତକୁ ନେଇଛି । ୨୦୦୨ ମସିହାରେ କୋଣାର୍କରେ ଏକ କବି ସମ୍ମେଳନ ଏକାଡେମୀ ପକ୍ଷରୁ ଆୟୋଜିତ ହୋଇଥିଲା । ଏହି ଉପଲକ୍ଷେ 'ପଏମ୍‌ସ ଏଟ୍ କୋଣାର୍କ' ଶିରୋନାମାରେ ଏକ ଦ୍ୱି-ଭାଷୀ କବିତା ସଂକଳନ ପ୍ରକାଶିତ ହୋଇଥିଲା । ତେବେ କବିତାର ସଂଖ୍ୟା ଓ ପୃଷ୍ଠା ଦୃଷ୍ଟିରେ ତାହା ପର୍ଯ୍ୟାପ୍ତ ନଥିଲା । କୋଣାର୍କ ଆଧାରିତ ଏହି କବିତା ସଂକଳନରେ ସ୍ଥାନିତ କବିତାଗୁଡ଼ିକ ଖୋଜିବାରେ ଉଭୟ ସଂକଳକ କବି ଡକ୍ଟର ପ୍ରମୋଦ କୁମାର ମହାନ୍ତି ଓ କବି କମଳାକାନ୍ତ ପଣ୍ଡା (କଜ୍ଜାନ୍ତ) ଅଶେଷ ପରିଶ୍ରମ ସ୍ୱୀକାର କରିଥିବାର ପ୍ରମାଣ ପୁସ୍ତକଟିରୁ ସ୍ୱତଃ ଜଣାପଡୁଛି । କବିବର ରାଧାନାଥ ରାୟଙ୍କଠୁ ଆରମ୍ଭ କରି ହଂସନାଥ ମୁଦୁଲିଙ୍କ ପର୍ଯ୍ୟନ୍ତ ୨୧୯ ଜଣ ଓଡ଼ିଆ କବିଙ୍କ ସୃଷ୍ଟି ସମୂହ ଏଥିରେ ସନ୍ନିବେଶିତ ।

କୋଣାର୍କର ସ୍ଥାପତ୍ୟ ଶିଳ୍ପୀ ଜୀବନର ଏକ ଜୀବନ୍ତ ଆଲେଖ୍ୟ । ରାଜକୀୟ ସମରସଜ୍ଜା ହେଉ ବା ଶିଷ୍ୟଙ୍କ ଗୁରୁ ପରିଚର୍ଯ୍ୟା, ସନ୍ନ୍ୟାସୀର ଏକାଗ୍ର ତପ ହେଉ କିମ୍ବା ଗାୟକର ଲଳିତ ସଙ୍ଗୀତର ତାନ, ଏସବୁ ଦୃଶ୍ୟାବଳୀ ଯେମିତି ମନ୍ଦିରର ଗାତ୍ରରେ ବିବିଧ ଭାବାବେଶ ନେଇ ଫୁଟି ଉଠିଛି, ଠିକ୍ ସେଇଭଳି ବିଭିନ୍ନ ରସ, ଛନ୍ଦ, ଲାଳିତ୍ୟ ତଥା ସାଙ୍ଗୀତିକତା ମାଧ୍ୟମରେ ଅନୁରୂପ ଭାବେ ଏଇ ପୁସ୍ତକର ପୃଷ୍ଠାମାନଙ୍କୁ କବିତାମାନେ ଆବୋରି ସାରିଛନ୍ତି । ନିବିଡ଼ ଇନ୍ଦ୍ରିୟାନୁଭୂତି, ସୌନ୍ଦର୍ଯ୍ୟପ୍ରୀତି ତଥା କଳ୍ପନାର ବିଭୂଷିତ ତ୍ରିବେଣୀ ଧାରରେ ସୃଷ୍ଟି ପ୍ରାଣ ପ୍ରକ୍ଷାଳିତ ହେଲା ଭଳି ପାଠକୀୟ ତୃଷ୍ଣାକୁ ପୁସ୍ତକଟିର ପୃଷ୍ଠାମାନେ ମେଣ୍ଟାଇବା ଦିଗରେ ସମର୍ଥ ହେବେ ବୋଲି ମୋର ଆଶା ଓ ବିଶ୍ୱାସ । ମୁଁ ଉଭୟ ସଂକଳକଙ୍କୁ ଏହି ସଂକଳନଟିର ପ୍ରୟାସ ସକାଶେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ଧନ୍ୟବାଦ ଅର୍ପଣ କରୁଛି ।

**ଅଶ୍ୱିନୀ କୁମାର ମିଶ୍ର**
ସଚିବ
ଓଡ଼ିଶା ସାହିତ୍ୟ ଏକାଡେମୀ

# ମୁଖବନ୍ଧ

କୋଣାର୍କ ହେଉଛି ଅନନ୍ୟ ଚାରୁକଳା ସନ୍ଦିତ କଳିଙ୍ଗ, ଉତ ତଥା ଓଡ଼ିଶାର ଏକକ ସମ୍ମୋହନକାରୀ ଅର୍କକ୍ଷେତ୍ର । ଏଠାରେ ଅନିଂଦ୍ୟା ଅପରୂପା ସାଇକି (Psyche) ଙ୍କର ପ୍ରେମ ଉପାସିତା ଯୌବନର ଆବେଗ- ତୀକ୍ଷ୍ଣ ବର୍ଚ୍ଛାସବୁ ସୌମ୍ୟଦର୍ଶନ ପ୍ରେମ-ଦେବତା କ୍ୟୁପିଡ୍‌ଙ୍କ ଛାତିରେ ନିରବଧି ବିଦ୍ଧ ହେଉଥାଏ । କେତେ କେତେ ଅଭିଶପ୍ତ ସିସିଫସ୍ ପୁଣି ସୁଉଚ୍ଚ ମନ୍ଦିରର ତୀଖକୁ- କେବେ ମଧ ପାର୍ଶ୍ୱଦେଶକୁ ପଥର ଟେକି ଟେକି ନେବାର କାରୁଣ୍ୟ-କ୍ଲେଶ କୋଣାର୍କର ସର୍ବାଙ୍ଗରେ ଉଙ୍କିମାରନ୍ତି । ଆପଣାର ଗ୍ରୀବା ଓ ଜୁଡ଼ାରୁ ଫୁଲ ଝଡ଼େଇ ନିଖିଳର ସୌନ୍ଦର୍ଯ୍ୟକୁ ଆପଣାର ଅନୁପମ ସୁଷମାରେ ଅପଲାଞ୍ଛିତ କରୁଥିବା ଚନ୍ଦ୍ରଭାଗା ନଦୀର ବେଳାରେ ଧାବିତା ଲାସ୍ୟମୟୀ ମୁକ୍ତ ଆଲୁଳିତ-କେଶା ଡାଫନି ପଛେ ପଛେ କେତେ ଦିବ୍ୟତନୁ ଆପଲୋ ଅନୁଧାବନ କରୁଥିବାର ହାଓ୍ୱା ( ଓଡ଼ିଶାର ଜଣେ ପ୍ରାତଃ ସ୍ମରଣୀୟ କବି ରାଧାନାଥ ଯାହାକୁ ଗ୍ରୀସ୍ ଦେଶରୁ ପାଳି ଆଣି "ଚନ୍ଦ୍ରଭାଗା" ନାଆଁ ଦେଇଛନ୍ତି) ଏଠି ପ୍ରତି ଭାବ-ସଂବେଦନଶୀଳ ଦର୍ଶକର ଝାଳଓଦା କପାଳକୁ ଛୁଇଁଛୁଇଁ ଯାଏ ।

ନିଜର ଲଳିତ ସୁନ୍ଦର ବିସ୍ମୟକାରୀ ଆୟତନ ମଧ୍ୟରେ କୋଣାର୍କ ଏକ ମୂର୍ଚ୍ଛିତ ସିମ୍ଫୋନୀ- ସମନ୍ୱିତ ବାଦ୍ୟନାଦ । ଏହି ସ୍ଥାନରୁ ବହୁ ରସିକ ଓ ଚାରଣ ଦର୍ଶକ ଜୀବନାନୁରକ୍ତିର ଦାଦରା, ସାଏରୀ, ଗଜଲ ଓ ଚମ୍ପୁସବୁ ଶୁଣାଇଛନ୍ତି । ସେମାନଙ୍କର ରାଗମାଳା ସିଦ୍ଧ ଓଠଗୁଡ଼ିକରୁ ଉଚ୍ଚାରିତ ହୋଇଥିବା ଉଚ୍ଚାଙ୍ଗ ଝଂକାରର ବିଳମ୍ବିତ ଲୟ, ମଧ ଲୟ ଓ ଦ୍ରୁତଲୟର ବନ୍ଦିଶ୍ ଭିତରେ କୋଣାର୍କର ନଟୀମାନଙ୍କର ଭାବ ସପ୍ତକର ଉଦାରା, ମୁଦାରା, ତାରା * ତ୍ରିଭୁବନକୁ ସନ୍ଦିତ କରିଆସୁଛି । ଅସହିଷ୍ଣୁ କଳାପାହାଡ଼ ହେଉ ବା ସମୟ- ଦୈତ୍ୟ ହୁଅନ୍ତୁ ସେମାନଙ୍କର ଈର୍ଷାତୁର କର୍କଶ ସ୍ପର୍ଶରେ ଏ ସ୍ଥାପତ୍ୟର କମନୀୟ କଟୀଦେଶ ଏ ପର୍ଯ୍ୟନ୍ତ ମଧ ଚିତ୍ତାକର୍ଷକ ଅଛି । ଶାଳାଭଞ୍ଜିକାମାନଙ୍କର ସ୍ମିତହସ ଓ ବିମନା ନୂପୁରର ଝଂକାରସବୁ ମନ୍ଦୀଭୂତ ହୋଇନାହିଁ । ତଥାପି କୋଣାର୍କ ଲକ୍ଷେ ଯୌବନର ଜଉଘର ହୋଇରହିଛି । ବର୍ଷାର ଆଶାବରୀ ସଂଗୀତ ଭିତରେ, ବସନ୍ତର ଲକ୍ଷ ଲକ୍ଷ ଫୁଲପକା ରେଶମ୍ ଗାଲିଚା ଉପରେ, ଓ

ଜ୍ୟୈଷ୍ଠର ଉଷ୍ଣ ତୀକ୍ଷ୍ଣ କେରା କେରା ରୌଦ୍ର ତାପରେ ମହୋଦଧି ବେଳାଭୂମିର ଖୋଲାମେଲା ପ୍ରାନ୍ତର ଉପରେ ଭଙ୍ଗା କୋଣାର୍କର କାଳ-ଦନ୍ତୁରିତ ବେଢ଼ା ଓ ଶରୀର ଆପଣାର ପ୍ରତିଟି ବିନ୍ଦୁରେ ଏବେ ବି ପ୍ରେମର ତଥା ଶୃଙ୍ଗାରର କଦମ୍ବ ଫୁଟାଏ । ନିଜକୁ ତରଙ୍ଗାୟିତ କରି ତରୁଣ ବୟସର ମୁକ୍ତ ଝର୍କା ଭିତରକୁ ଦମକାଏ ଦକ୍ଷିଣା ପବନ ଭଳି ବିନାନୁମତିରେ ପଶି ଆସେ ।

ଓଡ଼ିଆ ଗଜପତି ଯୁବରାଜ ନରସିଂହଙ୍କର ନିବେଦିତ ରସବୋଧ, ସୌନ୍ଦର୍ଯ୍ୟବୋଧ ଅଥବା ସୌରପୂଜାର ଦଲିଲ୍ ବା ଚିଠା ଭାବରେ ନୁହେଁ– କୋଣାର୍କକୁ ନିଜ ନିଜ ଭଲ ପାଇବାର ଝଂକାରରେ ଦୁଇଶହ କୋଡ଼ିଏ ଜଣ କବି ଭାବ-ସ୍ପନ୍ଦିତ ହୋଇଛନ୍ତି, ସେମାନଙ୍କ ମଧ୍ୟରେ କବିବର ରାଧାନାଥ, ଗୋପାଳବଲ୍ଲଭ (ଭୀମା ଭୂୟାଁ'ର ଲେଖକ), ଉତ୍କଳମଣି ଗୋପବନ୍ଧୁ, ନୀଳକଣ୍ଠ, ମାନସିଂହ ଓ ସଚ୍ଚିରାଉତରାୟ ଭଳି ପ୍ରଥିତଯଶା କାବ୍ୟ ସାଧକ ଯେପରି ଅଛନ୍ତି, ଗଭୀର ଅଧ୍ୟୟନ, ଅନ୍ତର୍ଦୃଷ୍ଟି ଓ ଗବେଷଣାରେ ସମୃଦ୍ଧ ଗଦ୍ୟ ଲିଖିତ "କୋଣାର୍କ" ଗ୍ରନ୍ଥର ପ୍ରାବନ୍ଧିକ ପଣ୍ଡିତ କୃପାସିନ୍ଧୁ ମଧ ଅଛନ୍ତି କିନ୍ତୁ ସାବଲୀଳ କୋଣାର୍କର କାବ୍ୟ-ତରଙ୍ଗରେ ମଗ୍ନଦେହା ଓ ମଗ୍ନମନା ଏଇ ଲେଖକ ଜଣକ ତଥା ସଂପାଦକ-ଦ୍ୱୟଙ୍କୁ ବ୍ୟକ୍ତିଗତ କାବ୍ୟ-ରୁଚି ଅନୁଯାୟୀ ଯେଉଁ କେତେଜଣଙ୍କର କବିତାର୍ପଣ ମନଃପୂତ ହୋଇଛି ସେମାନଙ୍କର ତୁଳନାତ୍ମକ କାବ୍ୟ ଆବେଗ ଓ ରସବୋଧର ପ୍ରସାରଣଧର୍ମୀତାକୁ ଏହି ମୁଖବନ୍ଧରେ ସୂଚାଇ ଦିଆଯାଇଛି ।

ଜୀବନର ତାରୁଣ୍ୟରେ ସୌନ୍ଦର୍ଯ୍ୟ-ଶିଳ୍ପର ଆବେଦନରେ କୋଣାର୍କ ପ୍ରତି ଦର୍ଶକର ଅନ୍ତରକୁ ଯେପରି ବିଦ୍ଧକରେ ତାକୁ ମର୍ମେ ମର୍ମେ ଅନୁଭବ କରି ମାନସିଂହ ସେଦିନ ଗାଇଗଲେ:

"ଜୀବନର କେତେ ଖେଳାଲୀଳା
ଅଙ୍ଗେ ତୁହି ଧରିଛୁ ଛବିଳା
X X X X
ରାଜା ତେଜି ପ୍ରାସାଦ ବିଭବ
ତୂଳିତଳ୍ପ ସୁଖ ଅନୁଭବ
ଜାନୁପାତି ତୋର ମୁଖେ ଚାହିଁ ଚାହିଁ କଟାଇଲେ ଦିନ
ସନ୍ନ୍ୟାସୀ ତୋ ପଦତଳେ ତପ କରି ତନୁ କଲେ କ୍ଷୀଣ ।

ଦେଖୁ ଦେଖୁ ସମାଗତା ନାରୀପଦ- କିଙ୍କିଣୀ- କମ୍ପନେ
କଲେ ମୁଖରିତ ଦିନେ ବକ୍ଷ ତୋର ଲାକ୍ଷାରସ ବର୍ଣ୍ଣେ ।
ରଂଜିଲେ ମଧୁର କରି ଭୂମି ତୋର ଶୋଭାର ଉତ୍ସବ ।
ଲଜ୍ଜା ଦେଇ ପୁଷ୍ପ ବଇଭବ ।”

ଅପୂର୍ବ ବାଣୀ- ଆବେଗରେ ମାନସିଂହ ଲେଖନୀ ଯେଉଁ ଶବ୍ଦମାଳା ଏଠାରେ ଉଚ୍ଚାରଣ କରିଛି, ତାହାର ଅନ୍ତଃକରଣକୁ ବୁଝିବାକୁ ଗଲେ ସେଦିନ ପୂର୍ଣ୍ଣଗର୍ଭା ଚନ୍ଦ୍ରଭାଗାର ଉପତ୍ୟକାରେ କେନ୍ଦ୍ର କୁସୁମ ପରି ବାରଶତ ଶିଳ୍ପୀ-ହସ୍ତର ନିଖୁଣ ଅର୍କତୀର୍ଥ ପ୍ରତି ସିଂହାବଲୋକନ କରିବାକୁ ପଡ଼ିବ । ମାନସିଂହ ଦୃଷ୍ଟି ପ୍ରେମିକ-କବିର ଦୃଷ୍ଟି: ଆସକ୍ତ ବାଣୀସାଧକର ଚାହାଣି: ରୋମାଣ୍ଟିକ ମନା ଦୟିତର ଲୋଚନ । ସେ ସମର୍ପିତ ପ୍ରେମିକ ଭଳି ବହୁ ଉଚ୍ଛନ୍ନ ଉଚ୍ଛ୍ୱାସକୁ ଆତ୍ମସାତ୍ କରି କୋଣାର୍କର ବିପର୍ଯ୍ୟୟ ପାଇଁ ଅସହିଷ୍ଣୁ କାଳସ୍ରୋତ ସହିତ କଳହ କରିଛନ୍ତି । ବେଳେବେଳେ ନିଜ ବିଦଗ୍ଧ ଆତ୍ମାର କ୍ରନ୍ଦନକୁ ଅଟକାଇ ପାଠକଟିର ମାନସିଂହ- ସାରଙ୍ଗୀକୁ କାନଡେରି ଶୁଣିବାକୁ ଇଚ୍ଛାହୁଏ । ସୂର୍ଯ୍ୟସ୍ନାତ ସେଇ ଅତୀତର ପ୍ରାନ୍ତ- ନିଶୀଥର ପରମ ଲଗ୍ନରେ ଯେପରିକି ବାରଶତ ଶିଳ୍ପୀଙ୍କର ଚତୁର୍ବିଂଶଶତ ହାଡ଼ର ନିହାଣ- ହାତୁଡ଼ିର ସମୂହ - ଗଢ଼ିବା ଧ୍ୱନି ଭିତରୁ ଅଗଣିତ ଦର୍ଶକମାନଙ୍କର ଆଖିର କୋଳ ପୂର୍ଣ୍ଣ କରି ଉଷାର ସଜ-ସତେଜ ଅନାଘ୍ରାତ ସ୍ଫୁଟିତ ଅରବିନ୍ଦ ହୋଇ ପୂର୍ଣ୍ଣାଙ୍ଗ କୋଣାର୍କ ସ୍ୱର୍ଣ୍ଣବାଲୁକା ଶଯ୍ୟା ଉପରେ ଆକାଶକୁ ବର୍ଚ୍ଛାବିଦ୍ଧ କରୁଥିବ : ସେଦିନ ଏ ଭାସ୍କର୍ଯ୍ୟକୁ ସତେ ଅବା ନଭନୀଳ, ଜଳନୀଳ କ୍ଷୀର ସମୁଦ୍ରରେ ଅନନ୍ତ ଶୟନରୁ ଉତ୍ଥିତ ବିଷ୍ଣୁପତ୍ନୀ ବିଶ୍ୱରମା ମନୋରମା ମହାଲକ୍ଷ୍ମୀ ବୋଲି ମନେକରି ନରପଦ ଓ ଜନପଦର ସ୍ତବ୍ଧ ଓ ସ୍ତମ୍ଭୀଭୂତ ପୂର୍ବପୁରୁଷବର୍ଗ ବିସ୍ମୟ-ବିସ୍ଫାରିତ ନୟନରେ ଆଭୂମ ପ୍ରଣାମ କରିଥିବେ ।

କିନ୍ତୁ କବିର ଏ ଲକ୍ଷ୍ମୀମନ୍ତ ଶୁଭ-ସୁନ୍ଦର ଚେତନା-ପ୍ରବାହ ବିରୁଦ୍ଧରେ ଏ କ’ଣ ହେଲା ? କାହା ନିଷ୍କରୁଣ ହାତର ପଶାକାଠି କୋଣାର୍କର ଜୀବନ ଓ ଯୌବନକୁ ଦନ୍ତୁରିତ କରିବ ବୋଲି ବାଜି ଜିତିଗଲା ? ଅର୍କତୀର୍ଥର ଚୁମ୍ବକରେ ମଣିଷ ଏଠିକି ଆମନ୍ତ୍ରିତ ହୋଇ ଆସେ ସତ ମାତ୍ର ଏହାର- ଖଣ୍ଡିତ ଶ୍ରୀ ନିକଟରେ ଧକ୍କାଖାଇ ମୁହଁ ଶୁଖାଏ । ଆଃ ! ପ୍ରଶ୍ନ ଉଠେ କେଉଁ କେଉଁ ଶୁଭ୍ର ବାଲୁକାରାଶିର ମର୍ମନ୍ତୁଦ ଝଡ଼ ଏହାର ଫ୍ରେସକୋ, ସ୍ମାରକ ହର୍ମ୍ୟ ଓ ସୂର୍ଯ୍ୟ- ସୌଧ- ମନ୍ଦିରକୁ ଏପରି ଅଥର୍ବ ଓ ଅନ୍ୟମନସ୍କ କଲା ? କବି ମାନସିଂହ କୋଣାର୍କରେ ଆମରି ଭାବାବେଶକୁ ଆମରି ଘରେ ଘରେ ବିତରଣ କରିଗଲାଭଳି ମନେହୁଏ । ସମଅନୁଭୂତିଶୀଳ ରକ୍ତରେ ମିଶିଯାଏ ସେ ଭାବ ।

ହେ କୋଣାର୍କ ବିଗତ ଯୌବନା ସମ୍ବୋଧନଟି ମନ୍ଦିରର ପାଛୋଟା ତାରୁଣ୍ୟ ଓ ବିଦାୟୀ ବୟସ ଉଦ୍ଦେଶ୍ୟରେ ଅଭିପ୍ରେତ । କୋଣାର୍କ କବିଙ୍କର ପୁରାତନ ପ୍ରିୟ ବାନ୍ଧବୀ : କବିପ୍ରିୟା । ସିଏ ଏକ ମୂର୍ଚ୍ଛିତ ଯୌବନା ପ୍ରାୟୋଲଗ୍ନା, ସମର୍ଥା ସ୍ୱୈରିଣୀ- ଯିଏ ଆଜି ଅଶରୀରୀ କାଳର ଅସହିଷ୍ଣୁ କରକା ମାଡ଼ରେ ଭୂଲୁଣ୍ଠିତା, ମୁଣ୍ଡିତା : ଲାବଣ୍ୟର ନଷ୍ଟ ଅସ୍ଥିବିଶେଷ । ତାହାର କାରଣ ସ୍ୱରୂପ କବି ନିର୍ଦ୍ଦେଶ କରନ୍ତି :

"କ୍ରୁଦ୍ଧ ହେଲା କୀର୍ତ୍ତିକୀଟ କାଳ
କ୍ରମେ ହେଲା ପ୍ରକୃତି କରାଳ
ଗଉରବ ଅସହିଷ୍ଣୁ ବୁଲାଇଲେ ନୟନ ରକ୍ତିମ
ସୁକୋମଳ ଗ୍ରୀବା ତବ ତ୍ରସ୍ତଭୟେ ହୋଇଲା ବଙ୍କିମ ।
X X X X
ବିଶ୍ୱ ଦେଖେ ଆଜି ମାତ୍ର ସେ ଶୋଭାର ଖଣ୍ଡିତ କଂକାଳ
ଲାବଣ୍ୟର ନଷ୍ଟ ଅସ୍ଥିମାଳ ।"

କ୍ରୁଦ୍ଧ ହେଲା କୀର୍ତ୍ତିକୀଟ କାଳ ? ହାୟ କେତେ ନିଷ୍କରୁଣ ଓ ମର୍ମନ୍ତୁଦ ଏ କାଳର ଦାନ୍ତଗୁଡ଼ିକ ନୁହନ୍ତି ? କୋଣାର୍କ ସପକ୍ଷରେ କବି କାଳ ନିକଟରେ କବି-ସୁଲଭ କରୁଣ କଳହ କରିଚନ୍ତି । ଯଦି ଅତୀତ ଆଜି ବି ବର୍ତ୍ତମାନଟିଏ ହୋଇ ଆଖି ଆଗରେ ନିଜ ରୂପରେ ଠିଆ ହୋଇ ପାରନ୍ତା ? ଯଦି ଭବିଷ୍ୟତକୁ ମଧ କୁର୍ତ୍ତାର ଛାତି ପକେଟରେ କିମ୍ବା ମନିବ୍ୟାଗ୍‌ରେ ମନଇଚ୍ଛା ବ୍ୟବହାର କରି ହୁଅନ୍ତା, ଯଦି ସରଳ ରେଖାଟିଏ ପରି ଅତୀତ ବର୍ତ୍ତମାନ ଓ ଭବିଷ୍ୟତକୁ ମଧ ଏକାବେଳେ ଆଙ୍କି ହୁଅନ୍ତା ଓ ଅନେଇ ହୁଅନ୍ତା ! କବି ଇଲିଅଟ୍ କ'ଣ କହିଗଲେ :

Time present and time past
Are both present in time future
And time future contained in time past.
If all time is eternally present
All time is unredeemable.

ଅର୍ଥାତ୍ : "ଯୁଗପତ୍ ଗତାୟୁ ଓ ସଂପ୍ରତି ସମୟ ଭବିତବ୍ୟର ଜରାୟୁ ମଧରେ ପରିସୀମିତ ଏବଂ ଅତୀତ ମଧ ଅନାଗତର ଆଧାର-ପାତ୍ର । ଯଦିଚ ସର୍ବତୋଭାବେ ସମୟର ସବୁ ପର୍ଯ୍ୟାୟତକ କାଳଜୟୀ ହୋଇ ବର୍ତ୍ତମାନ, ତଥାପି ସମୟର

ବ୍ୟାପ୍ତିକାଳରେ ଅବିଭାଜ୍ୟ ସମୟକୁ ଅଙ୍ଗୀକାରଯୁକ୍ତ କରିବା କଷ୍ଟକର । ଅର୍ଥାତ୍ ସାମଗ୍ରିକଭାବେ ସମୟକୁ ଫେରି ପାଇବା ଅସମ୍ଭବ ।"

କବି ରବୀନ୍ଦ୍ରନାଥ ମଧ୍ୟ ତାଙ୍କର ପ୍ରସିଦ୍ଧ 'ତାଜମହଲ' କବିତାରେ ତାଜମହଲକୁ କାଳର ଭାଲପଟ ଉପରେ ଏକ ବିନ୍ଦୁ ଶୁଭ୍ର ସମୁଜ୍ଜ୍ୱଳ ଅଶ୍ରୁବିନ୍ଦୁ ବୋଲି କଳ୍ପନା କରି ସିଦ୍ଧି-ସୌନ୍ଦର୍ଯ୍ୟର ଦିଗନ୍ତକୁ ଅଧିକ ପ୍ରସାରିତ ଓ ବ୍ୟାପକ କରିପାରିଛନ୍ତି :

"ହୀରା ମୁକ୍ତା ମାନିକେର ଘଟା
ଯେନ ଶୂନ୍ୟ ଦିଗନ୍ତେର ଇନ୍ଦ୍ରଧନୁ ଛଟା
ଯାୟ ଯଦି ଲୁପ୍ତ ହୟେ ଯାକ୍
ସୁଧୁ ଥାକ୍
ଏକ ବିନ୍ଦୁ ନୟନେର ଜଲ୍
କାଲେର୍ କପୋଲ୍ ତଲେ ଶୁଭ୍ର
ସମୁଜ୍ଜ୍ୱଲ୍ ଏ ତାଜମହଲ୍ ।"

କିମ୍ବା

"ହେ ସମ୍ରାଟ କବି
ଏଇ ତବ ହୃଦୟେର ଛବି
ଏଇ ତବ ନବ ମେଘଦୂତ୍
ଅପୂର୍ବ ଅଦ୍ଭୁତ୍
ଛନ୍ଦ ଗାନେ
ଭରିଆଛେ ଅଲକ୍ଷ୍ୟେର ପାନେ ।

X X X X

ଭାଷାର ଅତୀତ ତୀରେ
କାଙ୍ଗାଲ୍ ନୟନ ଯେଥା ଦାର
ହଥେ ଆସେ ଫିରେ ଫିରେ
ତୁମାର ସୌନ୍ଦର୍ଯ୍ୟ ଦୂତ୍
ଯୁଗ ଯୁଗ ଧରି
ଏରାଇଆ କାଲେର ପ୍ରହରୀ
ଚଲିଆଛେ ବାକ୍ୟହରା ଏଇ ବାର୍ତ୍ତା ନିଆ :
ଭୁଲିନାଇଁ, ଭୁଲିନାଇଁ, ଭୁଲିନାଇଁ ପ୍ରିୟା ।"

ସେଥିପାଇଁ କବିର ଓ ସ୍ରଷ୍ଟାର ତଥା ପ୍ରେମିକର କାଳ ଓ 'କଳା' ପରସ୍ପରକୁ ଅତିକ୍ରମ କରିବା ପାଇଁ ଚେଷ୍ଟା କରନ୍ତି । ମାନସିଂହ ଦୃଷ୍ଟି ଏ ଦିଗରେ ସଚେତନ ଅବଶ୍ୟ । ପ୍ରେମିକ କବିର ବିହ୍ୱଳଦୃଷ୍ଟି କୋଣାର୍କର ଅଳସକନ୍ୟା ଓ ମୃଦଙ୍ଗବାଦିନୀର ମୃଣାଳ ବାହୁଯୁଗ୍ମରେ ଚାପ ଏବଂ ବାଜୁ ବନ୍ଧରେ କଙ୍କଣ ପିନ୍ଧାଇଛି । କର୍ଣ୍ଣରେ କେୟୂର ମଣ୍ଡାଇଛି । କଟିରେ ମେଖଳା ଓ ପାଦରେ ନୂପୁର ଖଞ୍ଜିଛି । ଉଜ୍ଜୟିନୀ ଜୁଡ଼ାରେ ଝିଙ୍କକାଠି ଖୋସାଇଛି । ଅନଳଙ୍କୃତ ପ୍ରତିଟି ଅବୟବକୁ ଅଳଙ୍କୃତ କରିଛି । ରସାନୁଭୂତିର ଏ ଔଜ୍ଜ୍ୱଲ୍ୟ ପ୍ରତି ପାଠକକୁ (ଏ ଯୁଗ ସବୁଜ ନ ହୋଇ ଧୂସର ହେଲେ ବି) ବ୍ରାଉନିଂଙ୍କ ଇଂରେଜୀ କବିତାର ବଂଶୀବାଦକ ରାଜ୍ୟଯାକର ପିଲାଙ୍କୁ ନିଜ ବଂଶୀରେ ଓଟାରି ଅବଶ କଲା ଭଳି ଅବଶ କରାନ୍ତି । ବେଳେବେଳେ ପଂକ୍ତିଗୁଡ଼ିକ ତର୍କହୀନ ଭାବେ ସ୍ୱାଦ୍ୟ ହୋଇ ଉଠିଛନ୍ତି । ଏତେ ଅର୍ଥାନ୍ୱିତ ଭାବସମ୍ଭାର ଦେଖି ମନେହୁଏ କୋଣାର୍କ ଉପରେ ଯେତେ କବିତା ଲିଖିତ, ଏହା ସେମାନଙ୍କ ମଧ୍ୟରେ ଶୀର୍ଷତମ । ମାନସିଂହଙ୍କ କୋଣାର୍କ କବିତାକୁ ଅବହେଳା କରିବା ଅର୍ଥ ସବୁ ଯୁଗର ସବୁ ଭଲ କବିଙ୍କ କୃତିକୁ ଅବହେଳା କରିବା । ବସନ୍ତନିଶିର ବର୍ଣ୍ଣାଢ଼୍ୟବେଦୀ ଉପରେ କବି ମାନସିଂହଙ୍କ ପ୍ରଣାମ କବିଜନୋଚିତ ମନୋଜ୍ଞ । ଏଥିପାଇଁ କବିଙ୍କୁ ଅଜସ୍ର ପ୍ରଶଂସାରେ ପୁରସ୍କୃତ କରିବାକୁ ଇଚ୍ଛା ହୁଏ । ଏଇ କବିଙ୍କ ପ୍ରିୟ ମନ୍ଦିର ବେଢ଼ାରେ ପାଠକକୁ ପରିଚିତ ଉନ୍ମନା ପବନ କୋଳ କରେ । ବିମନା ବଂଶୀ ବାଜେ । ମୃଦଙ୍ଗ ବାଦିନୀର ମୃଦଙ୍ଗଟିପା ମୁଖରିତ ହୁଏ । ମନରେ ନରମ ମୃଦୁ ପାଦଚିହ୍ନ ଆଙ୍କେ । କୋଣାର୍କର ଏହିଭଳି ମନ୍ଦିର ଗାତ୍ରରେ ଅସଂଖ୍ୟ ଅଳସକନ୍ୟାଙ୍କୁ ଜୀବନ୍ତ କରି ସେମାନଙ୍କୁ ମାନସିଂହ-ଆବେଗମୟୀ ବାଣୀ କିପରି ନୃତ୍ୟମୁଖର କରିଛି, ତାହା ବାସ୍ତବରେ ଉପଭୋଗ୍ୟ :

ପ୍ରଥମ ବିଗ୍ରହ :

"ପୂରନିମା ଜହ୍ନମା
ଛୁଇଁ ଦେଉ ନରମେ
ଚାଉଁକିନି ଚମକିଲି
ଜୁଡ଼ା ଖସେ ଭରମେ ।"

ଦ୍ୱିତୀୟ ବିଗ୍ରହ :

"କିଏ ସେ ଲୋ ବଲ ବଲ
କରି ଆଜି ଚାହିଁଲା

ଧୀରେ ମୋର ବକ୍ଷର
ବୃନ୍ତରେ ଛୁଇଁଲା
କେଶ ପାଶେ ଆଉଁଶିଲା
ଲସାଇଲା ମରମ
ଗଣ୍ଡରେ ଚିପି କରେ
ଜନ୍ମାଇ ଘରମ
ସେ ସରମେ ମନେ ମନେ
ମରିଗଲି ସଖୀରେ
ପାଖ ସଖୀ ଅଛି ଦେଖି
ସବୁ କଥା ଆଖିରେ ।"

ରୋମାଣ୍ଟିକ୍ ମଧୁର ସଂଗୀତର ଶୀର୍ଷତମ ବିନ୍ଦୁରୁ ମାୟାଧର କୋଣାର୍କକୁ ନିଜ ଗଣ୍ଡୁଷରେ ସୀଧୁ ଭଳି ପାନ କରିଛନ୍ତି । ଏଥିପାଇଁ କବିଙ୍କର କରୁଣ-କୋମଳ-ହାର୍ଦ୍ଦିକତା ହିଁ ଉଲ୍ଲେଖଯୋଗ୍ୟ । ତାଙ୍କର ଚିତ୍ତାକର୍ଷକ କବିମନ କେବଳ ରୋମାଣ୍ଟିକ୍ ପର୍ଯ୍ୟଟନ କରିନାହିଁ, ରସାନୁଭବର ସହଜ ଓ ନିବିଡ଼ ଚେହେରାକୁ ନିଜେ ଜାଣି ସେ ଅନ୍ୟର ଆଖି ସାମ୍ନାରେ ଜଣାଇବା ପାଇଁ ଖୋଲି ଧରିଛନ୍ତି । ପ୍ରାଚ୍ୟ ଦିଗନ୍ତର ପ୍ରାନ୍ତ ବିନ୍ଦୁରେ ଜମ୍ବୁଦୀପର ଏ ସ୍ଫିଙ୍କସ୍ ମୁହଁରୁ- ଜୀବନ ରଙ୍ଗର ଧ୍ରୁପଦୀ ଓ ତରାନା ସବୁକୁ ସେ କେତେ ଏକନିଷ୍ଠ ହୋଇ ଶୁଣି ନାହାନ୍ତି ! କେତେ ବ୍ରୀଡ଼ାନ୍ୱିତା- କୁଣ୍ଠିତା ଅଭିସାରିକାଙ୍କର ଶିଞ୍ଜିନୀମଥିତ ଅଲକ୍ତକ ପଦଚିହ୍ନ ସବୁକୁ ସେ ନିଜ ଛାତିରେ ତଥାପି ସାଇତି ରଖି ନାହାନ୍ତି !

କବିଙ୍କ ପାଇଁ କୋଣାର୍କ କିମ୍ବଦନ୍ତୀର ଇତିହାସ ନୁହେଁ । ସେ କ୍ଲୀବ- ବନ୍ଧ୍ୟା ନୁହେଁ । ନିରପତ୍ୟା ଜଡ଼ ଶାଳଭଞ୍ଜିକା ନୁହେଁ । ପୋଥି, ତୂଳି, ସିଂହାସନ ଓ ମୁକୁଟ ଫିଙ୍ଗି ଦେଇ ମଥାରେ, ମାଟିର ଧୂଳି ବୋଲି ହୋଇ ଅଥବା ମୁଣ୍ଡପିଟି ସିଏ କୋଣାର୍କର ଆତ୍ମାରେ ନିଜକୁ ନିଃଶେଷ କରିବା ପାଇଁ ଚେଷ୍ଟା କରିଛନ୍ତି । ହାଡ଼ତଳେ ପ୍ରାଣପ୍ରାଚୁର୍ଯ୍ୟର ଗଙ୍ଗା ସୃଷ୍ଟିକରି ଶିରା ଉପଶିରା ଓ ଗ୍ରନ୍ଥି ସକଳରେ ନୃତ୍ୟର ହୋଲି ସୃଷ୍ଟିକରି ମାନସିଂହ ଆସର ସୃଷ୍ଟି କରିଛନ୍ତି :

ପ୍ରଥମ ବିଗ୍ରହ :

"କୁସୁମାକୁ ଆସିବାକୁ
ଡାକ ଦେ'ଲୋ ଉତ୍ତଳ
ଜୋଛନାର ସଞ୍ଚାର
ପାଣି କରେ ପଥର
ଡାକିଆଣ ଆଖି ବାଣ
ଛାଡ଼ିବେ ଏ ବେଳାରେ
ଦିନଯାକ ରହି ମୂକ
ସଢ଼ିବା ବି ହେଳାରେ ?"

ତୃତୀୟ ବିଗ୍ରହ :

"ହେଲାବେଳ ଚଞ୍ଚଳ
ଆରମ୍ଭ ବରଣ
ତାଳ ପାଇଁ ଅସ୍ଥିର
ମୋର ଦୁଇ ଚରଣ ।"

ଚତୁର୍ଥ ବିଗ୍ରହ :

"ଆସ ଯେତେ ସଙ୍ଗିନୀ
ଆନନ୍ଦ ରଙ୍ଗା
ବାରଶତ ଶିଞ୍ଜୀର
କଳ୍ପନା ଗଙ୍ଗା ।

X X X X

ନାଚି ନାଚି ଯୁଗ ଯୁଗ
କ୍ଳାନ୍ତି ତ ନାହିଁରେ
ଏ ଜୀବନ ନିବେଦିତ
ଦେବତାର ପାଇଁରେ ।"

ଏହି ଅନ୍ତରଙ୍ଗ ପ୍ରାଣୋଚ୍ଛଳ କାବ୍ୟ–ଆବେଗ ପାଇଁ କବି ମାନସିଂହଙ୍କୁ ଅଜସ୍ର ଶ୍ରଦ୍ଧାରେ ପ୍ରଣାମ କରିବାକୁ ଇଚ୍ଛା ହୁଏ । ସୌନ୍ଦର୍ଯ୍ୟବୋଧର ସମ୍ପୂର୍ଣ୍ଣତା, ସାମଗ୍ରିକ କାବ୍ୟିକ ପରିପୂର୍ଣ୍ଣତା, କମଳବିଳାସୀ ସୌଖିନ ଧାରଣାର ଏକତ୍ୱ, ସ୍ୱପ୍ନଜୀବୀ କଳ୍ପନା-ବିଳାସୀ ମନର ଅକପଟ ଆନ୍ତରିକତା ଏଥିରେ ଯେପରି ମୂର୍ତ୍ତନ ହୋଇଛି, ତାହା

ମାନସିଂହଙ୍କର ବହୁ ଦିଗରୁ ଆରମ୍ଭ ହୋଇଥିବା କାବ୍ୟଜୀବନର ସର୍ବଶ୍ରେଷ୍ଠ ସୃଷ୍ଟି । ଯାକୁହିଁ ପଢ଼ିଲେ ସୂର୍ଯ୍ୟଦ୍ୱୀପରେ ବନ୍ଦୀ ହେଲାଭଳି ଲାଗେ ।

ଅନେକ ଉତ୍ତୀର୍ଣ୍ଣ ସନ୍ଧ୍ୟାର ସୀମାନ୍ତରେ ସଦ୍ୟ ପ୍ରସାଧିତା କୋଣାର୍କର ଅସଂଖ୍ୟ ଶିଳାକନ୍ୟା ଚପଳ ଜ୍ୟୋତ୍ସ୍ନାର ନିକ୍ଷେଳ ତଳେ ଜୀବନର ଚପଳଶ୍ରୀ ତୋଳିଥିବେ । ଦେହର ପ୍ରତିଟି ସ୍ତମ୍ଭରେ ଶୃଙ୍ଗାରର ନୀପ, ଗଙ୍ଗଶିଉଳି ଓ ମଲ୍ଲି, ମାମିନୀ, ଜୁଇ ଯାଇ ଫୁଟିଥିବ । ନିଜକୁ ମୁରୁଜ ଭଳି ବିଞ୍ଚି ଆଲୁଳାୟିତା ବିଦ୍ଧୁଧା ପାଷାଣୀମାନେ ରସାଳ ଭାବଲୁଆର ଅସମ୍ଭାଳ ହୋଇଥିବେ । ମାନସିଂହୀ ରସମୟ ଦୃଷ୍ଟିରେ ସେହି ଅଗଣନା ପ୍ରାୟୋଲଗ୍ନା ରୂପସୀ ଅଭିସାରିକାଙ୍କର କୁଣ୍ଠିତା ଓ ବ୍ରୀଡ଼ାନ୍ୱିତା ପଦଚିହ୍ନ ବହୁ ପ୍ରାଣପ୍ରାଚୁର୍ଯ୍ୟର ଉଦ୍‌ଯୋଗ ପର୍ବ ରଚନା କରିଛି । ଲାବଣ୍ୟର ମଣ୍ଡପ ଉପରେ ଏକ ଶିଳା - ବାଳିକାର ଅନୁରାଗମୟ ଚୁପ୍‌ଚାପ୍ କଥା ଅପର କାନରେ ଯାଇ ବାଜେ । ଅପର ଓଠର ଚୁପ୍‌ଚୁପ୍ ଶଢ ଆଉ କାହା ଥମ୍‌ଥମ୍ ଆଖିରୁ ନୀଳ ନିଗାଡ଼େ ।

ଅପର ଅପର ଦେହେ
ଦେହ ଢାଳି ଅଳସେ
ଚଳାଇଲେ ଚରଣ
ସହସା ସେ ନିରଞ୍ଜନ
ମନ୍ଦିର ଧ୍ୱନିଲା
ଚଳପଦ ଭୂଷଣ ।”

ଆନ ବୋଲେ “ପ୍ରିୟ ଚିର
ଧରିଛନ୍ତି ବାହୁରେ
ଅଙ୍ଗ ମୋ ଅଳସ
ପଦ ମୋର ଖଲ ଖଲ
ନାଚିବାରେ ହୁଏ ଲୋ
କାଖେ ଧରି କଳସ ।”

ଆନ ବୋଲେ– “ଯୁଗଯୁଗ
ସଖୀ ମୋର ଯତନେ
ବାଁଧୁଅଛି କବରୀ

ଧରିଅଛି ଯୁଗଯୁଗ
ଦରପଣ ମୁଖକୁ
ଆଉ ଏକ ନାଗରୀ ।

ଶିଳ୍ପୀ ମତେ
ଚାହିଁଥାଏ, ଥୋଉଥାଏ
ନାହିଁ ପାରେ ଛାଡ଼ି ସେ
ମାଜି ଦିଏ ଲପନ
ସଖାମେଳେ ଫେରୁଥାଏ
ଚାହୁଁଥାଏ ପଛକୁ
ମତେ ତା'ର ସ୍ୱପନ ।"

ବହୁ ପ୍ରତୀକ୍ଷିତ ବିଳମ୍ବିତ ଚନ୍ଦ୍ରୋଦୟ ପରେ ପରେ ଯେତେବେଳେ ପ୍ରତି ମଣିଷର ଆଖିଡ଼ୋଳାର ଅନର୍ଗଳ ନଇ ଭିତରେ କୋଣାର୍କର ହୀରା, ନୀଳା, ମର୍କତ ଓ ପନିକଣ୍ଠି ଖଚିତ ନୂଆ ନୌକା ଝଲସି ଉଠେ, ତାହା ଆତ୍ମାର ଆତ୍ମାରେ ଜଳତରଙ୍ଗ ବଜାଏ । ପ୍ରତିଟି ସ୍ତମ୍ଭୀଭୂତ ହୃତ୍‌ପିଣ୍ଡରେ ତଟସ୍ଥ କାଳୀୟଦଳନ ଆଣେ । ନିଜର ଭାସ୍କର ଐଶ୍ୱର୍ଯ୍ୟରେ ସେମାନଙ୍କୁ କାକୁସ୍ଥ ଓ ନିର୍ବାକ୍ କରାଏ । ମଣିଷର ଉଦ୍ଧତ ଅହଂକାର ସକଳଙ୍କୁ ଓ ବଡ଼ିମାର ଅହଂସତ୍ତାଂକୁ ସମୁଦ୍ରର ପାଣି ପରି ନିଜ ସ୍ଥାପତ୍ୟର ବିଶାଳତାରେ ବୁଡ଼ାଇ ପକାଏ ।

କବି ମାନସିଂହଙ୍କୁ ମୁଗ୍ଧ ଓ ଅବଶ କରି କୋଣାର୍କ ତା'ର ପ୍ରାପ୍ୟ ମାଗିନେଇଚି । ମାଗିନେଇଚି ତା'ର ଚୂଡ଼ାନ୍ତ ଐଶ୍ୱର୍ଯ୍ୟ ତାଙ୍କର ଏକଦା ପ୍ରଗଲ୍‌ଭ କଲମରୁ । କୋଣାର୍କ ନାରୀର ନବନୀତ ବକ୍ଷର ପଦ୍ମକୋରକ- ମୃଣାଳ ବାହୁଯୁଗ୍ମ, ଉଲ୍ଲଙ୍ଗ ନୀବି, କମଳାଖୋସା ପରି ଧୂପଧୂପିତ ଜୁଡ଼ା ଓ ଚିକୁର ଶୋଭାକୁ ଏକ ଦୃଷ୍ଟିରେ ଅନେଇ ଅନେଇ ଶୃଙ୍ଗାରଭିକ୍ଷୁ ଚାରଣ ରସିକ ଯେପରି ରାଜହଂସ ପରକଲମର ସୁନେଲି ସ୍ୟାହିରେ, ସୁନା କଦମ୍ବର ଧୂଳିବୋଳା ଭୂର୍ଜପତ୍ରରେ ଆଲିଙ୍ଗନର ମାୟା ରଚନା କରିଛନ୍ତି । ମାନସିଂହ କବିତାରେ ପାଠକ ନିଜେ ଅନାୟତ୍ତ । ନିଜେ ସେ ଗନ୍ଧର୍ବ ବିଦ୍ୟାରେ ଓଡ଼ିଶୀ, କଥକ, କଥକଳୀ, ଠୁମୁରୀ, ଠପ୍ପା ଇତ୍ୟାଦି ଗାୟନରେ ଯେମିତି ନୃତ୍ୟଶିଳ୍ପୀ ଗନ୍ଧର୍ବ । କୋଣାର୍କ ଆଜି ସିନା ବିଗତଯୌବନା ମାତ୍ର ଏହାର ସସ୍ମିତା ଅଳସକନ୍ୟାଗୁଡ଼ିକ ଆଜୀବନ ତନ୍ୱୀ ଯେ! ତେଣୁ ନଟପ୍ରବଣା ନଟୀମାନଙ୍କ ପରି ମାନସିଂହୀ ଭାଷା ନିଜେ ମଧ୍ୟ ନୃତ୍ୟ କରିଛି:

ପୀବରକକ୍ଷା କ୍ଷୀଣମଧ୍ୟମା କାମିନୀ
ସବୂଜ ଜଘନ ଚାଲିଲେ ଯେହ୍ନେ ଦାମିନୀ
ପୃଥୁଳ କୁଡ଼ାରୁ କୁସୁମର ଭାର ଖସିଲା
ଥରା ଉରଜରୁ ମାଳା କାଞ୍ଚଳା ଲସିଲା ।"

ଏହି ମନ୍ଦିର ଗାତ୍ରରେ କେତେ ଯନ୍ତ୍ରଣାର ଜ୍ୱଳନ ନାହିଁ ? କିନ୍ତୁ ଏହାକୁ ସବୁ ଆଖି ପଢ଼ିପାରେନା । ଶିଳାକନ୍ୟାର ଯୌବନ ସବୁରେ ଥାକ ଥାକ ହୋଇ ଜମିଥିବା ସ୍ତରୀଭୂତ ବେଦନା ଆକାଶର ପରିସୀମା ଭଳି ଆନୀଳ ଆଦିଗନ୍ତ । ନିଜେ ଜଳି ଅନ୍ୟକୁ ଜଳାଇବାର ଅଗ୍ନି-ଆବେଗ କୋଣାର୍କ କାନ୍ଥରୁ ପ୍ରତି ମଣିଷ ଛାତି ଆଡ଼କୁ ମାନସିଂହୀ ଶବ୍ଦ ଭିତର ଦେଇ ପ୍ରସରି ଆସେ । କବି ଟି. ଅସ୍. ଇଲିଅଟ୍ ତ ଏହି କଥାକୁ ଆହୁରି ସ୍ୱଷ୍ଟତର କରି କହିଯାଇଛନ୍ତି :

" A life time burning in
every moment
And not the life time
of one man only
But of old stones that
can be deciphered."

(-Four Quartets)

ଅର୍ଥାତ୍ : "ପ୍ରତି ମୁହୂର୍ତ୍ତରେ ଜୀବନକାଳର ମର୍ମନ୍ତୁଦ ଜ୍ୱଳନ ସବୁ ଫେରିଆସେ । ଏହା କୌଣସି ନିଃସଙ୍ଗ ବ୍ୟକ୍ତିବିଶେଷର ଜୀବନ ସ୍ୱଦ୍ କେବଳ ନୁହେଁ, ଏପରିକି ଆଦିମ ପାଷାଣ ଗାତ୍ରକୁ ବିଦୀର୍ଣ୍ଣ କରୁଥିବା ଅସ୍ୱଷ୍ଟ ଶିଳାଲିପିରୁ ମଧ୍ୟ ଏହି ଜ୍ୱଳନର ସାଗ୍ନିକ ଆତ୍ମାକୁ ଠାବ କରିହେବ ।"

ପ୍ରତିଦିନ ସକାଳେ ଡେରିରେ ଉଠୁଥିବା ଓ ପ୍ରତି ସନ୍ଧ୍ୟାରେ ଶୀଘ୍ର ଶୟନ କରୁଥିବା ବ୍ୟକ୍ତି ପୃଥିବୀର ଯେଉଁ ସବୁ ମୂଲ୍ୟବାନ୍ ଶ୍ରୀସବୁକୁ ହରାଏ, ସେମାନଙ୍କ ମଧ୍ୟରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଯେପରି ଅନ୍ୟତମ, ସେହିପରି କେବଳ ଅର୍କତୀର୍ଥ କୋଣାର୍କ ଦେଖି ଓଡ଼ିଆରେ ମାନସିଂହୀ କାବ୍ୟ ଆଦୌ ପଢ଼ି ନ ଥିବା ବ୍ୟକ୍ତି ମଧ୍ୟ ଏକ ଅବର୍ଣ୍ଣନୀୟ-ସୂକ୍ଷ୍ମାତିସୂକ୍ଷ୍ମ- ପ୍ରାଣୋଜ୍ଜ୍ୱଳ- କାବ୍ୟମୟ- ସାନୁଭୂତିରୁ ବଞ୍ଚିତ ହୁଏ । କାରଣ

କେବଳ ଚାକ୍ଷୁଷ ଦର୍ଶନରେ ପ୍ରୋକ୍ତ ବ୍ୟକ୍ତିର ରସରୂପ ଉପଭୋଗ, (ମାନସିକ ଗ୍ରହଣଶୀଳତା ଓ ସୂକ୍ଷ୍ମତା ଅଭାବରୁ) ସମ୍ପୂର୍ଣ୍ଣତା ଓ ସାମଗ୍ରିକତା ପାଇପାରିବ ନାହିଁ । ଯେତେଦିନ ଯାଏ ତରୁଣକୁଳ ଓଡ଼ିଶାରେ ଥିବେ ଓ ଯେତେ ଅନାଗତ ତରୁଣକୁଳ ଓଡ଼ିଶାର ସବୁ ପରିବାରକୁ ମଣ୍ଡନ କରିବେ, ସେମାନଙ୍କ ପାଇଁ ଏ କବିତା ଏକ ସାର୍ଥକ ସୃଷ୍ଟି ହୋଇ ଚିରକାଳ ରହିଗଲା ।

ଯେତେବେଳେ ମାନସିଂହ କବିତାର ଚୂଡ଼ାନ୍ତ ଅତୀନ୍ଦ୍ରିୟତା ଓ ରଙ୍ଗମୟ କୋଣାର୍କୋଚିତ କଳ୍ପନା ପାଠକକୁ ଅପୂର୍ବ ଭାବସମ୍ଭାରରେ ତଲ୍ଲୀନ କରେ ଏବଂ ରମ୍ୟବୋଧର ଶକ୍ତିରେ ପାଠକ କେନ୍ଦ୍ରାଭିମୁଖୀ ହୁଏ, ସେହି ସମୟରେ ଛାତିରେ ଏକ ଧୂସର ଧକ୍କା ବାଜେ ସଚ୍ଚି ରାଉତରାୟଙ୍କ କୋଣାର୍କ ପଢ଼ି । ସଚ୍ଚିବାବୁଙ୍କ କବିତା ଛାତିରେ ଆଲ୍‌ପିନ୍ ଫୋଡ଼େ । ତାଙ୍କ କୋଣାର୍କ ଓଡ଼ିଶାର ଭାବରାଜ୍ୟରେ ଏକ ଏକକ ଆକସ୍ମିକତା । ଏହା ଏକ ସ୍ୱତନ୍ତ୍ର ସ୍ୱତନ୍ତ୍ରତା । ସେ କବିତା ଆଜିକି ପ୍ରାୟ ତିରିଶି ବର୍ଷ ତଳର ଏକ ବିସ୍ମୟକର ଚମକ । ଧୂସର କଂକ୍ରିଟ୍ ଯୁଗରେ ସବୁଜିମାର ସ୍ଥାନ ବା କାହିଁ ? କୋଣାର୍କର ସୂଚୀଶିଳ୍ପ ଓ ସ୍ଥାପତ୍ୟର ପରାକାଷ୍ଠାକୁ ନ ଚାହିଁ ବୀତରାଗ କବି ସୂର୍ଯ୍ୟରଥର ଲୋହିତ ଚକ୍ରକୁ ଓ ଏହାକୁ ଗଢ଼ିଥିବା ଶିଳ୍ପୀକୁଳ- ଶ୍ରମଜୀବୀଙ୍କୁ ହିଁ ଚାହିଁଛନ୍ତି । ମନ୍ଦିର ନିର୍ମାଣର ଦୃଶ୍ୟପଟ୍ଟ ନେପଥ୍ୟରେ କେତେ ଶ୍ରମିକ ଓ ମଜଦୁରଙ୍କର ଘର୍ମାକ୍ତ ମାଂସପେଶୀ, କେତେ ନିରବଚ୍ଛିନ୍ନ ଅବସରହୀନ ପରାଧୀନତା, ଡରଭୟରେ କାକୁସ୍ଥ ହୋଇ ଗଜପତିର ଖିଆଲ୍ ଏଠି ପାଳନ କରିଛି, ତାହାର ହିଁ କବି ସନ୍ଧାନ କରିଛନ୍ତି:

"ତୁମେ ଦେଖିଅଛ ଶିଳାରେ ତା'ର ତ
ରମ୍ୟ କଳାର ରୂପ
ମୁଁ ଦେଖିଛି ତହିଁ କୋଟି କଂକାଳ
ଭଗ୍ନ ବୁକୁର ସ୍ତୂପ ।
ମୂଲିଆର ଆଖି ନେଇ
ମୁଁ ଦେଖିଛି ସେହି ମନ୍ଦିର ରୂପ ବ୍ୟଥାର ଆରତି ଦେଇ ।"

ପୃଥିବୀର ସକଳ ରୋମାଣ୍ଟିକ୍ କାବ୍ୟକାରମାନଙ୍କୁ କବି ନିମ୍ନବାଣୀରେ ଚାଲେଞ୍ଜ କରନ୍ତି:

"ଖାଲି ତମ ଅଭିଜାତ ମନ
ଆଜିଯାକେ ଦେଖିଅଛି ଅସ୍ଥିହୀନ ମର୍ମର ସପନ ।

ଅଙ୍ଗୁର କୋରକ ପରି ଲତାୟିତ ଉର୍ବଶୀର ତନୁ
ଗଢ଼ିଚ ନିଗାଡ଼ି ତମେ ସପନର ଗତ ଇନ୍ଦ୍ରଧନୁ ।
ତେଣୁ କେତେ ମଣିଷର ପାଇଁ
ଟୋପାଏ ଲୋତକ କେବେ ଚକ୍ଷୁତାରୁ ତା'ର ଝରି ନାଇଁ ।
– (ବାଜି ରାଉତ)

କିମ୍ବା

"ତୁମରି ଲଳିତ କଳା, ସୁକୁମାର ମର୍ମ ପଦାବଳୀ
ତାହାରି କ୍ଷୁଧାରେ ଆଜି ବ୍ୟଙ୍ଗ କରି ଉଠୁଚି କୁହୁରି ।"

ଏ ଧରଣର ଆକସ୍ମିକ ଚିନ୍ତା- ସ୍ୱାତନ୍ତ୍ର୍ୟରେ କବିତାଟି ଚମକ ଓ ଶବ୍ଦଲାଳିତ୍ୟ ସହ ପାଠକକୁ ଏକ ସାମ୍ୟବାଦୀ ସ୍ଲୋଗାନ ଗାଇ ଶୁଣାଇଛି । ମୂଳିଆ ମସ୍ତିଷ୍କର ମତୁଆଳ ଉତ୍ତାପ ଏଠାରେ ବେଶ୍ ଅନୁଭବ କରି ହୁଏ । ସଚ୍ଚିବାବୁଙ୍କ ପର୍ଯ୍ୟଟନ ରୋମାଣ୍ଟିକ୍ ପର୍ଯ୍ୟଟନ ନୁହେଁ । କୋଣାର୍କର ଚିରାଚରିତ ସ୍ତନଭାରି ଛାତି ଉପରେ ମୂଳିଆର ପାଞ୍ଚଣ ବାଡ଼େଇବା ସାହସ କେବଳ "ବାଜିରାଉତ"ର କବିଙ୍କର ହୋଇପାରେ । ମାନସିଂହ କବିତାର ସ୍ୱପ୍ନବିଳାସୀ ଆଶାବାଦୀ ପାଠକ ଏଠାରେ ଅପ୍ରସ୍ତୁତ ହୁଏ । ଚିନ୍ତାଧାରାର ନୂଆ କଂକ୍ରିଟ ରାସ୍ତାରେ ସମଧର୍ମ । ମସିଜୀବୀମାନଙ୍କଠାରୁ ସଚ୍ଚିବାବୁଙ୍କ କୋଣାର୍କ ଏହି ଦୃଷ୍ଟିରୁ ବିଚ୍ଛିନ୍ନ । ଏହା ଅବଶ୍ୟ କିଛି କମ୍ ଗୌରବ ନୁହେଁ । ତାଙ୍କରି ଭାଷାରେ :

"କେତେ ମଜଦୂର ଗର୍ଦ୍ଦଭ କରି
ବହି ବହି ଶିଳାଭାର
ବଙ୍କା କଲେଟି ନିଜ ମେରୁହାଡ଼
ହିସାବ କି ଅଛି ତା'ର ?
ଦେଖିଲା ଜଗତ ବିରାଟ ଦେଉଳ
ଘୋଷିଲା ରାଜାର ଜୟ
ପଣ୍ଡିତ କହେ ଦେଶର କୁଆଡ଼େ
ଲେଖା ଏଥି ପରିଚୟ ।
ଅମର ହୋଇବ କାଳର କବଳେ
ଯେଣୁ ଜଣକର ନାମ
ଲକ୍ଷ ବେନାମି ଜୀବନରେ ତେଣୁ
ଗଢ଼ି ହେଲା ଶମଶାନ
ଏ ଭାବପ୍ରବଣ ଜାତି
ଏବେ ବି ଗରବେ ଚାହିଁ ତା' କବରେ ଫୁଲାଏ ଆପଣା ଛାତି ।"

ହୁଏତ ଅନେକ ଧର୍ମଭୀରୁ ଅକ୍ରୁର, ମାରୀଚ, ଲକ୍ଷ୍ମଣ, ନଚିକେତା, ସୁଗ୍ରୀବ ଓ ଶୁନ୍ୟଶେଫଙ୍କର ବଶମ୍ବଦ, ବାଧ୍ୟ, ବିନୀତ ଶିଷ୍ପୀ- ଆତ୍ମା ଏଠାରେ ସନ୍ତର୍ପଣରେ ନିହାଣ, ବଟାଲୀ ଧରି ଗଜପତିଙ୍କର ସୌରବିଳାସକୁ ରୂପ ଦେଇଛନ୍ତି । କୋଣାର୍କର କାନ୍ଥ-ଦର୍ପଣର ସେମାନଙ୍କର ଲୋତକାପ୍ଲୁତ କୂର୍ମରୂପକୁ ହିଁ ଜଣେ କବି ଲକ୍ଷ୍ୟ କରିଛନ୍ତି । କବିପାଇଁ କୋଣାର୍କ ଏକ ଜାତୀୟ ଅହଁକାର ନୁହେଁ । ଏହା ଏକ ଅବାଞ୍ଛନୀୟ ଦରବାରୀ ଆଡମ୍ବର । କବି ଆନ୍ଦ୍ରିଓ ମାରଭେଲ୍ ତ ଠିକ୍ ଏହି ଭଳି କଥାଟିଏ କହିଛନ୍ତି :

"He cast ( of which we rather boast)
The Gospel's pearl upon our coast
And in these rocks for us did frame
A temple where to sound his name

Andrew Marvell (The Berumudas)

ଅର୍ଥାତ୍ : "ଯେଉଁ ଶାସକ ଆମକୁ ଆମର ଏ ବେଳାଭୂମିରେ ପବିତ୍ର ସୁସମାଚାର ମଣିମାଣିକ୍ୟ ଦାନ କରିଛନ୍ତି ବୋଲି ଆମ୍ଭେମାନେ ବେଶ୍ କିଛି ଆସ୍ଫାଳନ କରିଥାଉଁ, ତାହା ତାଙ୍କର ନିଛକ ଯଶଃଲିପ୍ସା ଓ ଆତ୍ମବିଜ୍ଞାପନ ବ୍ୟତୀତ ଅନ୍ୟ କିଛି ନୁହେଁ । ସମ୍ମୁଖର ପାହାଚ ଉପରେ ନିର୍ମିତ ମନ୍ଦିରଟି ପ୍ରୋକ୍ତ ଉଦ୍ଦେଶ୍ୟକୁ ଅଧିକତର ଚିହ୍ନିତ କରୁଛି ।"

ମୂଲିଆର ଅନଳସ ଆତ୍ମା ଓ ତାଙ୍କ ଭିତରେ ସେହି କବିତା ଏକ ସିଡ଼ି : ଗୋଟେ କ୍ରୁଦ୍ଧ ଅଭିଯୋଗ- ମୁଖର ସେତୁ । କୋଣାର୍କକୁ ଯେଉଁମାନେ ସବୁଜ ଚଷମାରେ ଦେଖନ୍ତି, ସେମାନେ କବିର ଉପହାସର ପାତ୍ର । କୋଣାର୍କର ଶିଳ୍ପ- ଗଠନରେ ତାଙ୍କ ଚେତନା ରକ୍ତାକ୍ତ । ଏପରି କି କୋଣାର୍କ ନିଜେ ତାଙ୍କୁ ଭଲ ଲାଗୁ ନାହିଁ । ପିତୃପୁରୁଷ ନିର୍ମିତ ସେ ସ୍ଥାପତ୍ୟ ଏକ ଯୁବରାଜର ଖିଆଲ । ସେଠାରେ ସୌନ୍ଦର୍ଯ୍ୟବୋଧ ନିଃଶେଷ ବରଂ ପ୍ରତିବାଦ ବିକ୍ଷୋଭ ହିଁ ସେଠାକାର ବାର୍ତ୍ତା ।

ସଚ୍ଚି ରାଉତରାୟଙ୍କର କବିତା ପଢ଼ିଲେ କଳ୍ପନାର କ୍ୟାଲେଣ୍ଡରରୁ ଭାବନାର ରୋମାଣ୍ଟିକ୍ ଫର୍ଦ୍ଦକୁ ହିଁ ଚିରିବାକୁ ପଡ଼େ । ମନ୍ଦିରର ସବୁ ଶିଳ୍ପ, ସବୁ ନାରୀ-ପିଣ୍ଡରେ ଯେମିତି ମୂଲିଆର ଆତ୍ମା । କୋଣାର୍କ ନିଃଶ୍ୱାସରେ ମୂଲିଆର ନିଃଶ୍ୱାସ । ଶିରା ଓ ଧମନୀରେ ମଜଦୁର ରକ୍ତ । ତାହାର ବର୍ଣ୍ଣାଢ଼୍ୟ କାନ୍ଥରେ ଅନୁଚିତ ପ୍ରଣୟର କ୍ଷତ

ନାହିଁ- ଅଛି ସେମାନଙ୍କ ଇସ୍ତାହାର; ଜୁଲମର ପୋଷ୍ଟର । ପ୍ରଚୁର ଶୋଷଣର ପ୍ରାଚୀରପତ୍ର : ଓ୍ୱାଲ ମ୍ୟାଗାଜିନ୍ । ସେ କବିତା ପଢ଼ିଲେ ଆଖି କୋଣାର୍କଠାରୁ ଫେରିଆସେ ସାଧାରଣ ଜୀବନରେ ଲୋତକାପ୍ଲୁତ ବାସ୍ତବତାକୁ :

"ଗଢ଼ିବାକୁ ଏଇ ମନ୍ଦିର କଲା ଶ୍ରମିକ ରକ୍ତଦାନ
କୃଷକ ଦେଲା ତା କନକ ଶସ୍ୟ ରାଜକୋଷେ ଅକଳନ
ଅଥଚ କଳାର ଦରବାରେ ନାହିଁ ତାଙ୍କ ବ୍ୟଥାର ସ୍ଥାନ
ହାସ୍ୟ ବା ଲୁହ, ଅଥବା କେଉଁଠି ଫସଲ- କଟାର ଗାନ ?
ତୋରଣେ ତୋରଣେ ନନ୍ଦନ ଶିରୀ ଯକ୍ଷପରୀର ଲତା
କେଉଁଠି କି ଅଛି ମାଟିର ଶସ୍ୟ ଧାନର ବିଜୁଳି ଛଟା ?"

ତାଙ୍କ ପାଇଁ ସେ ମନ୍ଦିର ମଣିଷର ଏକ ପୀଡ଼ିତ ଭୂଇଁ । ଆଫ୍ରିକାର ଗିନି ଉପକୂଳ ପରି ମଜଦୁରଙ୍କ କବରକ୍ଷେତ୍ର । ବାରଶତ କଳାକାରଙ୍କ ପାଇଁ ଚନ୍ଦ୍ରଭାଗା କୂଳରେ ଏହା ଏକ ଅନ୍ଧକୂପ- ଜଉଘର । ଅନେକ ବର୍ଷ ତଳେ ହିନ୍ଦୀ କବି ସାହିର୍ ଲୁଧିଆନୀଙ୍କର 'ତାଜମହଲ' ଉପରେ ଆଧାରିତ କବିତାଟିଏ 'ଇଲୁଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆ"ରେ ପ୍ରକାଶିତ ହୋଇଥିଲା । ସେଥିରେ ସେ ସାହାଜାହାନ୍‌ଙ୍କର ଅମିତବ୍ୟୟିତା, ସ୍ୱାର୍ଥପରତା ଓ ଆତ୍ମକୈନ୍ଦ୍ରିକ ଖିଆଲ ପ୍ରତି ଆକ୍ଷେପ କରିଥିଲେ । କବି ଲୁଧିଆନୀ ଲେଖିଥିଲେ, ତାଜମହଲ କହୁଚି ସତେ ଯେପରି ଆଉ କାହାକୁ ପ୍ରେମ କରିଆସେ ନାହିଁ । ଏହା ଗରିବ କୁଟୀରର ପ୍ରେମ ପ୍ରତି ଏକ ଉପହାସ । ଭାବର ସାମଞ୍ଜସ୍ୟ ଦୃଷ୍ଟିରୁ ସଚ୍ଚିବାବୁଙ୍କ କବିତା ଏ କବିତାର ନିକଟତର ।

"ରମ୍ୟ କଳାର ଲୀଳା
କିଛି ତ କହିନି ମଣିଷର କଥା କହିବାର ଯାହା ଥିଲା ।"

ସଚ୍ଚିଦାନନ୍ଦଙ୍କ ଯୁକ୍ତି କ'ଣ ନିର୍ଭୁଲ ? ମୂଲିଆର ଆଖି ନେଇ, ମଜଦୁରର ମମତ୍ୱବୋଧ ନେଇ କେବଳ ବାଲି ଓ ପଥରର ସମନ୍ୱୟରେ ପାହାଚ ଗଢ଼ି ହେବ । ବସ୍ତୁ ଉପରେ ବସ୍ତୁ ପୁଞ୍ଜୀଭୂତ କଲେ, ଉପକରଣ ପରେ ଉପକରଣ ଖଞ୍ଜିଲେ ଏବଂ ଉପାଦାନ ପରେ ଉପାଦାନ ଜମା କଲେ ମୂଲିଆର ବୁଦ୍ଧିହୀନ ଓ ଅପକ୍ୱ ଦୃଷ୍ଟିକୋଣ ଲକ୍ଷ୍ୟକୁ ଉପଲକ୍ଷ୍ୟ କରିବ ସିନା, ଏତେବଡ଼ ଫ୍ରେସ୍କୋର ଆଶ୍ଚର୍ଯ୍ୟକର ସୂଚୀଶିଳ୍ପ ଓ ବିସ୍ମୟକର ନକ୍ସା ନିର୍ମାଣ ସମ୍ଭବ କି ? ସୂର୍ଯ୍ୟରଥର ପରିକଳ୍ପନା କେବଳ ସେହି

ମହାମହୋପାଧ୍ୟାୟ ସ୍ଥପତି ଅଥବା ଅଭିଜାତ ଯୁବରାଜ ନରସିଂହଙ୍କ ସୂକ୍ଷ୍ମ କଳ୍ପନାଦ୍ୱାରା ହିଁ ସମ୍ଭବ । ବତୀଘର ଉପରୁ ଆଲୁଅ ଜାଳି, ପିଲାଦିନୁ ମୋଟେ ଜାହାଜ ନ ଦେଖି ଦୂରର ଅନ୍ଧାର ମଧ୍ୟରେ ଜାହାଜ ସମ୍ପର୍କରେ ଧାରଣା କରିବା ଯାହା: ମୂଳିଆର ଦୃଷ୍ଟିକୋଣ ଓ ମାନସ ନେଇ ସୂର୍ଯ୍ୟରଥ ଗଢ଼ିବାକୁ ବସିବା ଠିକ୍ ତାହା ହିଁ ଅଟେ । ତାରୁଣ୍ୟ : ଏହା ଏକ ଭାବପ୍ରବଣ- ସ୍ଲୋଗାନଧର୍ମୀ- ଚପଳ ପ୍ରତିକ୍ରିୟା । ଉତ୍ତର ଓ ସୂକ୍ଷ୍ମତାର କାବ୍ୟକବିତାରେ ଯେଉଁ କଳ୍ପନା ଓ ପ୍ରବୃତ୍ତି କାମ କରେ, ତାହା କବିର ଯେତିକି ବ୍ୟକ୍ତିଗତ ହେବ, କବିତାର ପୂର୍ଣ୍ଣାଙ୍ଗ ମୂଲ୍ୟବୋଧ ସେହି ଅନୁପାତରେ ଏକ ଦିଗମୁଖୀ ଓ ସାମାନ୍ୟ ସଙ୍କୁଚିତ ହେବ । ସଚ୍ଚିଦାନନ୍ଦଙ୍କ କବିତା ଏହି ଦିଗରୁ ସାମାନ୍ୟ ସଙ୍କୁଚିତ ବୋଲି ମନେହୁଏ । ଏକକ ଓ ସଫଳ କବିତା ଭାବରେ ତାହା ତାରୁଣ୍ୟର 'ତରାଇ' ଅତିକ୍ରମ କରି 'ପ୍ରଶଂସା'ର ପାଇନ୍ ବନରେ ପହଞ୍ଚିଛି ସତ– ମାତ୍ର ସହସ୍ର ସ୍ୱପ୍ନ ଓ ଉଚ୍ଚାଭିଳାଷର ଶିଖର ଶୃଙ୍ଗ ଏଭେରେଷ୍ଟ ବିଜୟ ତାଙ୍କ ପକ୍ଷରେ ସମ୍ଭବ ହୋଇପାରି ନାହିଁ ।

କୋଣାର୍କର ଆତ୍ମାକୁ ମୂଳିଆର ଆଖି ନେଇ କଳ୍ପନା କଲେ ଝାଉଁ ବଣରେ ଅଟକିଯିବା ହିଁ ଅବଶ୍ୟମ୍ଭାବୀ । ଆକାଶ ନ ଦେଖି ଯେଉଁମାନେ ଟେଲିଫୋନ୍ ତାର ଦେଖନ୍ତି, ଚନ୍ଦ୍ର ନ ଦେଖି ଯେଉଁମାନେ ରୁଟି ଦେଖନ୍ତି, ନାରୀକୁ ନ ଦେଖି ଯେଉଁମାନେ ଅଳକା ସାନ୍ୟାଲ୍ ଦେଖନ୍ତି ସେମାନଙ୍କ ପକ୍ଷରେ ଏ ଦୃଷ୍ଟିକୋଣ କେବଳ ସମ୍ଭବ, ମାତ୍ର ଏ ପ୍ରକାର ଦୃଷ୍ଟିକୋଣ ଆତ୍ମପ୍ରବଞ୍ଚନାମୂଳକ ନୁହେଁ କି ? ସେ ପ୍ରବଞ୍ଚିତ ମନୋବୃତ୍ତି କ'ଣ ଏତେ ବଡ଼ ସୃଷ୍ଟି ପାଇଁ ଯଥେଷ୍ଟ ? କୋଣାର୍କର ବିପୁଳକାୟ ସ୍ଫିଙ୍କ୍ସ୍ ପାର୍ଶ୍ୱରେ ସେହି ମୂଳିଆ ଯଦି ମଧ୍ୟ ନିର୍ବାକ୍ ଓ ସ୍ତବ୍ଧ ହୋଇ ଠିଆହୁଏ ? ହୋଇପାରେ– କୋଣାର୍କର ଚେହେରା ସଚ୍ଚିବାବୁଙ୍କ ଭଳି କବି ଆଖିରେ ରୋମାଣ୍ଟିସିଜମ୍‌ର ପତିଆରା ଆଣିନାହିଁ । ଯୁଗର ଧୂସରତା ସହିତ ମିଶି କବିଚିତ୍ତ ତେଣୁ ସ୍ଲୋଗାନ ଦେଇଛି, ମାତ୍ର ସମୟର ଟିକ୍ ଟିକ୍ ଶବ୍ଦ ଉପରେ ସବାର ହୋଇ କେତେ ସ୍ଲୋଗାନ୍ ଭାସିଗଲାଣି: କିନ୍ତୁ ଜୀବନକୁ କେଉଁଠି ବା ବାନ୍ଧି ରଖିପାରିଛି– ଗଢ଼ିବା ତ ଦୂରର କଥା । ଚିନ୍ତା ବିଶେଷ କରି ସୂକ୍ଷ୍ମ ଭାବାକୂତା ତଥା ଶିଳ୍ପୀର ଲୋଚନ ଯେକୌଣସି ସ୍ଲୋଗାନ୍ ଅପେକ୍ଷା ଗରୀୟାନ୍ । ତେବେ 'ମୂଳିଆର କବି' ନିଜ କବିତାର ମୋଡ଼ ଯେପରି ଗତ କୋଡ଼ିଏ ବର୍ଷ ଭିତରେ ସୌଖୀନ ବୌଦ୍ଧିକବିଳାସୀ ରୁଚି ଆଡ଼କୁ ଘୂରେଇଛନ୍ତି– ଆଜି ଯଦି ସିଏ କୋଣାର୍କ ଉପରେ ଲେଖି ବସନ୍ତେ କ'ଣ ଲେଖନ୍ତେ, ଦେଖିବାର କଥା ।

କୋଣାର୍କ ଉପରେ ଆଧାରିତ ସଚ୍ଚିଦାନନ୍ଦଙ୍କର ଆଉ ଗୋଟିଏ କବିତା 'ଭଙ୍ଗା ମନ୍ଦିର' (ପାଣ୍ଡୁଲିପି) ରେ ତାଙ୍କର ଏହି ମାନସିକ ପରିବର୍ତ୍ତନର ସୂଚନା ମିଳେ । ସେ ଆପଣାର ଆଙ୍ଗି ବା କ୍ରୁଦ୍ଧ ଖୋସାର ଖୋଳପା ଫିଙ୍ଗି ଦେଇ ପ୍ରକୃତ ଜୀବନଧର୍ମୀ ପ୍ରଜାପତି ହୋଇ କିଭଳି ଉଡ଼ିବାକୁ ବ୍ୟଗ୍ର, ତାହା ଆଲୋଚ୍ୟ କବିତାରୁ ଜଣାପଡ଼େ । ସେ ଲେଖିଛନ୍ତି:

"ଅଶ୍ୱତ୍‌ଥର କରୁଣ ଛାୟାରେ
ଭଙ୍ଗା ବିଷ୍ଣୁର ମାଂସପେଶୀରେ,
ଏକ ନୈର୍ବ୍ୟକ୍ତିକ ସ୍ୱପ୍ନର ଇନ୍ଦ୍ରଜାଲ
ଚୂଡ଼ା ମେଲିଥିଲା ।
ଏଇ ପଥୁରୀ ପାର୍ବତୀ ଦିନେ ଜୀବନ୍ତ ଥିଲା ।
X X X
ସେମାନଙ୍କର ତ୍ରସ୍ତ ପଦର ଚପଳ ନୂପୁର
ବାଜି ଉଠୁଥିଲା ନିର୍ଜନ ପଦର ମୂର୍ଚ୍ଛନାରେ ।
ମାଟିର କଳସୀ ପଡ଼ି ରହୁଥିଲା ତଳେ
ପଲ୍ଲୀ ସଞ୍ଜର ବୋହୂ ମୁହଁ ଦେଖା ନିରୋଳା ପ୍ରହରେ ।"

ଏହାକୁ ପଢ଼ିଲେ ମନେହୁଏ ଯାହା ଦିନେ ତରୁଣ, ପ୍ରଗଲ୍‌ଭ ଓ ଭାବପ୍ରବଣ କବି ଆପଣାର ଆଗ୍ରେସଭ୍ ଚୌକି ଉପରୁ ଶ୍ରମଜୀବୀ ସହାନୁଭୂତିଶୀଳ କଲମରେ ଦାନ କରିଥିଲା, ପରବର୍ତ୍ତୀ ସମୟରେ ସେହି କବିର କଲମ ପଲ୍ଲୀବଧୂର ନୂପୁର ମୂର୍ଚ୍ଛନା- ସେମାନଙ୍କ ମାଟିର କଳସୀ ପ୍ରଭୃତିକୁ ଆତ୍ମସାତ୍ କରିଛି: କିନ୍ତୁ କବି ମତରେ କୋଣାର୍କରେ ଆଜି–

"ମୌସୁମୀର ଚଞ୍ଚଳ ଆଭିଜାତ୍ୟ
ବଣ ତୁଳସୀର ଆଦିମ ବନ୍ୟ ନୃତ୍ୟ
ବହି ଆସେ ସେ ସମ୍ୱାଦ
ଝରା ଫୁଲର ସାମ୍ରାଜ୍ୟରୁ ।"

ମାନସିଂହଙ୍କ "ବିଶ୍ୱ ଦେଖେ ସେ ଶୋଭାର ଖଣ୍ଡିତ କଂକାଳ, ଲାବଣ୍ୟର ନଷ୍ଟ ଅସ୍ଥିମାଳ" ଠାରୁ ଏହା ଅଧିକ ରୋମାଣ୍ଟିକ ଭାବ-ଗଭୀର ସଘନତା ବହନ

କରିଛି । ତାଙ୍କର 'ଶାହାଜାହାନ୍' କବିତା (ପାଣ୍ଡୁଲିପି)ଟିରେ– ମୃତ୍ୟୁ ଉପରେ ପ୍ରତିଶୋଧ ନେବାକୁ ଯାଇ ଶାହାଜାହାନ୍‌ଙ୍କ 'ମର୍ମର ସ୍ୱପ୍ନ' କିପରି ନିର୍ମିତ ହୋଇଛି, ତାହାର ସୂଚନା ମିଳେ । ସ୍ଥାପତ୍ୟର ସମଧର୍ମିତା ଦୃଷ୍ଟିରୁ ଏଠାରେ ତାହାର ଉଲ୍ଲେଖ କଲେ କିଛି ଭୁଲ୍ ହେବନାହିଁ ।

"ଖର୍ବ ମୋର ତାରୁଣ୍ୟର ଅପମାନ କରିବାକୁ ଶୋଧ
ଶୂନ୍ୟ କରି ରାଜକୋଷ ତୋଳାଇଲି ଏ ହେମ ସରଧ ।
x x x x
ଏ ମୋର ମର୍ମର ସ୍ୱପ୍ନ ଏଇ ମୋର ପାଷାଣ କବିତା
ଅପହୃତ ଯୌବନ ମୋ ଲେଖିଥିଲା ଏଥିରେ ଛବି ତା' ।
x x x x
ଏ ନୁହେଁ ମହଲ ଖାଲି, ଏ ଯେ ମୋର କ୍ରୂର ଅଭିଯାନ
ମରଣର ଦସ୍ୟୁ ହାତୁ ଛିନ୍ନ କରି ଆଣିଛି ମୁଁ ଦାନ ।"

ପ୍ରକାରାନ୍ତରେ ହେଲେ ମଧ ଶାହାଜାହାନଙ୍କ ମୁହଁରେ ମଣିଷର କାଳଜୟୀ ଇଚ୍ଛାର ପ୍ରତିଭୂ ହୋଇ ନାନାଦି ଯଶଲିପ୍ସା କିପରି କଳାନୁଗ ଐଶ୍ୱର୍ଯ୍ୟ ଗଢ଼ିପାରେ ତାହାର ସୂଚନା କବି ଏଠାରେ ପ୍ରଦାନ କରିଛନ୍ତି ।

ପଣ୍ଡିତ ନୀଳକଣ୍ଠ କିନ୍ତୁ ପାଞ୍ଚବର୍ଷର ଅବାକ୍ ସ୍କୁଲ୍ ବାଳକକୁ ଜେଜେଙ୍କର ଉଦ୍ଧ୍ୟତ କାହାଣୀରେ ଅଭିଭୂତ କଲାପରି ପାଠକକୁ ଅଭିଭୂତ କରନ୍ତି । କୋଣାର୍କର ନାଭିପଦ୍ମ ଉପରେ ସମାସୀନ ପଦ୍ମଯୋନିଙ୍କର ବୋଧି ଦେଇ ଯେମିତି ସେ କବିତା ଲିଖିତ । ଜଣେ ପ୍ରଥିତଯଶା ପ୍ରାଜ୍ଞ ଦାର୍ଶନିକଙ୍କର କେତେ ବାତ୍ସଲ୍ୟ ମମତା ପିତୃତ୍ୱର ଅଖଣ୍ଡ ସ୍ନେହାଶିଷ ସେଥିରେ ନାହିଁ ? ଏହା ଦୁଇଟି କାବ୍ୟ । ପ୍ରଥମଟି "ରାମଚଣ୍ଡୀର ରାତି ଓ ସକାଳ" ଓ ଦ୍ୱିତୀୟ : "ମାୟାଦେବୀ" ନୀଳକଣ୍ଠଙ୍କର ଏହି କାବ୍ୟଦ୍ୱୟର ମୁଖବନ୍ଧ ଲେଖିଛନ୍ତି ଡକ୍ଟର ମାୟାଧର ମାନସିଂହ, ତାଙ୍କରି ଭାଷାରେ: "ପଣ୍ଡିତ ନୀଳକଣ୍ଠ ଦାସଙ୍କ "କୋଣାର୍କ" କାବ୍ୟ-ଯୁଗ୍ମରେ ପୁରାଣ ଉତ୍କଳର ବାଣୀ ଯେପରି ସ୍ପଷ୍ଟଭାଷାରେ ମୋର ଶ୍ରୁତିଗୋଚର ହୋଇଚି ତାହା । ଓଡ଼ିଆ, ଇଂରାଜୀ, ବା ଅନ୍ୟ କୌଣସି ଭାଷାର କୌଣସି ଲେଖାଠାରୁ ମୁଁ ପାଇପାରିନି ।" କେବଳ ବ୍ରହ୍ମ ତେଜୋଦୀପ୍ତ ଆଚାର୍ଯ୍ୟ ନ ଥିଲେ, ସେ ଥିଲେ ସ୍ନେହାର୍ଦ୍ର ଚିତ୍ତ– ସ୍ୱର୍ଗଠାରୁ ବଳି ଅମୃତୋପମ, ଅଗଣିତ

ବାଳଗୋପାଳଙ୍କର ପରମ ଭକ୍ତିଭାଜନ ଜନକ । ସମ୍ଭବତଃ କବି ନୀଳକଣ୍ଠଙ୍କ ବ୍ୟତୀତ ଆଜିଯାଏ କୌଣସି ପିତା ଏଭଳି ସ୍ନେହସିକ୍ତ ପ୍ରାଣସ୍ପର୍ଶୀ ବାଣୀ ବାଢ଼ିପାରି ନାହିଁ –

"ଆଜି ଯେ କୁଆଁର ପୂନିଅଁ କେତେ ସୁଖ ଶରଧା
ମାଆ ଭଉଣୀଙ୍କ ଆଦର ନବ ବସନ ପିନ୍ଧା ।
ମନେ ପଡୁନାହିଁ ବାବୁ ହେ ଲାଗିଯାଇଛି ନିଦ
ମାଆ ଭଉଣୀଏ ଭବନେ ଭଜିଥିବେ ବିଷାଦ ।
ଲୁଗାରେ ହଳଦୀ ଲଗାଇ ଚାହିଁଥିବେ ଜନନୀ
ପିଠାପଣା ଖାଉ ନ ଥିବେ ସୁଖେ ଆଜି ଭଗିନୀ ।
ଜନନୀର ଗୁରୁ ବେଦନା, ଭଗିନୀର ବିଷାଦ
ସୁମରି ସପନେ ଚମକି ଭାଙ୍ଗିଯିବଟି ନିଦ ।
ଶୁଅ ଶୁଅ ଧନ, ଆଗାମେ ଶୋଇଥାଅରେ ଶିଶୁ
ପଥଶ୍ରମ କରି ଆସିଛ, ଶ୍ରମେ ବିରାମ ଶିଶୁ ।"

ମାନସିଂହ ଆହୁରି ଲେଖିଛନ୍ତି: 'କୋଣାର୍କେ' ରେ ଭାଷାର ଯେଉଁ ସ୍ୱର, ଜାଙ୍ଗଳିକ ସୁଷମା ଦେଖିବାକୁ ମିଳେ ତାହା ଉପଧାମିଳନର କୃତ୍ରିମତାର ସଂପୂର୍ଣ୍ଣ ଅଭାବ ଯୋଗୁ ହିଁ ସମ୍ଭବ ହୋଇଛି । "X X" ପଣ୍ଡିତ ନୀଳକଣ୍ଠଙ୍କର କାବ୍ୟର ଏକମାତ୍ର ଉପାୟନ ହେଉଛି ଭାବାଡ଼ମ୍ବର । ମୂଳରୁ ଶେଷଯାଏଁ ସେ କେବଳ ତାଙ୍କର ଚିନ୍ତା, ଅନୁଭୂତି, ସ୍ୱପ୍ନଦର୍ଶନ, ପାଣ୍ଡିତ୍ୟ ଓ ଚିତ୍ରଣ-ପାଟବରେ ହିଁ ମୁଗ୍ଧ କରି ପାଠକକୁ ଘେନି ଚାଲିଛନ୍ତି ।" (ମୁଖବନ୍ଧ- "କୋଣାର୍କ")

କବି ବାଇରନ୍ 'ଭେନିସ୍' କବିତାରେ ଗ୍ରୀସ୍‌ର ସ୍ଥାପତ୍ୟ ଓ ଚାରୁକଳା ସହିତ କବିଙ୍କର ରକ୍ତଗତ ସମ୍ପର୍କ କିପରି ନିବିଡ଼, ଅଡ୍ରେ, ରାଡ଼କ୍ଲିଫ୍, ସ୍କିଲର ଓ ସେକ୍ସପିଅରଙ୍କ କଳାକୃତିରେ ଗ୍ରୀସ୍ କିପରି ମନୋରମ ଭୂମିକା ଗ୍ରହଣ କରିଛି, ତାହା ସେ ମନୋନେତ୍ରରେ ଦେଖିଛନ୍ତି । କେଉଁ ନିଶୂନ ଓଦା ପାହାନ୍ତାରେ ୱେଷ୍ଟ ମିନିଷ୍ଟର ସେତୁ ଉପରୁ କବି ୱାର୍ଡଶ୍‌ୱାର୍ଥ ନିଦ୍ରିତା ଲଣ୍ଡନକୁ ଅନିଷା କରିଛନ୍ତି । ମସ୍‌ଜିଦ୍‌ର ଗମ୍ବୁଜ ଉପରୁ ନିଜର 'ବାଙ୍ଗ୍‌ଦେରା' କବିତାରେ କବି ମହମ୍ମଦ ଇକ୍‌ବାଲ ଇସଲାମୀ ପାକିସ୍ତାନକୁ ତେଜିୟାନ୍ ଆଖିରେ ଅନୁସନ୍ଧାନ କରିଛନ୍ତି । ଫରାସୀ କବି ସାଁ ଜନ୍ ପସଁ ଅଥବା ମାର୍କିନ୍ କବି ୱାଲ୍‌ଟ ହୁଇଟ୍‌ମ୍ୟାନ୍ ଯଥାକ୍ରମେ ପ୍ୟାରିସ୍‌ର 'ଲୁଭ୍ର' ଚିତ୍ରଶାଳା ପ୍ରକୋଷ୍ଠରୁ

ଏବଂ ଚେରୀଫୁଲ ଭର୍ତ୍ତି ଲିଙ୍କନ୍ ସମାଧି ପାର୍ଶ୍ୱରୁ ଆପଣା ଦେଶ ଦ୍ୱୟର ଗୌରବମୟ ଜାତୀୟତାକୁ ଏକାଧିକ ଥର ନିରୀକ୍ଷଣ କରିଛନ୍ତି । କବି ସେଇ 'ଓଜିମାଣ୍ଡିଆସ୍ ଅବ୍ ଇଜିପ୍ଟ' କବିତାରେ ମିଶରର ମଲା ସ୍ଥାପତ୍ୟ, ଭଗ୍ନ ପୀରାମିଡ୍ ଉପରୁ ବାଲୁକାମୟ ମରୁଭୂମିର ମାଇଲ୍ ମାଇଲ୍ ବ୍ୟାପୀ ପ୍ରସାରିତ ଶୂନ୍‌ଶାନ୍ ଉଲ୍ଲଙ୍ଗତା ଅନୁଭବ କରିଛନ୍ତି । ରାଜା ଓଡ଼ିମାଣ୍ଡ ଆସ୍‌ଙ୍କର କୁଶଳ ଓ ଅଭିଜାତ ଦୃଷ୍ଟିକୋଣରେ ଆତ୍ମପ୍ରଚାର ଏବଂ ଆତ୍ମପରାକାଷ୍ଠାର ସ୍ୱାକ୍ଷର ନେଇ ଯେଉଁ ପୀରାମିଡ୍ ସୃଷ୍ଟି ହେଲା, ତାହାର 'କ୍ୱଗତଃ ମଥୁରାପୁରୀ କ୍ୱଗତଃ କୋଶଳଃ' ପରି ଉପସଂହାର ହେଲା–

"And on the pedestal
these words appear
My name is Ozymandia,
King of kings
Look on my works,
Ye Mighy and despair !"
Nothing beside remains.
Round and decay
Of that colossal wreck,
boundless and bare
That lone and level
sands stretch far away".

ଅର୍ଥାତ୍ : ଏହି ସ୍ତମ୍ଭବେଦୀ ଉପରେ ଯେଉଁ କରୁଣ କାହାଣୀଟି ଉତ୍‌କୀର୍ଣ୍ଣ ହୁଏ ତାହା ହେଲା– "ମୁଁ ଛତ୍ରପତି ଓଜିମାଣ୍ଡିଆସ୍ । ହେ ପରାକ୍ରମଶାଳୀ ଔଦ୍ଧତ୍ୟ ମୋ କୀର୍ତ୍ତି ସକଳକୁ ଥରେ ଚାହଁ ଓ ହାହାକାର କର ।" "ଆଉ କିଛି ହେଲେ ଅବଶିଷ୍ଟ ନାହିଁ । ସେ ଅତିକାୟ ସ୍ଥାପତ୍ୟର ଚାରିଆଡ଼େ କେବଳ ଇତସ୍ତତଃ କ୍ଷୟିଷ୍ଣୁତା– ଧ୍ୱସ୍ତବିଧ୍ୱସ୍ତ ଜରାଜୀର୍ଣ୍ଣତା : ଆଉ କିଛି ସୀମାହୀନ ଭାବେ ଦୂରରୁ ଦୂରକୁ ପ୍ରସାରିତ ସମଧରାତଳ ବାଲୁକାରାଶି ।"

ଏହି ଭାବଧାରା ସହିତ ସଚ୍ଚିଦାନନ୍ଦ ରାଉତରାୟଙ୍କର 'ଶାହାଜାହାନ୍' କବିତାର * ସାମଞ୍ଜସ୍ୟ ଅଛି । ଭାବର ଓ ସଂପ୍ରସାରଣ ଦୃଷ୍ଟିରୁ ତାହା ଏଠାରେ ଉଦ୍ଧାର କରିବା

ସଂଗତ ହେବ । ଶେଷ ଜୀବନରେ ବନ୍ଦୀ- ପ୍ରେମିକ ସମ୍ରାଟ ଶାହାଜାହାନ୍‌ଙ୍କର ଚିନ୍ତାକୁଳତା ଏହିଭଳି ଗତି କରିଛି:

"ରାଜ୍ୟହୀନ, ଜରାନତ ଭାଳେ ଆଜି ସବୁ ଅକାରଣ
ତନ୍ଦ୍ରାରେ ମିଳାଇଯାଏ ଏଇ ମୋର ଶିଳାର ସ୍ୱପନ
ମାଟିରେ ମିଶଇ ଚୂଡ଼ା ଖଣ୍ଡ ଖଣ୍ଡ ଭାଜି ପଡ଼େ ଶିଳା
ଧୂଳିରେ ମହଲ ଲୋଟେ ବ୍ୟର୍ଥ ଯେତେ ଚାରୁ କମଲୀଳା
ମନେ ମନେ କହେ ମୁଇଁ ଆପଣାକୁ ନିଜେ ନିଜେ ଡାକି
ବ୍ୟର୍ଥ ସବୁ ଆଡ଼ମ୍ବର ସବୁ ଖାଲି ଆପଣାକୁ ଫାଙ୍କି ।"

ଦୁରବସ୍ଥା ଓ ବିପର୍ଯ୍ୟୟର କୁକ୍ଷୀ ଭିତରୁ ଏକ ମରଣକାତର ସଂକଟାପନ୍ନ ଶୈଶବ ଯେମିତି ଓଠ ଭର୍ତ୍ତି ଆର୍ତ୍ତି ଏଠାରେ ମହାଶୂନ୍ୟର ଓ ମହାକାଳର ବ୍ୟାପ୍ତି ଭିତରକୁ ଛାଟି ଦେଇଛି ।

ସେହିଭଳି ମଧ ବାରବାଟୀ ଦୁର୍ଗର ଭଗ୍ନ, ସ୍ଥବିର ଓ ମୃତ୍ୟୁମୁଖୀ ପ୍ରାଚୀର ପାର୍ଶ୍ୱରେ କବି ମହାପାତ୍ର ଗୋଦାବରୀଶ ନିଜକୁ ତାନ୍ତ୍ରିକ କରି କଂକାଳମୟ ଓଡ଼ିଆ ଜାତିର ଗତ, ମୃତ ଓ ହୃତ ଗୌରବର ପୁନରୁଦ୍ଧାର କରିବା ପାଇଁ ତାହାକୁ ଉତ୍ତାପଧର୍ମୀ ଜୀବନ୍ୟାସ ମନ୍ତ୍ରରେ ଅଭିସିକ୍ତ କରିଛନ୍ତି । କିନ୍ତୁ କୋଣାର୍କ ଉପରୁ ଓଡ଼ିଶାକୁ କେହି ସିଧା ଦୃଷ୍ଟିପାତ କରିନାହାନ୍ତି ଏକା ନୀଳକଣ୍ଠଙ୍କ ବ୍ୟତୀତ । କେତେ ବଦାନ୍ୟ ବର୍ଷାର ମାଡ଼ କୋଣାର୍କର ହାଡ଼ମୂଳେ ବସିଛି ତାହା ଅନୁଭବ କରିଛନ୍ତି ନୀଳକଣ୍ଠ '**ରାମଚଣ୍ଡିରେ ସନ୍ଧ୍ୟା**' ବିତାଇ । ଓଡ଼ିଶାର କୀର୍ତ୍ତିସୂର୍ଯ୍ୟ ସୂର୍ଯ୍ୟମନ୍ଦିରର ସ୍ତବଧତା ନିକଟରେ କବିଙ୍କର ଗଭୀର ଓ ଗମ୍ଭୀର ଉଚ୍ଚାରଣ କେତେ ମର୍ମସ୍ପର୍ଶୀ ନୁହେଁ ?

"ବାରୁଣୀ-ତାମସ ଅରୁଣ ଭାସେ ପ୍ରାଚୀ ଲଲାଟେ
ଧୂସର ତିଳକ ମନ୍ଦିର ଦିଶେ ସାଗର ତଟେ
ଫେନ ତାରକିତ ନୀଳିମା ଭେଦି ଉଠିଲା ଛବି
ପୁଛିଥିଲି ଏହି କୋଣାର୍କ ଉତ୍ର କୀରତି ରବି ?
X X X
ଚାହିଁଲି ମନ୍ଦିର ଲଲାଟେ, ବୁଲି ଦେଖିଲି କେତେ;
ସୂଚୀଶିଳ୍ପ କାରୁଖୋଦନ, ତୁଙ୍ଗ ମୂରତି ଯେତେ

ତୁହିନ-ମୟୂଖ-ରସାଣେ ସବୁ ଦିଶିଲା ତୋରା
ଜୀର୍ଣ୍ଣ କଳଂକିତ ପଥର ସବୁ ଲାବଣ୍ୟ ଭରା
କାଳ-ଦନ୍ତ-ଘାତ-ବିଭଗ୍ନ - ପତ୍ର- ମୋହନ କଳା
ସରସ ସୀତାଂଶୁ ପରଶେ କରେ ଜୀବନ୍ତ ଲୀଳା ।”

ଝଡ଼ ଆକୁଳ କୋଜାଗରୀ ରାତ୍ରିରେ କୋଣାର୍କ ଗର୍ଭରୁ ନୀଳକଣ୍ଠ କିମ୍ବଦନ୍ତୀ ଓଟାରିଛନ୍ତି । ତାହାହିଁ ‘ମାୟାଦେବୀ’ ପର୍ଯ୍ୟାୟ ସୃଷ୍ଟି କରିଛି । ତେବେ ମନେହୁଏ ନୀଳକଣ୍ଠଙ୍କ କୋଣାର୍କ ଉଦାର ଉଦଧି ଦାର୍ଶନିକର କୋଣାର୍କ: ମାତ୍ର କବିର ନୁହେଁ । ଦୃଷ୍ଟି ଏଠି ଭାରି ପିତୃସୁଲଭ । ଖାଣ୍ଟି ଓଡ଼ିଆ ଭାଷା, ଉନ୍ନତ ରୁଚି ଓ ଶାଳୀନତାର ଅଭାବ ଏଠି ନାହିଁ ସତ- ମାତ୍ର କାବ୍ୟର ଯେଉଁ ଅପୂର୍ବ ଶିଳ୍ପକଳା ଓ କାରୁକାର୍ଯ୍ୟ ପ୍ରାଣର ପ୍ରତି ତନ୍ତ୍ରିକୁ-ତନ୍ତ୍ରିରାଜିର ସ୍ନାୟୁଗ୍ରନ୍ଥିକୁ ନିଜର ରସବର୍ଷି ନିର୍ଯ୍ୟାସରେ ସିକ୍ତ କରିଯାଏ, ତାହା ନୀଳକଣ୍ଠଙ୍କ ଅଭିଭାବକସୁଲଭ ଗୁରୁଜନୋଚିତ ଶିକ୍ଷକୀୟ ହାତ ଦେଇପାରି ନାହିଁ । ଦାର୍ଶନିକ ନୀଳକଣ୍ଠ କୋଣାର୍କର ରୂପବିଭବ, ଏହାର ସୌନ୍ଦର୍ଯ୍ୟ ଓ ସମ୍ପଦସବୁକୁ ନ ଦେଖି ମାୟାଦେବୀ ଓ ନରସିଂହଙ୍କ ପ୍ରଣୟ କାହାଣୀ ପରିବେଷଣ କରିଛନ୍ତି । “କୋଣାର୍କେ”ର ପ୍ରଥମାଂଶ ଯେତିକି ଅନବଦ୍ୟ ଓ ସୂକ୍ଷ୍ମକୋମଳ, ଅପରାଂଶ ବିଶେଷତଃ ଶେଷାଂଶ ସେତିକି କ୍ଲିଷ୍ଟ ଓ କଠିନ । ନୀଳକଣ୍ଠଙ୍କ ଏହି କାବ୍ୟରେ ମାୟାଧର ମାନସିଂହ ଯେଉଁ ମୁଖବନ୍ଧ ଲେଖିଛନ୍ତି, ସେଥିରେ ମନୀଷୀ ଓ ଦାର୍ଶନିକ ନୀଳକଣ୍ଠଙ୍କ ପ୍ରତି ଅକପଟ ଶ୍ରଦ୍ଧା ଓ ସ୍ୱୀକୃତି ବିତରଣ କରାଯାଇଥିଲେ ହେଁ ଏହା ଭାରସାମ୍ୟ ରକ୍ଷା କରିଛି ସିନା, ମାତ୍ର ପ୍ରତି ମଣିଷର ହୃତ୍‌ପିଣ୍ଡ ଭିତରକୁ ମାନସିଂହ କାବ୍ୟ ପରି ଅନୁପ୍ରବେଶ କରିପାରିଚି କି ? ତା’ଛଡ଼ା ‘ଭୀମଭୂୟାଁ’ ଉପନ୍ୟାସର ଲେଖକ ସ୍ୱର୍ଗତଃ ଗୋପାଳବଲ୍ଲଭ ଦାସଙ୍କର ‘କୋଣାର୍କେ ଉଷା’ (ଯାହା ତତ୍କାଳୀନ ‘ଇନ୍ଦ୍ରଧନୁ’ ପତ୍ରିକାରେ ପ୍ରକାଶିତ ହୋଇଥିଲା) କାବ୍ୟର ପ୍ରଭାବ ନୀଳକଣ୍ଠଙ୍କ ‘କୋଣାର୍କେ’ ଉପରେ ଊଣାଅଧିକେ ପଡ଼ିଛି । ଗୋପାଳବଲ୍ଲଭଙ୍କର (କୁଳବୃଦ୍ଧ ମଧୁସୂଦନଙ୍କ ସାନଭାଇ) ରଚିତ ‘କବିତା ମଞ୍ଜରୀ’ କଟକ ପ୍ରିଣ୍ଟିଂ କମ୍ପାନୀ ଆନୁକୂଲ୍ୟରେ ୧୮୯୫ ଖ୍ରୀଷ୍ଟାବ୍ଦରେ ପ୍ରଥମେ ପ୍ରକାଶ ପାଇଥିଲା । ସେଥିରେ ସନ୍ନିବେଶିତ ‘କୋଣାର୍କ’ କବିତା ଏହିପରି ଆରମ୍ଭ ହୋଇଚି–

“ହେ ଚାରୁହାସିନୀ ତବ ସେ ମୋହିନୀ ଶାନ୍ତି ଲାଗି ନିତି ପ୍ରତି
କିମ୍ପାଇ ଉତ୍କଳ ବଦନ ଉଜ୍ଜ୍ୱଳ ହେଉନାହିଁ କହ ସତୀ ।
ତୁମ୍ଭେ ବିଶାଳାକ୍ଷୀ ପୁରାତନ ସାକ୍ଷୀ କାଳେ କାଳେ ବିରାଜିତ
ଉତ୍‌ଥାନ ପତନ କଲେଣି ଦର୍ଶନ କେତେ କେତେ ଅଗଣିତ ।”

ପରେ ପରେ ଗୋପାଳବଲ୍ଲଭଙ୍କ କଲମ ଏହିଭଳି ଗତି କରିଛି । ନୀଳକଣ୍ଠଙ୍କ ଶୈଳୀ ଓ ସୃଷ୍ଟି ସହିତ ତାଙ୍କର ପୂର୍ବସୂରୀ ଭାବରେ ଗୋପାଳବଲ୍ଲଭଙ୍କ ଏ କବିତା ମାର୍ମିକ ଓ ହୃଦୟସ୍ପର୍ଶୀ ।

ଉତ୍କଳମଣି ଗୋପବନ୍ଧୁଙ୍କ 'ଧର୍ମପଦ'ରେ କାହାଣୀ ବା ଆଖ୍ୟାୟିକା ମୁଖ୍ୟତଃ ଗତିବେଗ ଲାଭ କରିଛି । ଗଳ୍ପାଂଶଂକୁ ଏଥିରେ ପ୍ରାଧାନ୍ୟ ଦିଆଯିବା ସହିତ ଅନେକ ସୂକ୍ତି ଏଥିରେ ନିହିତ ଅଛି । ସେଗୁଡ଼ିକ ଓଡ଼ିଶାର ସବୁ ଶ୍ରେଣୀୟ ବିଦ୍ୟାର୍ଥୀଙ୍କ ନିକଟରେ ରତ୍ନତୁଲ୍ୟ । ମା' ଧର୍ମପଦକୁ ବିଦାୟ ଦେଲାବେଳେ ପୁଅ ପାଇଁ ଯେଉଁ ଆଶ୍ଚର୍ଯ୍ୟ ନିଷ୍କରୁଣ ଭାଗ୍ୟର ପରିହାସ ଅପେକ୍ଷା କରିଛି, ସେ ସମ୍ବନ୍ଧରେ ମାଆ ଓ ସ୍ୱୟଂ ଧର୍ମପଦ ସମ୍ପୂର୍ଣ୍ଣ ଅନବହିତ । 'ଅଣବାବୁଆ' ଶ୍ଳେଷର ଅଭିମାନ ଏତେ ପ୍ରଚଣ୍ଡ ଓ ଏତେ ଶକ୍ତିଶାଳୀ ଯେ ସୂର୍ଯ୍ୟ- ରଥଭଳି ମନ୍ଦିର ଶିଖରକୁ ଏହା ମାତ୍ର ଗୋଟିଏ ରାତି ଭିତରେ ବାରଶତ ଶିଳ୍ପୀଙ୍କୁ ପରାଭୂତ କରି ପୂର୍ଣ୍ଣାଙ୍ଗ ଓ ସମ୍ପନ୍ନ କରିପାରିଲା । ପ୍ରକୃତ ଶିଳ୍ପୀର ଅନ୍ତରରେ ଏହିଭଳି କ୍ଷିପ୍ରତେଜା ଅଭିମାନ ଓ କରୁଣ ସରଳତା ହିଁ ସମ୍ଭବ । ମା' ନିକଟରୁ ଧର୍ମପଦର ଯାତ୍ରା, ମମତା ନିକଟରୁ ମୃତ୍ୟୁ ନିକଟକୁ : ପ୍ରଣୟ ନିକଟରୁ ପ୍ରଳୟ ପାଖକୁ । ଗୋପବନ୍ଧୁଙ୍କ ହାତ ଆମକୁ ସେ କରୁଣତମ ଦିଗ ସମ୍ବନ୍ଧରେ ବେଳକୁ ବେଳ ବଂଶୀରେ କରୁଣ ରାଗ ଶୁଣାଇ ଚାଲିଛି । ପାଠକ ଚେଷ୍ଟା କରି ମଧ ପଠନ ଯାତ୍ରାରେ ବିପଦ ଶିକୁଳି ଟାଣିପାରୁ ନାହିଁ । ତା' ଆଖି, କାନ, ହୃତ୍‌ପିଣ୍ଡ ସବୁ ସତର୍କ । ଗୋପବନ୍ଧୁଙ୍କର ଧର୍ମପଦ କାବ୍ୟର ଶେଷାଂଶ ତ ସହସ୍ରେ ଜାହାଜ ଫାଟିବାର ଭୟ ସହିତ ସମାନ । ଥରେ କ'ଣ ସେହିଠାରେ ଅଖି ଧରମା ତା' ବୋଉ କଥା ମନେ ପକାଇ ନାହିଁ ? 'ଜୟ ଜଗଦୀଶ ହରେ' ପ୍ରାର୍ଥନା ନ ଥିଲେ ପାଠକକୁ ରୁନ୍ଧି ହେଲାଭଳି ଲାଗିଥାଆନ୍ତା । କିଛି ସରଳ ତରଳ ଭାଷାର ପୁଞ୍ଜି ବିନିଯୋଗ କରି ଯେଉଁ ଶକ୍ତିଶାଳୀ ଭାବର ପ୍ରଦର୍ଶନୀ କରାଯାଇ ପାରିଛି ଓ ଯେପରି ଆଖ୍ୟାୟିକାର ଗତିବେଗ ଅବ୍ୟାହତ ରଖାଯାଇଛି, ତାହା ଗୋପବନ୍ଧୁଙ୍କ ପ୍ରାକ୍ କବି ଜୀବନର କମ୍ କୃତିତ୍ୱ ନୁହେଁ । ଗଳ୍ପ ବର୍ଣ୍ଣନାତ୍ମକ, ସରଳ । ବଞ୍ଚି ରହିବାର ମାୟା ମମତାକୁ ସମୁଦ୍ରରେ ଉଜେଇଁ ଦେଇ, କିମ୍ବଦନ୍ତୀର ସେ ବିନୀତ ଧର୍ମପଦ ତାଙ୍କ କବିତାରେ ଯେପରି ଅଣଲେଉଟା ବୁଡ଼ ପକାଇ ପାରିଛି । ସମସ୍ତ ଆଖ୍ୟାୟିକା ନିଜ ଶକ୍ତିରେ ପାଠକର କୌତୂହଳ ଓଟାରେ । ନିଜର ଧୈର୍ଯ୍ୟହୀନତା ଓ କ୍ଳାନ୍ତିବୋଧ ନିକଟରୁ କୌଣସି ଅଭିଯୋଗ ମଧ ମିଳେ ନାହିଁ । କେବଳ ଭୟ ମିଳେ, ଯାହା କବିତାର ଚୂଡ଼ାନ୍ତ ଓ ଚରମ ଉତ୍କର୍ଷରୁ । ତା'ଛଡ଼ା ନିଜ ଈଶ୍ୱରଙ୍କ ପାଇଁ, ଦେବତାର

ପୂଜାପାଠ ପାଇଁ ଆପଣାର ପିତୃପୁରୁଷ ଗୁରୁଜନମାନଙ୍କ ଗୌରବ ରକ୍ଷା ପାଇଁ ଏହାଠାରୁ ଆଉ ଅଧିକ ଗୌରବମୟ ତ୍ୟାଗ ବା କ'ଣ ଥାଇପାରେ ? ଏଇଠି ଇଂରାଜୀ କବି ଟି.ବି. ମ୍ୟାକ୍‌ଲେଙ୍କର 'ହୋରାସିଅସ୍' କାବ୍ୟର ଗୋଟିଏ ପଙ୍‌କ୍ତି ଉଦ୍ଧାର ନ କରି ରହିହୁଏ ନାହିଁ :

"For how can man die better ?
Than facing fearful odds
For the ashes of his fathers
And the temple of his Gods ?"

ଅର୍ଥାତ୍– "କୌଣସି କଳହ ଓ ମତଭେଦର ଆହ୍ୱାନକୁ ସାମ୍ନା କରିବାପାଇଁ ଆତ୍ମାହୁତି ଦେବାଠାରୁ କିମ୍ବା ପିତୃପୁରୁଷଙ୍କ ସ୍ମୃତି ଉଦ୍ଦେଶ୍ୟରେ ଭୟଶଙ୍କୁଳ ବାଧାବିପତ୍ତିର ସମ୍ମୁଖୀନ ହୋଇ ଆପଣାକୁ ଉତ୍ସର୍ଗୀକୃତ ତର୍ପଣ କରିବାଠାରୁ ଅଥବା ଆପଣା ଆରାଧନାର ପୂଜାପୀଠର ସ୍ଥିତି ନିମିତ୍ତ ମହାକାଳ ନିକଟରେ ନିଜକୁ ନିବେଦିତ କରିବାଠାରୁ ବଳି ଅଧିକତର ଭାବେ ମଣିଷ ଆଉ କିଭଳି ବା ଆତ୍ମବିସର୍ଜନ କରିପାରିବ ?"

ଡକ୍ଟର କୁଞ୍ଜବିହାରୀ ଦାଶଙ୍କର 'ଚାରଣିକା' କୋଣାର୍କ ଉପରେ ଆଧାରିତ ଏକ କାବ୍ୟ ନାଟିକା । ବିଷୟବସ୍ତୁ ଗୋଟିଏ ନିର୍ଜନ ଚନ୍ଦ୍ରାଲୋକିତ ନିଶୀଥର କାହାଣୀ । ପୂର୍ଣ୍ଣଭାଗା ଚନ୍ଦ୍ରଭାଗାର ତୀରେ ତୀରେ ପ୍ରଫୁଲ୍ଲ ମହୋଦଧିର ତଟଭୂମିରେ ଲାଗିଚି ଅନନ୍ତ ଯୌବନର ଉଦ୍ଦାମ କ୍ରୀଡ଼ାବିଳାସ । ଉର୍ବଶୀ, ରମ୍ଭା, ଚିତ୍ରଲେଖା ଓ ମେନକା ଇତ୍ୟାଦି ଅପ୍ସରାଙ୍କର ପଦପାତରେ ସାଗରବେଳା ତଟସ୍ଥ । କଲେରିଜ୍‌ଙ୍କର 'ଆନ୍‌ସିଏଣ୍ଟ ମାରିନ୍‌ର' ପରି ସମୁଦ୍ରର କେଉଁ ଅଜ୍ଞାତ କୋଣରୁ କ୍ଷେପଣୀ ଚାଳନା କରି କରି ଏକ ସାଗରସମ୍ଭବା କାବ୍ୟନାୟିକା ସାଗରିକା ଆସି ରୂପସୀମାନଙ୍କ ସହିତ ନିଜକୁ ନୃତ୍ୟରେ ଯୁକ୍ତ କରିଛି । ଧର୍ମପଦର ଆତ୍ମା ସହିତ ତାହାର ଆତ୍ମା ଅଭିନ୍ନ । ତା'ର ବାହୁ ଯୁଗଳରେ ଆବଦ୍ଧ ଧର୍ମପଦର ପ୍ରତିମୂର୍ତ୍ତି । ସେକ୍ସପିଅରଙ୍କର 'ମିଡ୍ ସମର ନାଇଟ୍‌ସ୍ ଡ୍ରିମ୍' ପରି ଗୋଟିଏ ରାତିର କଥାବସ୍ତୁ ଇଏ । ରଜନୀର ଦ୍ୱିତୀୟ ଯାମରେ ନାଟିକା ଆରମ୍ଭ : ପ୍ରଭାତରେ ସମାପ୍ତି । କବି ସେହି ଉନ୍ମନା ଚାରଣିକାର କଣ୍ଠରେ ସମଗ୍ର କଥାବସ୍ତୁ–ଚରିତ୍ର, ପରେ ଚରିତ୍ର ନାଟିକାର ବିକାଶ, ଶୀର୍ଷାରୋହଣ ତଥା ଲୋକଗାଥାର ଆଲୋଚ୍ୟ କରୁଣ କିମ୍ବଦନ୍ତୀକୁ ପ୍ରକାଶ କରିଛନ୍ତି । ରୂପମୟୀ ସଖୀମାନଙ୍କୁ ବିସ୍ମୟାକୁଳ କରି

ସାଗରିକା ତନ୍ନ ତନ୍ନ କରି ପର୍ଯ୍ୟାୟକ୍ରମେ କୋଣାର୍କ ନିର୍ମାଣର ରହସ୍ୟ ଉନ୍ମୋଚିନ କରିଛି । ସାଗରିକା ନିଜେ ଯେମିତି ଏକ ଅତୃପ୍ତ କାଳିଜାଈ : ଏକ ଉର୍ଣ୍ଣନାଭ– ଯିଏ ନିଜ ଛାତିରୁ କାହାଣୀର ନୀଳଜାଲ ବିସ୍ତାର କରିପାରେ । ବହୁ ରକ୍ତକ୍ଷରା ସ୍ମୃତିର ପୁନରାବୃତ୍ତି ଏହା । ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ 'ମୁଖବନ୍ଧ' ପ୍ରୋକ୍ତ କାବ୍ୟ ପଠନ ପରେ କୁଞ୍ଜବିହାରୀଙ୍କ ଏକନିଷ୍ଠ ସାଧନା ଓ କାବ୍ୟ- ଆବେଗକୁ ନିର୍ଦ୍ଦେଶ କରିଥାଏ ।

ବଙ୍ଗଳାର ପ୍ରତିଷ୍ଠିତ କବି ବିଷ୍ଣୁ ଦେ'ଙ୍କର "କୋଣାର୍କ" କବିତାର (ଆଲେଖ୍ୟ) ଭାବଧାରା ଅନ୍ୟ ଏକ ଧର୍ମୀ । ଆକାଶର ନୀଳ ବାଲୁକାରେ ସୂର୍ଯ୍ୟ ମୁଖର ଉତ୍ତାପର କଳରୋଳ ଦର୍ଶକର ଚକ୍ଷୁପଥକୁ ମାୟାଗ୍ରସ୍ତ କରେ । ନିର୍ମାତା ଶିଳ୍ପୀ- ମଣିଷଙ୍କର ଉଚ୍ଛକିତ ଆଳାପ କାନରେ ରହି ରହି ବାଜେ । ସାଧାରଣ ଜୀବନରେ ଆନନ୍ଦର ତୀକ୍ଷ୍ଣ ସ୍ୱରର ନୃତ୍ୟମୟ ଖୋଳ- କରତାଳର ନଦୀୟା ଓ ଓଡ଼ିଶୀ କୀର୍ତ୍ତନ ସହିତ ପଥିକର ପାଦକୁ ନୃତ୍ୟମୟ କରି ତୋଳେ ।

ଏହା ଯେପରି କବିଙ୍କୁ ନିର୍ମାଣର ଜୟଗାନ, ଭାସ୍କର୍ଯ୍ୟ ଶିଳ୍ପୀର ଜୟଗାନ କଲା ଭଳି ମନେ ହେଉଚି । କବିଙ୍କର ମନେ ହୋଇଚି ଆକାଶର ସ୍ତରେ ସ୍ତରେ ପୂଜକ ମଣିଷ ଓ ଶିଳ୍ପୀ-ମଣିଷର ପ୍ରାଣସୂର୍ଯ୍ୟ ଆପାଣାର ରଶ୍ମି ଓ ରୂପ ବିସ୍ତାର କରିଚି । ଏଇ ଜଡ଼ ପୃଥିବୀର ଦେହରେ ଲକ୍ଷାଧିକ ମାନବକର୍ମୀଙ୍କ କୋଳାହଳଭରା ଏକାଗ୍ର ପୂଜାର୍ଚ୍ଚନା ଅଚଳଶିଳାରେ ପ୍ରାଣ ସଂଚାର କରୁଛି । ତେଣୁ ବିସ୍ମିତ ବିଷ୍ଣୁ ଦେ' ଲେଖିଛନ୍ତି (ଯାହାର ଓଡ଼ିଆ ଅନୁବାଦ ଏଠାରେ ଦିଆଗଲା) :

"ଏମାନେ ବା କିଏ ?
କିଏ ଏଇ ଶୂନ୍ୟର ବିଜେତା ?
ଭରିଦିଏ କିଏ ପୁଣି ଶୂନ୍ୟ କଳସ ?
ଜୀବନର ସହସ୍ର ପାଖୁଡ଼ା ଘେନି
କିଏ ଏଇ ଫୁଲ ତୋଳେ ମୃତ୍ୟୁଭୟ ହଟାଇ ଅବଶ୍ୟ ?
ଏମାନେ ସବୁ କି ବୀର,
ପ୍ରତ୍ୟେକ କି ଅଶ୍ୱାରୋହୀ ଅନଳସ କର୍ମୀ ?
ଜୀବନର ନିର୍ମାଣରେ
ସମସ୍ତେ ଅପରାଜେୟ ଏକତ୍ରିତ, ସଂହତ, ତନ୍ମୟ ?

ସେ ସବୁକୁ ବୁଝିସାରି ଚନ୍ଦ୍ରଭାଗା ବହିଯାଏ ମଧ୍ୟାହ୍ନରେ
କୋଣାର୍କ ସାମ୍ନାରେ ଅମ୍ଳାନ ଚକ୍ଷୁରେ ।
ଯେତେବେଳେ ଆଖି ଆଗେ ନାଚିଯାଏ ସେ ଅତୀତ–
ନାଉରୀଆ ଗୀତ ମହୋଦଧି ତରଙ୍ଗ ହିଲ୍ଲୋଳେ ।"

ସେ ଲେଖିଛନ୍ତି– ଆଦିଗନ୍ତ ସ୍ତବ୍ଧ ସନ୍ଧ୍ୟାବେଳେ ମରୀଚିକା ଭର୍ତ୍ତି ଏ ବାଲୁକା ଶଯ୍ୟାରେ ହର୍ଷହୀନ ରାତ୍ରୀ । ଆମ ଜୀବନର ପରାଜିତ ହେବାର ପ୍ରତିଟି ପ୍ରହରରେ ଆକାଙ୍କ୍ଷାର ଚୂଡ଼ା ସବୁଦିନେ ଧୂଳିସାତ୍ ହୁଏ । ମନ୍ଦିରର ଶୀର୍ଷଭୂମିରେ ଅହଲ୍ୟା ପ୍ରାଣରେ ରୂପାନ୍ତର ହୋଇ ରହିଥାଏ ପ୍ରତ୍ୟେକ ସମ୍ବେଦନଶୀଳ ଆତ୍ମା । ତାହା ଖୋଦିତ କିନ୍ନର ହୋଇ ଖିଲାଣର ଆଲମ୍ବିତ ଶୂନ୍ୟ ଆବର୍ତ୍ତରେ ଆକର୍ଷିତ ହୋଇ ରହିଯାଏ ।

ଏ ଶୂନ୍ୟତାରେ କିଛି ନାଇଁ କେବଳ ସମୟର ସକଳ ପ୍ରହର ବ୍ୟତୀତ । ପ୍ରତ୍ନମୟ ପୃଥିବୀର କୌଣସି ବାସ୍ତବତା, କୌଣସି ଯନ୍ତ୍ର କିମ୍ବା ତନ୍ତ୍ରକୁ ଆଖି ଓ ଶବ୍ଦ ସେଠାରେ ପଢ଼ିପାରେ ନାହିଁ । ସେଠାରେ ପାଷାଣ ନିଜର କ୍ଷିପ୍ର ନୃତ୍ୟରେ ବିରାଟତ୍ୱରେ ଉର୍ଦ୍ଧ୍ୱଶ୍ୱାସ ହୋଇ ବିଲୀନ ହୁଏ । ସେ ବିରାଟତ୍ୱ ଆପଣାର ମହାବାହୁକୁ କି ଦିନ କି ରାତି ଏଇଠି ପ୍ରସାରିତ କରେ । ତାହା ଯେପରି ଶେଷ ଆକାଙ୍କ୍ଷାର ବିଦାୟ- ଉନ୍ମୁଖ ମୁହଁ । କେଉଁ ଏକ ନିମଜ୍ଜମାନ ସତ୍ତାର ଦୁର୍ଦ୍ଦମନୀୟ ସାଗରର ଢେଉରେ ଢେଉରେ ଅତୀତ ଓ ଅନାଗତ ସମସ୍ତେ ମସୃଣ । ଖାଲି ଯାହା ଅବଶିଷ୍ଟ ଅଛି ନିଛକ କିଛି ପଥରର ମୂର୍ତ୍ତି: କେତେକ ନଟୀ, ଯେଉଁଥିରେ ସ୍ୱୟଂ ସୌନ୍ଦର୍ଯ୍ୟ ଆତ୍ମ- ପ୍ରତିଷ୍ଠ:\ଅନ୍ତରର ଆଭାଷ ଆକର୍ଷଣ ମୁଦ୍ରାରେ ଉତ୍କୀର୍ଣ୍ଣ । ସେମାନଙ୍କ ମୃଦଙ୍ଗର କରତାଳରେ ମହାକାଳ ଶୂନ୍ୟ ନିଃସଙ୍ଗ ଆକାଶରେ ନୀରବ ଆଘାତ ହାଣେ, ଫଳରେ କୋଣାର୍କ ମନ୍ଦିରର ଗାତ୍ର ଅଟ୍ଟହାସ୍ୟରେ ଭରିଉଠେ ।

ଏହା ପରେ କବିଚିତ୍ତ ଭାବାବେଶରେ ନିରୀକ୍ଷଣ କରିଚି କିଭଳି-

"ସଚିକିତ ନାରୀକେଳ ବନବୀଥି ଜାଗିଉଠେ ସମୁଦ୍ର ତାଳରେ ।
ଅର୍କ ମନ୍ଦିରର ଧ୍ୱନି ଭରିଯାଏ ଆଖିରେ ଓ ଶ୍ରବଣରେ:
ମର୍ମେ ମର୍ମେ: ମର୍ତ୍ତ୍ୟର ଜୀବନେ ।
ନିଃସଙ୍ଗ ଏ କୋଣାର୍କର ମନୋହର ଘନ ନୃତ୍ୟେ
ସୁଖର ସକାଳେ କେତେ ଶିଳ୍ପୀ, ମଜୁରିଆ, ମତ୍ସ୍ୟଜୀବୀ କୁଲିଙ୍କର
କର୍ମନିଷ୍ଠ ସହସ୍ର ଗୁଞ୍ଜନେ ।"

ବିଷ୍ଣୁ ଦେ'ଙ୍କର ଦୃଷ୍ଟି ନିରୀକ୍ଷଣ କରିଚି କିଭଳି ଶତ ସହସ୍ର ସଂଖ୍ୟକ ବଟାଳୀ ଓ ନିହାଣର ଅର୍କେଷ୍ଟ୍ରାରେ ବିସ୍ତୃତ ଏ ଆକାଶର ଶୂନ୍ୟତା ଶବ୍ଦ-ଗର୍ଭା ହୋଇଉଠିଛି : ପୃଥିବୀର ପାଷାଣ ଗାତ୍ରରେ ଲକ୍ଷ ଲକ୍ଷ ମିଥୁନ ମୂର୍ତ୍ତିର ଅନୁପମ ଭଙ୍ଗୀ କିଭଳି ଗଢ଼ିହୋଇ ଯାଇଛି ।

କବି ଦେଖିଛନ୍ତି ଫୁଲ ଓ ଲତାରେ ପୁଣି ପଲ୍ଲବିତ କେଉଁ ବୃକ୍ଷର ପାର୍ଶ୍ୱରେ ଶତ ଜୀବନର ଗୁପ୍ତଭାଷା । କବିଚିତ୍ତ ବିସ୍ମିତ, କିଭଳି ଏ ଦେଶର ମଣିଷ- ହାତ ସୂର୍ଯ୍ୟଭଳି ସର୍ବଜୟୀ ଜୀବନର ପ୍ରତ୍ୟକ୍ଷ ଆବେଗ ଏଠାରେ ଦାନ କରିଗଲା । ଶତ ସହସ୍ର ବନ୍ଦୀ, ବଞ୍ଚିତ ଓ ଶ୍ରମଜୀବୀ ମଣିଷର ପାପୁଲିରେ ଏହିଠାରେ ରକ୍ତ ସୂର୍ଯ୍ୟଦାଗ ସବୁ କବି ମାନସନେତ୍ରରେ ଦେଖିପାରିଛନ୍ତି । ସେ ଦେଖିପାରିଛନ୍ତି କିଭଳି ନିର୍ମାଣର ତନ୍ମୟ ଧ୍ୟାନରେ ମହାନ ସୌନ୍ଦର୍ଯ୍ୟ ଫୁଟି ଉଠେ ।

ସମଗ୍ର କବିତାରେ ଏକପ୍ରକାର ଚାପା ବିଦ୍ରୂପ ଓ ଶ୍ଳେଷ ପାଠକ ଆଖିରେ ଧରା ନ ପଡ଼ି ରହିପାରେ ନାହିଁ । ତଥାପି ସୌନ୍ଦର୍ଯ୍ୟ ତନ୍ମୟ ଜୀବନ ଓ ସ୍ୱପ୍ନମେଦୁର କଳ୍ପନା ଯେ ନାହିଁ; ନୁହେଁ । ଶ୍ରମଜୀବୀ ପ୍ରାଣର ଘର୍ମାକ୍ତ ସ୍ପନ୍ଦନ ଏ କବିତାରେ ରସପୂର୍ତ୍ତି ଲାଭ କରିଛି । ଏହି ଶ୍ରମଜୀବୀକୁଳ କିଭଳି ଜୀବନର ସହସ୍ରଦଳ ଯୁକ୍ତ ଫୁଲ ଫୁଟାଇଛନ୍ତି, କିଭଳି ସେମାନଙ୍କର ମୃତ୍ୟୁଭୟ ନାହିଁ; ସେମାନେ କିଭଳି ଅପରାଜେୟ, ଅନଳସ ଓ ଜୀବନର ନିର୍ମାଣରେ ଅରୁଣାଶ୍ୱ- ଆରୋହୀ ତାହାରି ଜୟଗାନ ବିଷ୍ଣୁ ଦେ' କରିଛନ୍ତି । ସୃଷ୍ଟି ମଧ୍ୟରେ ଶିଳ୍ପୀ ଆତ୍ମାର ଅବିନାଶୀ ଶକ୍ତିର ଆତ୍ମପ୍ରକାଶ ତାଙ୍କୁ ମୁଗ୍ଧ କରିଛି ।

କବି ବିନୋଦଚନ୍ଦ୍ର ନାୟକଙ୍କ "ନୀଳନିର୍ଜନ" କବିତାରେ ଦୃଷ୍ଟିକୋଣ ଆଉ ଏକ ଭିନ୍ନ ଦିଗର ସନ୍ଧାନ କରେ । ଏଠି ଯେପରି ଜଣେ ଶିଶୁ (ଧର୍ମପଦ) ର ଛାତି ଉପରେ ବସି ଭଙ୍ଗା କୋଣାର୍କ ସ୍ୱୟଂ କାପାଳିକ ରୂପରେ ଯୁଗ ଯୁଗ ଧରି ଶବ ସାଧନା ତନ୍ତ୍ରପୂଜାରେ ବ୍ୟସ୍ତ । ତା'ର ଇପ୍ସା ମଧ୍ୟ ଅନନ୍ତ । ସୁଦୂର ଦିଗନ୍ତର ଧୂମ ନୀଳ ସୀମାରେଖା ଆଡ଼େ ଚାହିଁ ଚାହିଁ ଯେଉଁଠି ପ୍ରତିଦିନ ଏକ ନୂଆ ସୂର୍ଯ୍ୟ ଅନନ୍ତ ମହୋଦଧିକୁ ଦ୍ୱିଧା ବିଭକ୍ତ କରି ଉତ୍‌ଥିତ ହୁଏ । ମାତ୍ର ଦୁଇଦଣ୍ଡ ପାଇଁ ନୂଆ ସୂର୍ଯ୍ୟ ଉତ୍‌ଥିତ ହୁଏ କୋଣାର୍କ ମନ୍ଦିରର ସ୍ୱେଦସ୍ୱିକ୍ତ ଶରୀରକୁ ଆଲୋକର କୁଙ୍କୁମରେ ବର୍ଣ୍ଣାଢ଼୍ୟ କରି । ପାଷାଣର ପ୍ରତ୍ୟେକ ଶିରା-ଉପଶିରା ଭିତରେ ଶିହରଣ ଜାଗେ: ଅନେକ ପ୍ରଗଳ୍ଭ- ଉଗ୍ର ସ୍ୱପ୍ନ ମଧ୍ୟ ଚେଉଁଉଠେ ।

ଆଶାବାଦୀ କବି ପରମୁହୂର୍ତ୍ତରେ ଭାବି ବସିଚି–

"ଗୌରବର ଭଗ୍ନ ହାଟ
ପୁନଶ୍ଚ ବସିବ କେତେ ତୋଳି କଳରବ
ଉଦୟ ଶିଖର ଭେଦି ଶିଳ୍ପୀ ସଂଘ
ଶୋଭାଯାତ୍ରା ତବ
ପଦମୂଳେ ଉଦ୍‌ଯାପିବେ ?
ପୁନର୍ବାର ଶିଳ୍ପୀ ଶିଶୁ
ମଣ୍ଡିବ ସଧୀରେ
ସ୍ୱର୍ଣ୍ଣ କଳସ ମୁକୁଟ ସ୍ୱେଦ- କୃଷ୍ଣ ଶିରେ ?
ଚନ୍ଦ୍ରଭାଗା ସମାପନି ଉଷାର ଜୁଆର ସ୍ନାନ
ଉଦୟ ରବିର
ବିରହ ବିବର୍ଣ୍ଣ ଭାଲେ ଲେପି ଦେବ
ମମତାର ମସୃଣ ଅବିର
ତୃଷାତୁର ସସ୍ମିତ ଲପନ
ତୋଳି କେବେ ଆଙ୍କିଦେବ ସମ୍ମତ ଚୁମ୍ବନ ?"

କବି ମତରେ ପୂର୍ବୋକ୍ତ ଆଶା ଓ ବିଶ୍ୱାସରେ କୋଣାର୍କ ଯେପରି ବଞ୍ଚି ରହିଚି । ତଥାପି ଏଠି କରୁଣତା । ତଥାପି ଏଠି ଶ୍ମଶାନିତ ମୃତ୍ୟୁଗାଥା । କବରର ପୀତାଭ ଏପିଟାଫ୍ ବା ମୃତ୍ୟୁଲିପି ଘୋଷି ଘୋଷି କି ଏକ ଅବ୍ୟକ୍ତ ସିମ୍ଫୋନି ଇଥରକୁ ଆଲୋଡ଼ିତ କରେ । ବିନୋଦଚନ୍ଦ୍ରଙ୍କ ଲେଖନୀରେ ତାହାହିଁ ସାର୍ଥକ ଭାବେ ପ୍ରକାଶ ପାଇଛି–

"ସେ କେଉଁ ନୀଳ ନିର୍ଜନ ଘୂରେ ଫେରି
ମାଟି ଓ ଆକାଶ ମଧ୍ୟେ ବିସ୍ମୟ ଜଣାଇ
ଭୁଲିଯାଏ ହେ ସମାଧି । ଦୁଇବିନ୍ଦୁ ଅଶ୍ରୁଜଳ
ଢାଳିଦେବା ପାଇଁ ।"

ସେଇ କବି ପୁଣି ଶିଳାନର୍ତ୍ତକୀଙ୍କ ନୃତ୍ୟଭୂମିର ଉର୍ଦ୍ଧ୍ୱରେ ବାସ୍ତବ ଜୀବନକୁ ଅବତୀର୍ଣ୍ଣ ହେବା ଇଚ୍ଛା ପୋଷଣ କରି ଆପଣାର ନାୟିକାକୁ ବିନୀତ ଆହ୍ୱାନ ଜଣାଇଛନ୍ତି । ସେ ଆହ୍ୱାନ ରୋମାଣ୍ଟିକ୍ କବିର ଆହ୍ୱାନ–

" ଆସ ତୁମେ ଛାଡ଼ି କୋଣାର୍କ ଶିଳାଭୂମି
ସ୍ତନ ଚୂଡ଼ା ଛାୟା ଛୁଆଁ କଟିତଟ
ମଦିରେକ୍ଷଣ ରୂପ
ବିଭ୍ରମ ବେଳା ଭ୍ରମଣ ବିଳାସୀ ରୂପ
ଛାଡ଼ି ତୁମେ ଆଜି ଆସ
ହାତେ ମୋର ତୁମେ ନଗ୍ନ ହାତଟି ରଖ ।"

କବି ରାଧାମୋହନ ଗଡ଼ନାୟକଙ୍କ 'ବଢ଼େଇ ପିଲା' କବିତା କୋଣାର୍କର ସରଳୀକୃତ ରେଖା ଚିତ୍ରଟିଏ । ଏହା ଭିତରେ ଅନେକ ବେଶୀ ଖୋଜିଲେ ନିରାଶ ହେବାକୁ ପଡ଼େ ।

ଆଜିର ଆଧୁନିକ ମନ କୋଣାର୍କକୁ କୌଣସି ମଧ୍ୟଯୁଗୀୟ ରସିକ ଦୃଷ୍ଟିରେ ଆଉ ଦେଖିବାକୁ ଚାହେଁନା । ସେ ମଣିଷ : ସୌଦାଗରୀ- ନଗର ସଭ୍ୟତାର, ସେ ବହୁ ଜଟିଳ- ବହୁ ବିଭକ୍ତ ମଣିଷ । ନିଜର "କୋଣାର୍କ" କବିତାରେ କବି ଭାନୁଜୀ ରାଓ ସେମାନଙ୍କର ହିଁ ପ୍ରତିନିଧି । ସେମାନେ ସହରର ପାଣିପାଗରେ ଆଖିର ରୁଚି ଗଢ଼ି, ରାସ୍ତାରେ ନାଲି ଧୂଳି ଉଡ଼ାଇ, ମଟର ଧରି କୋଣାର୍କ ଦେଖିବାକୁ ବାହାରିଛନ୍ତି । ଚିକ୍-ଚିକ୍ ସୁନା ବୋତାମଦିଆ ସେମାନଙ୍କର ପଞ୍ଜାବୀ ଓ ପାଇଜାମା ପିନ୍ଧା ଦେହ, ମୁହଁରେ ଚୁରୁଟ୍, କାନ୍ଧରେ 'ରୋଲୀ' ସେମାନଙ୍କୁ ଆମୋଦ ଭ୍ରମଣର ଯୋଗ୍ୟ କରି ଗଢ଼ିତୋଳିଛି । ବୋତଲ ଭର୍ତ୍ତି ରମ୍, ଗ୍ରାମୋଫୋନ୍ ଓ ତାସ ସହିତ ସେମାନେ ସମସ୍ତେ ଭଦ୍ରଲୋକ । ତାଆରି ଭିତରେ ଜଣକର ଭାବନା ଗଢ଼ିଚାଲିଛି ବାହାରର ଦୃଶ୍ୟ ସହିତ ସମାନ୍ତରାଳ ଭାବରେ :

"ସହର ସୀମାରୁ ଦୂର ନିଛାଟିଆ ଏକୁଟିଆ ଗ୍ରାମ
ଜାଣେ ନାହିଁ କ'ଣ ତା'ର ନାମ
ସେଇଠି ରହିଲୁ ଆମେ
ପଇଡ଼ର ତୃଷ୍ଣା ଲାଗେ ଭାରି
କିଏ ଏ କିଶୋରୀ ?
ଶାନ୍ତ ତା'ର ଦୁଇ ଆଖି
ଗାଈ ଆଖି ପରି ।"

ଏ କବି ସିନିକ୍ ନୁହେଁ କି ବୋହେମିଆନ୍ ନୁହେଁ; ପୁଣି ଫୁର୍ତ୍ତିମନା କେଆର-ଫ୍ରି ବି ନୁହେଁ । ସେ ମାପିଚୁପି ହିସାବ କଲାଭଳି ସହରୀ 'ରସିକ' । ସମ୍ଭବତଃ ସିଏ ବି ବିଦଗ୍ଧ । ତା' ଭିତରେ ଜଣେ କିଶୋରୀ ଆଖିର ଭସାଣିଆ ନୀଳହ୍ରଦ ଲହଡ଼ି ବଢ଼ାଏ । ସମବୟସୀ ସଙ୍ଗିନୀ ଜଣେ କବିଙ୍କୁ ବାଉଁଶ ବୁଦା ଅଗରେ କେଉଁଠି କାପ୍ତା ବସିଛି ଦେଖାଇଦିଏ । କବିଙ୍କ ଆଖି ଆଗରେ ସବୁଜ ଧାନର, ଝାଉଁ ଓ ବାଦାମ୍‌ର ବଣ, ସାବ୍‌ଜା ଲାଉ ଡଙ୍କ ମାଡ଼ିଥିବା କୃଷକ ଘରର ପିଢ଼ା ପ୍ରଭୃତି ଦିନ ଥାଉ ଥାଉ ଭଲ ଲାଗିଲାଭଳି ଢଙ୍ଗରେ ଆସି ଆଖି ସାମ୍ନାରେ ଉଭାହେଲା । ତା'ପରେ ?

"ତା'ପରେ ଆସିଲା ରାତି
ପୋଲାଙ୍ଗ ଗଛର ପତ୍ର ଚିକ୍‌ମିକ୍
ଜହ୍ନ ଆସେ ଉଇଁ
ବିସ୍ତୀର୍ଣ୍ଣ ଘାସର ଚଟେଇ
ଯାଦୁକର ମେଘ ଆଣେ
କେଡ଼େ ସାନ କେଡ଼େ ବଡ଼ ଛାଇ ।
ଏସବୁ ଦେଖିଲୁ ଆମେ
ଧୂଳି ଆଉ ଚୁରଟ୍ ଧୂଆଁରେ
ତୁମେ କେବେ କୋଣାର୍କ ଦେଖିଛ ?
ନାଲି ଓଠ ଝିଅଟି ପଚାରେ–
ଅଳସ କନ୍ୟାର ଛାତି ସତେ କ'ଣ
ପଥରରେ ଗଢ଼ା ?
ଦାନ୍ତ ଚିପି ହସିଲା ସେ
ତା' ହସର ଦାମ୍ ଭାରି ଚଢ଼ା ?"

କବିତାଟିରେ ପ୍ରତ୍ୟେକ ପରିସ୍ଥିତିରେ ପକ୍ଷାଘାତଗ୍ରସ୍ତ ଅଚଳାୟତନ ଅବସ୍ଥା ଅପରିବର୍ତ୍ତନୀୟ ନିୟମରେ ଯେମିତି ଆପେ ଗଡ଼ି ଚାଲିଚି । ଫଳରେ ସଂପ୍ରତି ମଣିଷର ଆହାର, ଭୋଜନ, ପ୍ରେମ, ପୋଷାକ, ପରିଧାନ ଓ ସୌନ୍ଦର୍ଯ୍ୟ ଉପଭୋଗ ତଥା ଆମୋଦ ଭ୍ରମଣ ଗୋଟେ ପୁରୁଣା ଫର୍ମୁଲାର ସୂତ୍ର ଧରି ଯେମିତି ଗଡ୍ଡାଳିକା ପ୍ରବାହରେ ଗଡ଼ି ଚାଲିଛି । ଏହି ଫର୍ମୁଲାଗତ ଜୀବନ ପ୍ରତ୍ୟେକ ଦିନ ଅନ୍ୟାନ୍ୟ ଦିନଗୁଡ଼ିକ ଭଳି ବାହାରର ଦୃଶ୍ୟାବଳୀ ଓ ସୌନ୍ଦର୍ଯ୍ୟ ଉପଭୋଗର ଅନ୍ତରାୟ ହେଉଛି ।

ଭାନୁଜୀ ରାଓଙ୍କର କବିତାରେ ଗୋଟେ ଉତ୍ସବ– ଆମୋଦୀ- ଚାରଣ ମନର ମୁହୂର୍ତ୍ତବାଦୀ ରୂପ, ରଙ୍ଗ, ଭାବ ଓ ଦୃଶ୍ୟାବଳୀ କିଭଳି ଗ୍ରଥିତ କରାଯାଇଛି, ତାହାହିଁ ଦେଖିବାକୁ ମିଳେ । କବି ଅନ୍ତରର ସକଳ ହାଲୁକା ଫୁର୍ତ୍ତି, କିଛି ବିଶ୍ରାମଲୋଭୀ ସନ୍ତୋଷ, ପୁଣି ସାମାନ୍ୟ ଆରାମ ପାଇବାର ସଉକି ଭିତରେ ଗୋଟେ ଇରୋଟିକ୍ ବା ଇଚ୍ଛା ରହି ରହି ମିଳନପ୍ରବଣ ଉଙ୍କି ମାରୁଛି । ବାହାରର ଲ୍ୟାଣ୍ଡସ୍କେପ୍ ଭିତରେ ଜ୍ୟୋସ୍ନାଧୂଆ ରାତି, ଯାଦୁକରୀ ମେଘର ମ୍ୟାଜିକ୍, ଧାନକ୍ଷେତ, ବାଉଁଶବୁଦା ଅଗରେ କାସ୍ତା ପ୍ରଭୃତି ରୋମାଣ୍ଟିସିଜମ୍ ସତ୍ତ୍ୱେ କବିତାଟିରେ ଥିବା ତୀକ୍ଷ୍ଣ ବକ୍ରୋକ୍ତି, ବିଦୃପ ଓ ଶ୍ଳେଷ ଏହାକୁ ଆଧୁନିକ ଭାବଧାରାର ପ୍ରାଣଧର୍ମରେ ନିର୍ମିତ ଏକ କବିତା ବୋଲି ପ୍ରକୃତରେ ଓ ଶ୍ଳେଷ ଚିହ୍ନାଇ ଯାଏ । ବିଷ୍ଣୁ ଦେ' ଓ ବିନୋଦବାବୁଙ୍କ ଶ୍ଳେଷ, ସଚ୍ଚିବାବୁଙ୍କର ସିଧାସଳଖ ପ୍ରତିକ୍ରିୟାଠାରୁ ସେଇଥିପାଇଁ ପୃଥକ୍ କରି ସୂଚାଏ ।

ପ୍ରୋକ୍ତ ସୁରୀମାନଙ୍କ ତୁଳନାରେ କନିୟାନ୍ କବି ରବୀନ୍ଦ୍ର ନାଥ ସିଂହଙ୍କୁ ଓଡ଼ିଶାର ମାୟାକୋଭସ୍କି କିମ୍ବା ଖଲିଲ୍ ଜୀବ୍ରାଁ (ସିରିୟାର ବିପ୍ଳବୀ ଗଣକବି) ଅଥବା କାଜି ନଜରୁଲ୍ ଇସ୍‌ଲାମ କହିବାରେ କୌଣସି ଦ୍ୱିଧା କରିବାର ନାହିଁ । ନିଜର ଇସ୍ପାତ୍ ଦୃଷ୍ଟିରେ ସିଏ କୋଣାର୍କକୁ ଦେଖିଛନ୍ତି । 'ଧର୍ମପଦ'ର କିମ୍ବଦନ୍ତୀକୁ ଆତ୍ମସାତ୍ କରି ଧର୍ମପଦର ଶିଳ୍ପୀ ଚରିତ୍ରକୁ ସିଏ କେବଳ ଭଲପାଇ ନାହାନ୍ତି, ନିଜର ଅଭିମାନୀ, ତାହାର ଏକନିଷ୍ଠ ଓ ଆଗ୍ନେୟ ଶିଳ୍ପୀ-ଆତ୍ମାକୁ ପ୍ରୋକ୍ତ ଶିଶୁ ସ୍ରଷ୍ଟାର ବିପ୍ଳବୀ ଉଷ୍ଣତାରେ ଅନୁଭବ କରିଛନ୍ତି । ନିଜ କାବ୍ୟର ଉପସଂହାରରେ ସେ ଲେଖିଛନ୍ତି–

"ପୂର୍ବାଶାକୂଳେ ମୁଁ ଆଜି କରୁଚି
ରକ୍ତର ପ୍ରଣିପାତ
ମୋର ଚିନ୍ତାର ପୃଷ୍ଠ ଭୂମିରେ
ବୁଲୁଚି ଭ୍ରମରେ
ଚିତ୍ରେ ସବାର୍ ଲାଲ୍ ପାଗୋଡ଼ାର ପ୍ରେତ ।"

ସେ କହିବାକୁ ଚାହାନ୍ତି– ବାରଶ ବଢ଼େଇଙ୍କ ପୂର୍ବଜ ଅପରାଧ, ଅମାନବିକତା ଓ ସର୍ବୋପରି ଈର୍ଷୁକ ଅପରିପକ୍ୱ ଶିଳ୍-ଶିକ୍ଷାର କ୍ଷତି ପୂରଣ କରିବାକୁ– ସେମାନଙ୍କ ସଂଗଠିତ ଚାପରେ ସୂର୍ଯ୍ୟପୂଜାର ବେଦୀ ଉପରେ ଧର୍ମପଦକୁ ନିଜର ଜୀବନ ପାଣି ଛଡ଼େଇବାକୁ ହେଲା । ଏହି କିମ୍ବଦନ୍ତୀ ଓଡ଼ିଶାର ମାଟି ପାଣିରେ ମିଶିଯାଇ କୋଣାର୍କକୁ

ଆମର ଅଧିକ ନିକଟତର କରିଛି । ଏହି କରୁଣ ଭୂମିକାର ନେପଥ୍ୟରୁ ମନ୍ଦିରକୁ ଚାହିଁଲେ, ଏହା ଆମର ଅଧିକ ମନୋଯୋଗ ଓ ଆଗ୍ରହ ପାଇପାରେ । ତେଣୁ କିମ୍ବଦନ୍ତୀ ଦିଗରୁ ଏହା ଚିଲିକାର 'କାଳିଜାଈ', ସତ୍ୟବାଦୀର 'ସାକ୍ଷୀଗୋପାଳ', ପୁରୀର 'ଗାଲମାଧବ' ପରି ଭାରି ସାର୍ଥକ । କବି ରବି ସିଂହ ଏହାର ବହୁ ଗଭୀରକୁ- ହଁ ତାହାର ଭୟାନକ ଅତଳତାକୁ ଲମ୍ଫ ମାରିଛନ୍ତି ।

"ସେ ଦିନ ଦିଶିଲା
ନୀଳ ନଭ ତଳେ
ଏକ କୋଣାରକ ନେତ
ବାରଶ ବିଧିର
ହୃଦୟେ ଜଳିଲା
କ୍ରୋଧର ଅନଳ
ଆଖିରେ ମାଡ଼ିଲା
ଈର୍ଷା ପରଳ
ମାନବତା ସେବେ
ହୋଇଲା କକ୍ଷଚ୍ୟୁତ ।
ଶିଶୁ ଧରମାର
ଉର୍ଦ୍ଧ୍ୱେ ଉଠିଲା
ବାରଶ' ଯମର
ଉଦ୍ଧତ କରବାଳ
ଅନ୍ତିମ ହାହାକାରେ
ସୂର୍ଯ୍ୟଟେ ଖସି
ବିଲୀନ ହୋଇଲା
ମରଣ ଅନ୍ଧକାରେ ।

ଏବଂ ଆଜି ବସି ଘୋଷେ
ସେହି ସୂର୍ଯ୍ୟର
ଆଲୋକର ଗାଥା
ଘାତକ ଜାତିର
ନିର୍ଲ୍ଲଜ କରତାଳ ।"

କବିଙ୍କ ମତରେ ଯେଉଁମାନେ 'ଶିଶୁବିଧାତାର ପ୍ରତିଭାଦୀପ୍ତ ବୁକୁ' ନ ଦେଖି ତା'ର ଜୀବଦ୍ଦଶାରେ ମରଣର କାରଣ ହେଉଛନ୍ତି, ସେମାନେ 'ଜୀବନ ଫୁଲର ଡାକୁ' ବ୍ୟତୀତ ଆଉ କ'ଣ ବା ହୋଇପାରନ୍ତି ? କୋଣାର୍କର ଗର୍ଭ ଭିତରେ ସେମାନଙ୍କ ଆତତାୟୀ କର୍ମର କ୍ରୋଡ଼ଦୃଶ୍ୟ କବିଚକ୍ଷୁର ଅଗ୍ନିବାହୀ କନୀନିକାରେ ଉତ୍ତାପମୟ ଲୋତକ ଲାଭାର ସାମୁଦ୍ରିକ ଉଚ୍ଛ୍ୱାସ ଆଣିଛି । ମହାଭାରତର ସପ୍ତରଥୀ କର୍ତ୍ତୃକ ଅଭିମନ୍ୟୁର ଶହୀଦତ୍ୱ ପରେ ବାରବର୍ଷର ଏଇ ଯୀଶୁକୁ ବାରଶହ ପାପୀ ଯେଉଁ ପରି ହତ୍ୟା କଲେ ତାହା ଏ ମାଟିକୁ କଳଙ୍କିତ କରି ମହାଶୂନ୍ୟର ଘାଟିରେ ହିଁ ପରିଣତ କରିଛି । ଫଳରେ ଏ ପର୍ଯ୍ୟନ୍ତ ତାଙ୍କ କାବ୍ୟ ନାୟକ—

"ବେଦନାବିଦ୍ଧ ଅନ୍ତରେ ଥରି
ପ୍ରତିହିଂସାର ଜ୍ୱାଳା
ଘୂରେ ସିଏ ଘୂରେ
ସକରୁଣ ସ୍ୱରେ
ଆହତ କାବ୍ୟ ତାରା ।"

କିନ୍ତୁ କବି ଖଲିଲ ଜୀବ୍ରାଁ (୧୮୮୩-୧୯୩୧) ହୁଏତ ଆପଣାର ଶବ୍ଦ-ବନ୍ଧରେ ପ୍ରୋକ୍ତ ଭାବକୁ ଏହିଭଳି ଲେଖିଥାଆନ୍ତେ (ଯାହା ସିଏ ଲେଖିଛନ୍ତି ମଧ୍ୟ) ଧର୍ମପଦକୁ ଦ୍ୱିତୀୟ ପୁରୁଷରେ ସମ୍ବୋଧନ କରି—

"They have builded temples to house your name.
And upon every height
They have raised your cross,
A sign and symbol to guide
Their wayward feet.
But not unto your joy.
Your joy is a hill beyond
their vision-
and it does not comfort them,
They would honour the man
unknown to them,

They honour not the man-
the living man;
The first man who opened
His eyes and gazed at the
Sun with eye lids unquivering.
You laughed for the marrow
of their bones that was not yet
ready for laughter,
And you wept for their eyes that
yet were dry;
your voice fathered their thoughts
and their understanding;
your voice mothered their words
and their breath;
your friends are yet with us
for comfort and support;
And your enemies also for strength
and assurance.
Your mother is with us;
I have beheld the sheen of her face
In the countenance of all mothers."

(- Jesus, The son of the Man)

ଯାହାର ଅର୍ଥ ହେଲା– "ତୁମର ନାଆଁକୁ ସ୍ଥାନ ଦେବାପାଇଁ ସେମାନେ ମନ୍ଦିର ଗଢ଼ିଛନ୍ତି ଓ ଆପଣାର ବାଟହୁଡ଼ା ଅବାଧ୍ୟ ପାଦକୁ ପଥ ନିର୍ଦ୍ଦେଶ ଦେବାପାଇଁ ସେଇ ମନ୍ଦିରର ପ୍ରତିଟି ଚୂଡ଼ାରେ ଏକ ଏକ ପ୍ରତୀକ ଓ ସଙ୍କେତ ଆକାରରେ ସେମାନେ ତୁମରି କ୍ରୁଶଫଳକ ତୋଳିଛନ୍ତି । କିନ୍ତୁ ତାହା ତୁମର ଆନନ୍ଦୋଲ୍ଲାସର ନିଦର୍ଶନ

ନୁହେଁ । ତୁମର ହର୍ଷୋତ୍‌ଫୁଲ୍ଲତା ଏକ ପାହାଡ଼ ଭଳି ଯାହା ସେମାନଙ୍କର ଦୃଷ୍ଟିସୀମାର ଉର୍ଦ୍ଧ୍ୱରେ ଓ ଯାହା ସେମାନଙ୍କୁ ଆଶ୍ୱସ୍ତ ଓ ଆନନ୍ଦିତ କରିପାରେନା । ସେମାନଙ୍କୁ ଯିଏ ଅଜ୍ଞାତ ଓ ଅବିଦିତ ତାକୁ ହିଁ ସେମାନେ ସମ୍ମାନ ଓ ସମାଦର କରନ୍ତି; କିନ୍ତୁ ସ୍ୱୟଂ ଜୀବନ୍ତ ମଣିଷ ଯିଏ ଅଭ୍ୟୁଦୟର ପ୍ରଥମ ପ୍ରଭାତରେ ଆକାଶର ସୂର୍ଯ୍ୟକୁ ଅବିଚଳିତ - ଅପଲକ ଆଖିରେ ଚାହିଁ ପାରିଥିଲା, ସେମାନଙ୍କର ଅବଜ୍ଞାର ପାତ୍ର ।

ତୁମେ ଦିନେ ସେମାନଙ୍କର ସକଳ ଅସ୍ମିମଜ୍ଜାକୁ ଆନନ୍ଦଅଧୀର କରାଇବା ପାଇଁ ହସିଥିଲ; ମାତ୍ର ସେମାନଙ୍କର କୌଣସି ସତ୍ତା ମଧ୍ୟ ତଥାପି ମନଖୋଲି ହସିବା ପାଇଁ ପ୍ରସ୍ତୁତ ହୋଇ ନାହିଁ । ଆଉ ସେମାନଙ୍କ ଆଖି ଅଶ୍ରୁସିକ୍ତ ନ ହେଉ ବୋଲି ତୁମେ ଦିନେ ଲୋତକ ଢାଳିଥିଲ; ଅଥଚ ସେମାନଙ୍କ ଆଖି ଏଯାଏ ବି ନିଷ୍କରୁଣ ନିର୍ଜଳ ଅଛି । ତୁମ ସ୍ୱରର ପିତୃତ୍ୱ ସେମାନଙ୍କ ଚିନ୍ତା ଓ ଚେତନାକୁ ଭୂମିଷ୍ଠ କରିଥିଲା । ତୁମର ଅଭିବ୍ୟକ୍ତି ସେମାନଙ୍କର ଶବ୍ଦ ସ୍ୱପ୍ନ ଓ ଜୀବନୀ ଶକ୍ତିକୁ ଜନନୀ ପରି-ଗର୍ଭିତ କରିଥିଲା । ତୁମର ବାନ୍ଧବମାନେ ଏଯାଏ ବି ଆମ ସହିତ ସହାୟତା ଓ ସନ୍ତୋଷ ପାଇବା ପାଇଁ ଅଛନ୍ତି । ଆଉ ତୁମର ଶତ୍ରୁମାନେ ମାନସିକ ଶକ୍ତି ଓ ଭରସା ପାଇଁ ରହିଛନ୍ତି ।

ତୁମର ମାଆ ମଧ୍ୟ ଆମରି ମେଳରେ । ସବୁ ମାଆଙ୍କ ମୁହଁର ଆକୃତି ମଧ୍ୟରେ ମୁଁ ତୁମ ମାଆଙ୍କର ଉଜ୍ଜ୍ୱଳ ମୁହଁର ଆଭା ଦେଖିପାରିଛି ।”

କବି ରବି ସିଂହଙ୍କର ଧର୍ମପଦର ସ୍ତୁତିଚାରଣ କଲାବେଳେ ତାହାକୁ ‘ବାରବର୍ଷର ଯୀଶୁ’ ବୋଲି ବର୍ଣ୍ଣନା ପଢ଼ିଲା ବେଳେ ପାଠକର ଖଲିଲ ଜୀବ୍ରାଁ ମନେପଡ଼ିବା ସ୍ୱାଭାବିକ୍ । ଦେଶ କାଳର କେତେ ପରିଧି ଟପି, କେତେ ଦିଗରୁ ଦିଗନ୍ତ ସାଗର ଉପସାଗରକୁ ପଛରେ ପକାଇ ଲେବାନନର କବି ଜିବ୍ରାଁଙ୍କର ସ୍ୱର ଆମଆଡ଼େ ପ୍ରସରି ଆସେ ।

କବି ରବି ସିଂହ ଓ ଜୀବ୍ରାଁଙ୍କର ଭାଷା ଓ ସ୍ୱର ସମଗୋତ୍ରୀୟ । ସେ ଲେଖିଛନ୍ତି, ଚନ୍ଦ୍ରଭାଗାର ଅଥର୍ବ ତଟରେ ପ୍ରତିବର୍ଷ ମାଘ ସପ୍ତମୀ ପ୍ରତ୍ୟୁଷରେ ସହଜଲଭ୍ୟ ସୂର୍ଯ୍ୟୋଦୟର ପୁଣ୍ୟାଶିଷ ପାଇବାକୁ ମଣିଷ ନୁହନ୍ତି– ଅଗଣିତ ଛଳନାର ମେଣ୍ଢାପଲ ହିଁ ଜମାହୁଅନ୍ତି । ସେମାନଙ୍କର ଧରମା ଭଳି ଶିଶୁ ହତ୍ୟାର ମହାପାପ ନିଜ କାୟାରୁ ଛଡ଼ାଇବା ପାଇଁ ଚନ୍ଦ୍ରଭାଗାରେ କ୍ରମାଗତ ବୁଡ଼୍ ପଡ଼େ । ପାପର ପୁରୁଣା ପେଟୀ ଓ

ବୁଢ଼ୁଲାଗୁଡ଼ିକୁ ମଣିଷ ବୁଡ଼ ପକେଇ ଉଡେଇଁ ଦେଇ ଆସିବାକୁ ଧାଏଁ । କବିଙ୍କ ମତରେ 'ଜାଗ୍ରତ ମୃତ୍ୟୁର ଦର୍ଶକଗଣ' ତଥା ଦର୍ଶକଗଣ ଜାଣନ୍ତି ନାହିଁ ସେ ସକାଳର ସୂର୍ଯ୍ୟ ରକ୍ତ ପରି କାହିଁକି ନାଲି ? କାରଣ ସ୍ୱରୂପ କବି କହନ୍ତି, ଧର୍ମପଦର ଜୀବନାବସାନବେଳେ ତା'ର ନାଲି ରକ୍ତର ଛିଟା ସୂର୍ଯ୍ୟର ଶୋଣିତରେ ମିଶି ତାହାର ସମସ୍ତ ଅବୟବକୁ ଲାଲେଲାଲ୍ କରିଛି । ତେଣୁ ସେହି ମର୍ମନ୍ତୁଦ ଦିନଠାରୁ ଆଜିଯାଏ ପ୍ରତିଟି ସକାଳ ଫର୍ଚ୍ଚା ହେଲେ ଧର୍ମପଦର ରକ୍ତରେ ମାତାଲ ସୂର୍ଯ୍ୟ ଦୁର୍ବାସା ଚକ୍ଷୁର ରୋଷକଷାୟିତ ବହ୍ନି ଦେଇ ଉତ୍‌ଥିତ ହୁଏ । ଆହା ! ନୂତନ ସୂର୍ଯ୍ୟର ବିଶ୍ୱକର୍ମା ଧର୍ମପଦର ସତ୍ତା ସୁଦ୍ଧା ଏବେ ବିଲୁପ୍ତ ! ସୁତରାଂ 'ଅପମୃତ୍ୟୁର ବନ୍ଧୁ ଓ ପ୍ରେମିକମାନଙ୍କୁ ଏବଂ 'ସୁବିଧାବାଦର ସଜାଗ ପ୍ରହରୀ ଦଳ'ଙ୍କୁ କବିଙ୍କର ରୋଷକଷାୟିତ କଲମ ନିର୍ଦ୍ଦେଶ କରେ:

"ଦେଖ ଦଣ୍ଡାୟମାନ କୋଣାରକ
କ୍ଷୟମୁଖୀ ମୁଖଶାଳା
ଏଇ ତା'ର ଯେତେ
ଭୂ-ପତିତ ସବୁ ଶିଳା
ଯଦିଓ ଏମାନେ
ମୂକ ଓ ମୌନ
ନାହିଁ ମୁଖେ କିଛି କଥା
କିନ୍ତୁ ଏମାନେ
ମୃତ ଧରମାର
ସ୍ତବ୍ଧ ଲୋହିତ ଚିତା ।
ଏ ଶିଳାଖଣ୍ଡ
ମୃତ ସକାଳର ଲିପି
ଜାତି ଭାଲପଟେ
ଘନ କଳଙ୍କ
ଅନିଭା ପାଣ୍ଡୁଲିପି ।"

ସଚ୍ଚିଦାନନ୍ଦଙ୍କ କବିତା ଓ ରବି ସିଂହଙ୍କର କବିତାର ଶ୍ରେଷ୍ଠ ଉତ୍କର୍ଷ ହେଲା– ଏହା ବିରାଚରିତ ଓ ଗତାନୁଗତିକ ଚିନ୍ତାଧାରାରୁ ତଥା କାବ୍ୟଦର୍ଶନରୁ ମୁକ୍ତ । ମାତ୍ର

ଏହି କବିତାଦ୍ୱୟକୁ ଯେତେ ମନୋବାକ୍ୟରେ ଉପଭୋଗ କଲେ ମଧ୍ୟ ମନେହୁଏ ସେମାନେ ଆପଣା ଆପଣାର କାବ୍ୟଭାବ ଚିନ୍ତା କଲାବେଳେ ସମ୍ପୂର୍ଣ୍ଣ ସ୍ୱାଧୀନ, ମୁକ୍ତ ଓ ସ୍ୱଚ୍ଛନ୍ଦ ନୁହନ୍ତି । ଏକ ପ୍ରକାର ସାମାଜିକ ତଥା ରାଜନୀତିକ ଶୃଙ୍ଖଳାର ଚାପ ଭିତରୁ ଏ ସ୍ୱର ପ୍ରସାରିତ ହେଉଛି । କୋଣାର୍କର ସୌନ୍ଦର୍ଯ୍ୟରେ ସେମାନଙ୍କର ନିର୍ଦ୍ଦିଷ୍ଟ ଅନ୍ତରାତ୍ମା ଆଦୌ ଅଭିଭୂତ ନୁହେଁ ବରଂ ନାନା ଉଗ୍ର ଅଥବା ଆଚ୍ଛନ୍ନ ଦୃଷ୍ଟିକୋଣ ଭିତର ଦେଇ ଏହା ପ୍ରକାଶିତ । ଯେକୌଣସି କବି ଯଦି, "ମୁଁ ମୁକ୍ତ । ସ୍ୱାଧୀନ । ତେଣୁ ମୁଁ ସବୁବେଳେ ଅନ୍ୟକୁ ଭଲ ଲାଗିବି । ମୋ ଭିତରେ ଅସତ୍ୟ, ପ୍ରବଞ୍ଚନା ବା ଆତ୍ମବିରୋଧ ନାହିଁ । ମୁଁ ସ୍ୱାଧୀନ ହୋଇଥିବାରୁ କାୟମନୋବାକ୍ୟରେ ମୁଁ ଯାହା ଅନୁଭବ କରିବି, ତାହାକୁ ମୋର ପ୍ରାଣମୟ ସତ୍ତାର ଐଶ୍ୱର୍ଯ୍ୟମୟ ନିର୍ଯ୍ୟାସରେ ଅଭିଷିକ୍ତ କରିବି"– ଏହି ଭାବନାରେ ଅଗ୍ରସର ନ ହୁଏ, ତେବେ ସିଏ ଶିଳ୍ପୀ ହୋଇପାରେ; ମାତ୍ର ତା' ପାଇଁ ସଫଳତାର ତାରତମ୍ୟ ଅପେକ୍ଷା କରିବ । ଅପର ପକ୍ଷରେ ମାନସିଂହ ଆମର ହୃଦ୍‌ବୋଧ କରାନ୍ତି ଯେ ସେ ପ୍ରେମିକର ଦୃଷ୍ଟି ନେଇ କେଉଁଠାରେ ହେଲେ ସତ୍ୟର ଅତିରଞ୍ଜନ ବା ଅବମାନନା କରି ନାହାନ୍ତି । ଯେତେବେଳେ ଭାବ ପରିଣତିର ସାନ୍ଦ୍ରତା ଆଡ଼କୁ ଗତିକରିଛି– ସେତେବେଳେ ଶୁଦ୍ଧ ସତ୍ୟ ଓ ଶୁଦ୍ଧ ସୌନ୍ଦର୍ଯ୍ୟର ଉପାସକଭାବେ କବି ମାନସିଂହ କୋଣାର୍କର ବିପର୍ଯ୍ୟୟ ମଧ୍ୟ ପାସୋରି ଦେଇଛନ୍ତି । ନିଜର ଶିଳ୍ପକଳାର ନିୟମ ଭିତରକୁ ଶ୍ରଦ୍ଧାର ସହିତ ଯେତେବେଳେ କେହି ନିଜକୁ ନିବେଦନ କରେ, ସେତେବେଳେ ସେ ଯାଇଁ ସାର୍ଥକ- ନିବେଦିତ- ପ୍ରାଣ-ଶିଳ୍ପୀ ହୁଏ । କୋଣାର୍କକୁ ବିଭିନ୍ନ ଦୃଷ୍ଟିକୋଣରେ ବିଭିନ୍ନ କବି ଦେଖିଛନ୍ତି; କିନ୍ତୁ ତାହାକୁ ମାନବାନୁଭୂତିର ସୌନ୍ଦର୍ଯ୍ୟ ଓ ସପ୍ରଶଂସ ସାନ୍ନିଧ୍ୟ ମାଧ୍ୟମରେ ଯିଏ ଚେତନାର ରମଣୀୟ ସିଂହାସନ ମଣ୍ଡନ କରାଇଛି, ସେ ଯେକୌଣସି ତେଜିୟାନ୍ ଅଗ୍ନିମୟ କବିତା ଅପେକ୍ଷା ଅଧିକତର ପରିପୂର୍ଣ୍ଣ ଓ ପ୍ରଜ୍ଞାମୟ କଳାକୋଟୀରେ ଭାସ୍ୱର । ପୁନଶ୍ଚ, ସୃଷ୍ଟିକୁ ରମ୍ୟବୋଧର ନିଜ ସ୍ୱରରେ ନ ଚିହ୍ନିପାରି–ସୁସ୍ଥ ଓ ସୁଖୀ ନାଗରିକ ଆଖିରେ ତାହାକୁ ନ ଦେଖି ଲେଖକ ଯଦି ତା'ର, ଅହଂକୁଣ୍ଠଳିତ ନିପୀଡ଼ିତ ଅନ୍ତର୍ଦାହ, ରାଜନୀତିକ ଦୃଷ୍ଟିଭଙ୍ଗୀ, ସମାଜର ଉପେକ୍ଷାଜନିତ ପ୍ରତିକ୍ରିୟା ଇତ୍ୟାଦିର ସ୍ୱରରେ ମୂର୍ଚ୍ଛନ କରେ, ତେବେ ନିରପେକ୍ଷତାର ତୁଲ୍ୟ- ମୂଲ୍ୟରେ ଭାରସାମ୍ୟ ରକ୍ଷା କରିବା ସମ୍ଭବ ହେବନାହିଁ । ମନେ ହେଉଛି ସେମାନଙ୍କୁ ଆଳକରି ସମଗ୍ର କବି ଜାତିକୁ ଗାଳି ଦେଇଛି ।

କବି ଜୟନ୍ତ ମହାପାତ୍ରଙ୍କର "କୋଣାର୍କ: କିଛି ଭୟ, କିଛି ଅଭିମାନ" କବିତାଟିରେ ଭଗ୍ନ କୋଣାର୍କକୁ ଦେଖି ସେ କିପରି ବ୍ୟଥିତ, ବିଚଳିତ ଓ ଉଦ୍‌ବେଳିତ ସେସବୁର ଚିତ୍ର ରହିଚି । ତାଙ୍କ ଦୃଷ୍ଟିରେ କ୍ଷୟିଷ୍ଣୁ ମୁଖଶାଳାର ପଞ୍ଜରା ଦେଖି ଦୟାରେ ଆଜି ମାଡ଼ି ଯାଇଥିବା ଶିଉଳି ସବୁ କୋଣାର୍କର ଅବୟବର ବିଭିନ୍ନ ଅଂଶକୁ ସବୁଜ ଆବରଣରେ ଢାଙ୍କି ଦିଅନ୍ତି । ଏଥିରେ ଯେ ମୁଖଶାଳା ଅବହେଳିତ ତାହାର ଇଙ୍ଗିତ ରହିଚି । ସେ ତୀର୍ଯ୍ୟକ ଦୃଷ୍ଟିରେ ସହରୀ ଭୋଗାସକ୍ତ ଦର୍ଶକମାନଙ୍କୁ ଲକ୍ଷ୍ୟ କରିଛନ୍ତି– ସେମାନେ ମୁଖ୍ୟତଃ ପିକ୍‌ନିକ୍ କରିବାକୁ କୋଣାର୍କ ଯାଆନ୍ତି; ନତୁବା ଖଣ୍ଡିଏ ରଙ୍ଗିନ୍ ଫଟୋରେ ସ୍ୱପ୍ନାକାଙ୍‌କ୍ଷିତ ମନ ଆରପାରରେ ସୁଦୂରର ଦୂରତାକୁ ଅନାଇଥାଆନ୍ତି । ମୂର୍ତ୍ତିଗୁଡ଼ିକୁ ଦେଖିଲେ କବିଙ୍କର ଭୟଜାତ ହୁଏ । ଯବତୀର ପ୍ରସ୍ତରହାତ ଯାହା ଯୁଗ ଯୁଗ ଧରି କେବଳ ନିଜର ନିରାଭରଣ ସ୍ତନର ସ୍ପର୍ଶ ଅନୁଭବ କରିଚାଲିଛି ତାକୁ ଦେଖି ଶଙ୍କିତ ହୁଅନ୍ତି । କବି କୋଣାର୍କରେ ପୂରାପୂରି ଏକାକୀ: ନିଃସଙ୍ଗ । ଏଠି କେବଳ ଆପଣାର ଦୁଇ ହାତ ନିଜ ପଛପଟେ ଜାବୁଡ଼ି ଧରିବା ଅବସ୍ଥାରେ ସେ ବାଟ ଚାଲୁଥାଆନ୍ତି । ସାମସମୟିକ ମଣିଷମାନଙ୍କର ମାନସିକତା ତଥା ମନ୍ଦିରର ପୁନରୁଦ୍ଧାର କରିବାରେ କାରିଗରମାନଙ୍କର ଅକ୍ଷମତା ତାଙ୍କୁ ଅବଶ କରିଛି । ନିଜର କବିତାରେ କୀର୍ତ୍ତିପ୍ରେମୀ କବିଙ୍କର ବେଦନାବୋଧ ପ୍ରଚ୍ଛନ୍ନ ଓ ଅନ୍ତରୀଣ ।

କବି ରମାକାନ୍ତ ରଥଙ୍କର "ଧର୍ମପଦର ଆତ୍ମହତ୍ୟା" କବିତା ଜଣେ ବିଦଗ୍ଧ ପ୍ରଖର ବୁଦ୍ଧି ସଂପନ୍ନ କିଶୋରର ଆତ୍ମାହୁତି ଦେବାର ଅବ୍ୟବହିତ ପୂର୍ବରୁ ଏକ ଆତ୍ମନେପଦୀ । ଧର୍ମପଦ ମୁଖ୍ୟତଃ ଜଣେ ବଂଶାନୁକ୍ରମିକ ସ୍ଥାପତ୍ୟ-ଶିଳ୍ପୀ । ଏଠାରେ ସେ ଜଣେ ଆଧୁନିକ ବୁଦ୍ଧିଜୀବୀର କ୍ରୁଦ୍ଧ ଯୁକ୍ତିକୁ ପୁଞ୍ଜିକରି ସ୍ୱଗତୋକ୍ତି କରୁଛି : ତା'ର କାରୁଶିଳ୍ପ ଭଳି ଯୁକ୍ତି ମଧ ସୁନ୍ଦର ଶଢଶିଳ୍ପ ହୋଇଯାଇଛି ।

ରମାକାନ୍ତଙ୍କ କବିତାରେ ଧର୍ମପଦ ଆପଣାର ଚେତନା- ସ୍ରୋତରେ ଭାବି ଚାଲିଛି : ଏ ଚନ୍ଦ୍ରକୁ ନିମଗ୍ନକର କାଦୁଅର ପାଣିପାତ୍ରରେ, ପ୍ରତିଟି ତାରକାକୁ କକ୍ଷପଥରୁ ଛିଡ଼ାଇ ଆଣି ରଖ । ଏ ରାତ୍ରିକୁ ଅସ୍ୱୀକାର କର ଯାହା ଏବେ ଘଟୁଛି ସେସବୁ ଜଣେ କେହି ଦୁଷ୍ଟ ଭାଗ୍ୟ-ତାନ୍ତ୍ରିକର ଗୁଣିଗାରେଡ଼ିର କରାମତି । ଧର୍ମପଦ ଭାବି ଚାଲିଛି– "ମତେ ବି ବଇଁଶୀରେ ଆଶାବରୀ ରାଗ ବୋଳି ଆସନ୍ତା: ଲୋତକାର୍ଦ୍ର ପ୍ରେମର ଗଜଲ

ଗାଇ ଆସନ୍ତା ଓ ସ୍ୱପ୍ନର ଗାଲିଚା ବୁଣିଆସନ୍ତା । କିନ୍ତୁ ଉପସ୍ଥିତ ବେଳାରେ ସେସବୁ ଦିବାସ୍ୱପ୍ନ ଓ ସମ୍ଭାବନାମାନ ନିର୍ଦ୍ଦୟ ଭାବେ ଖଣ୍ଡବିଖଣ୍ଡିତ- ଟୁକୁରା ଟୁକୁରା ହେଉଛି । ତେଣୁ ଏଣିକି ଆଉ କଳ୍ପନାର ଆକାଶକୁସୁମ ତୋଳିବା ନିରର୍ଥକ । ସେଥିପାଇଁ ମା'ଠାରୁ ଦାନ ଆକାରରେ ପାଇଥିବା ନିଜର ଜନ୍ମଜାତକକୁ ପୋଡୁଛି ଓ ସେ ଦାବାନଳକୁ ଲିଭାଉଛି । ସେ ଭାବୁଛି, ଏଣିକି ନିୟୁତେ ଫୁଲ ଫୁଟୁଥିବା ନନ୍ଦନକାନନକୁ ଆଦୌ ଯିବି ନାହିଁ । ତୁମେମାନେ ଗୋଟାକେତେ ବାଉଁଶ ଆଣି ମୋର କୋଳେଇ ସଜାଡ଼ ଏବଂ ଯେତେ ମନ୍ଦ ପ୍ରାର୍ଥନା କରିବ ଯଦି କର ।"

ଧର୍ମପଦର ଆଖିରେ ପଡ଼ିଚି ଶିଳା-ନର୍ତ୍ତକୀ ଛାତିରେ ଏକ ଦୀର୍ଘ ଛାଇ । ସେ ଛାଇ କାହାର ? ସେ ତା'ର ନିଜର ଛାଇ ନା ଅଜ୍ଞାତ ପୂର୍ବଜ ଶିଳ୍ପୀମାନଙ୍କର ? ସେ ଛାଇ ଆଜିର ନା ବିଗତ ସମୟର? ସେ ଛାଇ ସର୍ଜନକାରୀର ନା ବିଲୁପ୍ତ ପ୍ରାୟ ବାଲୁକାରାଶିର ? ସେ ଏବେ ମୃତ ପ୍ରାୟ, ସୁତରାଂ ଅଶରୀରୀ ପ୍ରେତଙ୍କ ଠାରୁ ଭିନ୍ନ ନୁହେଁ ।

ଧର୍ମପଦ, ରମାକାନ୍ତଙ୍କ କବିତାରେ ନିଜେ କର୍ତ୍ତା, ନିଜେ କ୍ରିୟା, ତା'ର ସ୍ୱପ୍ନସବୁ ବିଫଳ । ସେ କେବଳ ବିଫଳକାମ– ସ୍ୱପ୍ନ ପରବର୍ତ୍ତୀ ଦୀର୍ଘଶ୍ୱାସ । କାରଣ ଉପସ୍ଥିତ ଶିଳ୍ପୀକୁଳ ଠାରୁ ସେ ଯେଉଁ ପ୍ରଶଂସା ଓ ପ୍ରୋତ୍ସାହନ ପାଇବା ପାଇଁ ଯୋଗ୍ୟ ତାହା ତାକୁ ମିଳିନାହିଁ । ଧର୍ମପଦର ସ୍ୱ-ସତ୍ତା ଏକ ଦୁର୍ଲ୍ଲଭ ଚେତନା ଯାହା କୋଣାର୍କର ସଦ୍ୟ ଚୂଳମରା ଦଧିନଉତିରେ ସଜୀବ । ସେଥିପାଇଁ ଧର୍ମପଦ ଆଉ ସ୍ୱପ୍ନଭୁକ୍ ନୁହେଁ । ଆଉ ସେ ଆଶାର ଆଶାବରୀ ଗାଇବା ପାଇଁ ଇଚ୍ଛୁକ ନୁହେଁ । କୋଣାର୍କର ସୁଉଚ୍ଚ ଚୂଡ଼ା-ଶୀର୍ଷ ବା "ଚରମ ପ୍ରସ୍ତର" ହେଉଛି ଏକ ଦୁଃଖାନ୍ତ ବିୟୋଗାନ୍ତ ନାଟକର ଦୁଇଟି ପୃଷ୍ଠା ପରେ କିନ୍ତୁ ଏହି ଦୁର୍ଲ୍ଲଭ କୃତିତ୍ୱ-କରା- ପରବର୍ତ୍ତୀ ଚେତନାର ମୃତ୍ୟୁହୀନ ଜୀବନ ଓ ଚିରସାଫଲ୍ୟର ତୃପ୍ତି କାହିଁ ? ସମୟ ତ ବେଗବାନ । ଆମର ବିଫଳ ଚେଷ୍ଟାରେ ଚେତନାର ମୃତ୍ୟୁହୀନ ପ୍ରସାରୀତ ଜୀବନ-ଚେତନାର ଅଭାବବୋଧକୁ ଅନିଭୋଗ କରିଛି ଧର୍ମପଦ । ତା'ଦ୍ୱାରା ସ୍ଥାପିତ ହୋଇଥିବା ମନ୍ଦିରର ଚରମ ସୀମା-ବିନ୍ଦୁରେ ଚୂଡ଼ାଟି ଏକ ଦୁଃଖାନ୍ତ ନାଟକର ପୃଷ୍ଠାଟିଏ । ସେହି ଦୁଃଖାନ୍ତ ନାଟକର ନାୟକ ସେ ନିଜେ । ସେଠାରେ ଜୀବନ୍ତ ପ୍ରାୟ ନର୍ତ୍ତକୀମାନଙ୍କ ଉଦ୍ଦେଶ୍ୟରେ ଧର୍ମପଦର

ଏକ ଭାବାତୀତ ପ୍ରଶ୍ନ ଅଛି: "ଜୀବିତ ନହୋଇ ସୁଦ୍ଧା କେତେ ଥର ଜୀବନର ରୂପାନ୍ତର ହେବ ?" ଏହି ପ୍ରଶ୍ନର ଉତ୍ତର ସେ ନିଜେ ବୋଲି କବି ଉଲ୍ଲେଖ କରିଛନ୍ତି । ମହାସମୁଦ୍ରରେ ସେ ଆତ୍ମାହୁତି ଦେଲା ପରେ ମଧ ସେ ହୋଇଯାଇଛି ଅଜରତ୍ୱର ଓ ଅମରତ୍ୱର ନାମାନ୍ତରିତ କାଳଜୟୀ କିମ୍ବଦନ୍ତୀ । ନିଜର ଚରମ ଉତ୍କର୍ଷ ପ୍ରଦର୍ଶନ କରିସାରିବା ପରେ ସେ ତେଣୁ ଆଉ ଆଣ୍ଟିକ୍ଲାଇମାକ୍ସ ବା କ୍ରମଅଧଃପତନ ଦେଖିବାକୁ ପ୍ରସ୍ତୁତ ନୁହେଁ । ଧର୍ମପଦର ସମ୍ମୁଖରେ ପ୍ରଲମ୍ବିତ ହୋଇଛି ଦୁଇଟି ରାସ୍ତା : ଚେତନା ଗୋଟିଏ ଏବଂ ଅନ୍ୟଟି ହେଲା ଚେତନାର ଦୁଃଖ । ଏହିଭଳି ଦୁଇଗୋଟି ଦୋଛକି ରାସ୍ତାରେ ତା'ର ନିରୂପାୟ ତୁଙ୍ଗ ଚେତନାର ଜୀବନାବସାନ ଘଟିଛି । ରମାକାନ୍ତ ରଥଙ୍କର କବିତାରେ ଧର୍ମପଦର ଏହି ସ୍ୱଗତୋକ୍ତି ଏକ ଭାବାତୀତ ଉତ୍ତରିତ ମାନସର । ଭାରତୀୟ ଦର୍ଶନରେ ଆତ୍ମହତ୍ୟାକୁ ଏକ ପାପ ବୋଲି କୁହାଯାଇଥିଲେ ହେଁ ଏହାର ସପକ୍ଷରେ ବହୁ ଯୁକ୍ତି ରହିଚି । ଏଠାରେ ଧର୍ମପଦ ବାଳୁତ ନୁହେଁ । ସ୍ୱପ୍ନ – ସୁଉଚ୍ଚ ଗଭୀର ଦର୍ଶନର ଯୁକ୍ତି ଓ ପ୍ରତିଯୁକ୍ତିରେ ତାହାର ଦେହାବସାନ ଏହି କବିତାଟିର ମନୋଜ୍ଞ ଭାବରେ ଚିତ୍ରିତ ହୋଇଛି ।

କବି ମନୋଜ ଦାସଙ୍କର "ଧର୍ମପଦର ନିର୍ଭୁଲ ଠିକଣା" କବିତା ସମେତ ବିଶୁ ମହାରଣାଙ୍କ ଉପରେ ରଚିତ କବିତା ତାଙ୍କ ରଚିତ "କବିତା ଉତ୍କଳ"ରେ ଗ୍ରଥିତ ହୋଇଛି । ଆପଣାର ଆତ୍ମ ବିସର୍ଜନ ପୂର୍ବରୁ ଏହା ଧର୍ମପଦର ଏକ ଭାବ-ଗଭୀର ଚେତନାପ୍ରବାହଧର୍ମୀ ସ୍ୱଗତୋକ୍ତି । ମନୋଜ ଦାସଙ୍କର ଭାଷାରେ ବିଶୁ ମହାରଣାଙ୍କର ପୁତ୍ର ଭାବରେ ଧର୍ମପଦର ଅନନ୍ୟ ସତ୍ତାର ଉଦୟ ଓ ବିଲୁପ୍ତି ହେଉଛି ଏକ ସୁଉଚ୍ଚ ସ୍ତରରୁ ଅବତରଣ କରିଥିବା ଐଶ୍ୱରୀକ ପ୍ରେରଣା । ଏହି ବାଳକ ଶିଳ୍ପୀ ହେଉଛି ଏକ କାଳୋତ୍ତୀର୍ଣ୍ଣ "କ୍ଷଣଜନ୍ମା ବିଭୂତି" । ସେ ଏକ ଓଁ କାର ଧ୍ୱନି– ଗୁଂଜରିତ ପ୍ରଣବ ସ୍ପନ୍ଦନ- ଅଜ୍ଞାତ ଓ ଅଶ୍ରୁତ ।

କୋଣାର୍କ ମନ୍ଦିରର କେବଳ ଚୂଳଖଂଜା ଜଟିଳ ଶିଳ୍ପକର୍ମ ବାକିଥିଲା ବେଳେ ରାତ୍ରି ନିର୍ଜନ ମନ୍ଦିର ପ୍ରାଙ୍ଗଣକୁ କି ଏକ ଦୁର୍ବାର ଆକର୍ଷଣରେ ଧର୍ମପଦ ଆସିଚି । ସେତେବେଳେ ଆକାଶରେ ସ୍ଥିର ନକ୍ଷତ୍ର ରାଜି– ଆଦିଗନ୍ତ ସମୁଦ୍ରରେ ତରଙ୍ଗାୟିତ ଉଚ୍ଛ୍ୱାସ । ତା'ର ସ୍ୱଗତୋକ୍ତିରେ ରହିଛି ନିଜର ପିତାଙ୍କୁ ସେ ଚିହ୍ନି ନ ଥିଲା, ଜାଣି ନ

ଥିଲା ମଧ୍ୟ ଆପଣାର ଲକ୍ଷ୍ୟ ଏଠାରେ ଅଧିକ କ'ଣ ହେବ । କେବଳ ଆପଣାର ଜନ୍ମ ହେବା ବେଳରୁ ଅଚିହ୍ନା ପିତାଙ୍କୁ ଭେଟିବାର ଓ ଚିହ୍ନିବାର ଆକର୍ଷଣରେ ସେ ଧାଇଁ ଆସିଥିଲା । ଗାଆଁରେ ଘରେ ନଥିବା ପିତାଙ୍କର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ- ବିଦ୍ୟାର ଅସଂଖ୍ୟପୋଥିରୁ ଗୂଢ଼ ତତ୍ତ୍ୱସବୁ ପଢ଼ି ସେସବୁ କୌଶଳକୁ ମନେରଖି କୋଣାର୍କରେ ପହଁଞ୍ଚି ଧର୍ମପଦ ଜଣକ ପରେ ଜଣେ କର୍ମରତ ଶିଳ୍ପୀଙ୍କୁ ଭେଟିଛି "ଅପୂର୍ବ ଉତ୍‌ଥାନ ମୁଖୀ ସପ୍ତାଶ୍ୱ ସଂଯୋଜିତ ଅପୂର୍ବ ମନ୍ଦିର ବେଢ଼ାରେ ।" ସେ ସେଇ ବେଢ଼ା ଯେଉଁଠି ଯୁଗପତ୍ ଅତୀତ, ବର୍ତ୍ତମାନ ଓ ଭବିଷ୍ୟର ନିରବଚ୍ଛିନ୍ନ ଜୀବନ-ଶିଳ୍ପୀ ଏକଚକ୍ର- ସୂର୍ଯ୍ୟଦେବଙ୍କର ଉଦୟାସ୍ତ ଘଟୁଥାଏ ଏବଂ ପୂର୍ବାଶାର ଦ୍ୟୁତି ପ୍ରତ୍ୟହ ପ୍ରତିଟି ପାଷାଣ- ଶିଳ୍ପକୁ ଅପୂର୍ବ ସ୍ପନ୍ଦନ-ଦ୍ୟୁତିରେ ପୁଲକିତ କରୁଥାଏ । ସେହି ଶିଳ୍ପ- ସର୍ଜନା- ତପସ୍ୟାର ପୁରୋଧା ଥିଲେ ଧର୍ମପଦର ପିତା ବିଶୁ ମହାରଣା । ତାଙ୍କର ଉଦ୍ୟମ ଅଭିପ୍ରେତ ଥିଲା ଅସୀମକୁ ଏହି ଅଭିନବ କୀର୍ତ୍ତି ମାଧ୍ୟରେ ଶିଳ୍ପ-ସୁନ୍ଦର ବିନମ୍ର ଆବାହନ କରି ସ୍ୱର୍ଗ-ସହ ବସୁନ୍ଧରାର ପ୍ରାଣମୟ ବନ୍ଧନକୁ ଦୃଢ଼ତର କରିବା । ଜନ୍ମ ବେଳାରୁ ଆଦୌ କେବେ ଦେଖିନଥିବା– ଜାଣିନଥିବା ନିଜର ଏହି ଯଶସ୍ୱୀ ପିତାଙ୍କୁ ଗାଆଁରେ ନିଦ୍ରିତ ଥିଲାବେଳେ ଦିନେ ସ୍ୱପ୍ନରେ ଦେଖି ଧର୍ମପଦ ଚମକି ପଡ଼ିଥିଲା । ତା'ର ପିତା ସମୁଦ୍ର ତଟରେ କିପରି ଚିନ୍ତିତ ଓ ମ୍ରିୟମାଣ ସେ ଦୃଶ୍ୟ ଦେଖିଲା । ସେ ଜାଣିଥିଲା ସୁଦୂର ଗାଆଁରେ ନିଜର ଜନ୍ମବେଳାରେ ବିଶୁ ମହାରଣାଙ୍କୁ ବାରଶହ ଭାସ୍କରଙ୍କର ମୁଖ୍ୟ ଭାବେ ଏକକ ସମ୍ମାନ ମିଳିଥିଲା । ଏହା ଏକ ଐଶ୍ୱରୀକ ଯୋଗାଯୋଗ, ଧର୍ମପଦ ତାଙ୍କର ପୁତ୍ରଭାବରେ କ'ଣ ପିତାଙ୍କଠାରୁ କୌଣସି ଶିକ୍ଷାଲାଭ ନ କରି ସୁଯୋଗ୍ୟ ଦାୟାଦ ହୋଇପାରିବ ? ସେ କେତେକେତେ ବାଲୁକାଶିଳ୍ପମାନ ଗଢ଼ିଛି । ଏହି ସ୍ୱପ୍ନଦେଖିବା ପରେ ଧର୍ମପଦ ଅସ୍ଥିର ଅଥୟମନା ହେବା ସ୍ୱାଭାବିକ୍ । ତେଣୁ ଦିନେ ମାଆଠାରୁ ମେଲାଣି ନେଇ ଦିନେ ଏକାକୀ ଚାଲିଚାଲି କୋଣାର୍କ-ନିର୍ମାଣ ସ୍ଥଳୀରେ ଉପନୀତ ହୋଇଛି । ମନୋଜ ଦାସ ଲେଖିଛନ୍ତି, ତା'ର ସ୍ନେହୀ ଅଥଚ ଏକନିଷ୍ଠ ଶିଳ୍ପୀ ପିତା ବର୍ଷ ପରେ ବର୍ଷ ଧରି ବିଶାଳ ମନ୍ଦିରର ପ୍ରସ୍ତ ପରେ ପ୍ରସ୍ତ କଳେବର ନିର୍ମାଣ-କ୍ରିୟାରେ ଅହରହ ବ୍ୟସ୍ତ, ତେଣୁ ଦୂର-ସୁଦୂର ନିଜ ଗାଆଁରେ ନିଜ ଜନ୍ମିତ ସନ୍ତାନକୁ ବିସ୍ମୃତ ହେବା କିଛି ଆଶ୍ଚର୍ଯ୍ୟଜନକ ନୁହେଁ ।

ଧର୍ମପଦର ମନେହେଲା ସେ ଏଠିକି ସତେ ଅବା ଦୈବ ପ୍ରେରିତ ହୋଇ ଆସିଛି । ସେ ଉପସ୍ଥିତ ଶିଳ୍ପୀ-ସଭାରେ ସମସ୍ତଙ୍କ ସମ୍ମୁଖରେ ମନ୍ଦିର ଚୂଳ- ନିର୍ମାଣର ଯେଉଁ ଗୂଢ଼ତତ୍ତ୍ୱ ସବୁ ପ୍ରଦାନ କଲା ତାହା ସମସ୍ତଙ୍କର ମନଃପୂତ ହେଲା ଓ ସମସ୍ତେ ଏଥିପାଇଁ ଆନନ୍ଦ-ମୁଖର ହେଲେ । ଏହାପରେ ରାତ୍ରୀ ହେଲା । ସବୁ କ୍ଲାନ୍ତ ଶିଳ୍ପୀଗଣ ଗଭୀର ନିଦ୍ରାରେ ସୁଶୁପ୍ତ ଥିଲାବେଳେ ନିର୍ମାଣଧୀନ କୋଣାର୍କର ସେହି ଜ୍ୟୋତ୍ସ୍ନାପ୍ଳୁତ ଶିଖର ଦେଶକୁ ଚଢ଼ି ନିଜକୁ ଦକ୍ଷ ସମର୍ପିତ ସେବାକାରୀ ଶିଳ୍ପୀ ଭାବରେ ମନ୍ଦିର ଚୂଳରେ ଚୁମ୍ବକୀୟ ଭାରସାମ୍ୟ ରକ୍ଷାକରିବା ପୂର୍ବକ ଚୂଡ଼ାନ୍ତ ସ୍ପର୍ଶ ଦେବାରେ ଲାଗିଗଲା । କର୍ମରତ ଏକାଗ୍ର ଧର୍ମପଦର ଦେହ ଓ ମନରେ ସମୁଦ୍ରର ବିପୁଳ ଓ ବିଶାଳ ପ୍ରଶାନ୍ତି ସ୍ନିଗ୍ଧ କୋମଳ ମାନସିକତା ଆଣିଦେଇଛି– ଦେଇଛି ମଧ୍ୟ ଅଜସ୍ର ପୁଲକ ସ୍ପନ୍ଦନ । ତା'ର ବିସ୍ତାରିତ ମହାଚେତନା ପରି ଚାରିଆଡ଼େ ବିସ୍ତୀର୍ଣ୍ଣ ମହାକାଶ, ଚୂଳ ଗଢ଼ାକାମ ପୂର୍ଣ୍ଣାଙ୍ଗ ହେଲାପରେ ଧର୍ମପଦର ନିରୀହ କୋମଳ ସମର୍ପିତ ଶିଳ୍ପୀ ଆତ୍ମା ସମ୍ମୁଖର ସୂର୍ଯ୍ୟୋଦୟକୁ ପ୍ରତ୍ୟକ୍ଷ କରିଛି । ସେଇ ଚୂଡ଼ାନ୍ତ ସାଫଲ୍ୟ ବେଳାରେ ଧର୍ମପଦର ଉତ୍ତରିତ ଚେତନା ସ୍ଥିର କରିନେଇଛି ଯେ ସମୁଦ୍ରରେ ନିଜକୁ ବିସର୍ଜନ କରି ମନ୍ଦିରର ଗର୍ଭଗୃହର ଅନ୍ୟ ଏକ ଅଶରୀରୀ ସତ୍ତାରେ ଚିରକାଳ ଧରି ଆବିର୍ଭୁତ ହେବ । କାରଣ ଧର୍ମପଦ ଭାବିଲା ଯେ ତା'ର ପରିଚୟ କେବଳ ବିଶୁ ମହାରଣାଙ୍କର ଏକୋଇର ବଳା ବିଶିକେଶନ ନୁହେଁ! ସେ ଏକ ଚିରଂଜୀବୀ ଓଁକାର- ଧ୍ୱନି- ଅନିର୍ଦ୍ଦେଶ୍ୟ ।

କବି ଜଗନ୍ନାଥ ପ୍ରସାଦ ଦାସଙ୍କର କୋଣାର୍କ କବିତାରେ ଉଭୟ ଶ୍ଳେଷ ଓ ଗଭୀର କାରୁଣ୍ୟର ଚିତ୍ର ରହିଚି । କୋଣାର୍କର ପରିବେଶ ତାଙ୍କୁ ବ୍ୟଥିତ କରିଛି । କାରଣ ଅର୍କକ୍ଷେତ୍ର କୋଣାର୍କରେ ପର୍ଯ୍ୟଟକମାନେ ସମ୍ରାଟ ଭଳି ଆଚରଣ ଦେଖାଇଥା'ନ୍ତି । କେତେକ ତଥାକଥିତ ସ୍ୱଳ୍ପଶିକ୍ଷିତ ଗାଇଡ୍ (=ପର୍ଯ୍ୟଟକମାନଙ୍କୁ ସ୍ଥାପତ୍ୟ-ଚିହ୍ନାଇବା ବ୍ୟକ୍ତି) ଏଠାରେ ଯେପରି ଜଣେ ଜଣେ ଐତିହାସିକ । ପ୍ରତ୍ନତାତ୍ତ୍ୱିକ ବ୍ୟକ୍ତିଗଣ ଏଠାରେ ଶିଳ୍ପୀ-ସ୍ଥପତିଙ୍କ ଭଳି କଥାବାର୍ତ୍ତା କରନ୍ତି । ସେମାନଙ୍କ ଭିତରେ ନା ଆଲୋଚନା ନା ପର୍ଯ୍ୟାଲୋଚନା, କଛି ନ ଥାଏ । ତଥ୍ୟାନୁସନ୍ଧାନ ମଧ୍ୟ ନ ଥାଏ । ସବୁ ସୂକ୍ଷ୍ମକାରିଗରୀ ପଥରର ଶିଳ୍ପକଳା ପର୍ଯ୍ୟଟକମାନଙ୍କର କ୍ୟାମେରାଗୁଡ଼ିକରେ ବନ୍ଦୀ । ରାସ୍ତାକଡ଼ରେ ଦୋକାନଗୁଡ଼ିକରେ ଐତିହ୍ୟର କ୍ୟାଲେଣ୍ଡରଗୁଡ଼ାକ ଝୁଲାହୋଇଥାଆନ୍ତି ।

କୋଣାର୍କର ପୋଷ୍ଟକାର୍ଡ଼ଗୁଡ଼ାକରେ ମୁଦ୍ରିତ ଚିତ୍ର ଖାଲି ବିକ୍ରିବଟା ହେଉଥାଏ ଏବଂ ପିକ୍‌ନିକ୍ କରୁଥିବା ଦର୍ଶକମାନଙ୍କ ଦ୍ୱାରା ସୃଷ୍ଟ ବାଲିମିଶା ଆବର୍ଜନାରେ ଆମ ପରମ୍ପରା ପୋତି ହୋଇପଡ଼େ । କବି ଜଗନ୍ନାଥ ପ୍ରସାଦ ଦାସଙ୍କ ମତରେ କୋଣାର୍କର କ୍ଷୟ ମୂଳରେ ସମୁଦ୍ରରୁ ପ୍ରବାହିତ ଲୁଣାପବନ ହିଁ ଦାୟୀ । ଏ ଲୁଣାପବନର ପ୍ରଭାବରେ ଏ ବିରାଟ ସ୍ଥାପତ୍ୟ ଭଗ୍ନ, ଖଣ୍ଡିତ ଓ ଭୂମିଶାୟୀ । ସତେ ଅବା କିମ୍ବଦନ୍ତୀର ଶାମ୍ବ (ଜାମ୍ବବତୀଙ୍କର ଗର୍ଭଜାତ ଶ୍ରୀକୃଷ୍ଣଙ୍କର ପୁତ୍ର) ଯିଏ ଅପମାନଗ୍ରସ୍ତ ଗୁରୁଜନମାନଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇ କୁଷ୍ଠ ରୋଗାକ୍ରାନ୍ତ ହୋଇଥିଲେ ଏହି କୋଣାର୍କ ତୀର୍ଥରେ ସୂର୍ଯ୍ୟପୂଜା କରି ଆରୋଗ୍ୟ ମଧ୍ୟ ଲାଭ କରିଥିଲେ ବୋଲି ମହାଭାରତରେ ବର୍ଣ୍ଣନା କରାଯାଇଛି । କୋଣାର୍କ ମନ୍ଦିର ଗାତ୍ରରେ ଥିବା ଭଗ୍ନ ମୂର୍ତ୍ତିସବୁ କବି ଦୃଷ୍ଟିରେ ଯେପରିକି ଶାମ୍ବଙ୍କର ରୋଗାକ୍ରାନ୍ତ ଶରୀରର ବିଭିନ୍ନ ଅବୟବ ରୁଗ୍‌ଣ ଅବସ୍ଥାରେ ଲାଖିରହିଛି ଓ କେତେକ ଅବୟବ ଖସିପଡ଼ିଛି । ତାଙ୍କ କବିତାରେ ଅଛି କେଉଁଠାରେ ବାରଶହ ଶିଳ୍ପୀଙ୍କର ଅସହିଷ୍ଣୁ ଈର୍ଷ୍ଣୁକ ଦାବି ଓ ଅଧିକାରକୁ ସାବ୍ୟସ୍ତ କରୁଥିବା ନିଜ ଅଧିକାର ଦାୟରେ ପଡ଼ି ଅଗତ୍ୟା ନିରୁପାୟ ବିବେକୀ ଧର୍ମପଦ କୋଣାର୍କର ଶିଖର ଉପରୁ ସମୁଦ୍ର ଗର୍ଭକୁ ଲମ୍ଫ ପ୍ରଦାନ କରି ଆତ୍ମାହୂତି ଦେଇଛି । କବିଙ୍କ ଦୃଷ୍ଟି ପଡ଼ିଚି ପାନ୍ଥଶାଳାରେ ଅସହିଷ୍ଣୁ ଦର୍ଶକମାନଙ୍କର କଳାପାହାଡ଼ ସୁଲଭ ଭଙ୍ଗପ୍ରବଣ ଆଚରଣ । କିମ୍ବଦନ୍ତୀର ଅନନ୍ତ ମହାସାଗରରେ ଅତୀତରୁ ଆଜିଯାଏ ଯାତ୍ରା କରୁଥିବା ଜାହାଜଗୁଡ଼ିକୁ ସତେ ଅବା କୋଣାର୍କର ବିଲୟ ପାଇଁ କିଏ ଦାୟୀ ଉତ୍ତର ଦେବାକୁ ଡକରାପଡ଼େ । କିନ୍ତୁ ଧୂ ଧୂ ବାଲିରେ ଏହାର ଜବାବ ନ ଥାଏ । ସମସ୍ତେ ନିରୁତ୍ତର । ଝାଉଁଗଛରୁ ନିରବଧି ବିଦ୍ରୂପର ହାସ୍ୟରୋଳ ଶୁଭୁଥାଏ । କବିଙ୍କର କୋଣାର୍କ ପ୍ରତି ଦୃଷ୍ଟିକୋଣ ବେଶ୍ ଗଭୀର ଓ ସଂବେଦନଶୀଳ । କବିଙ୍କ ଆଖିରେ ଧରାପଡ଼ିଛି କିପରି କୋଣାର୍କରେ ଗହଳିଚହଳି ଶେଷ ହେଲାପରେ ସେଠାକୁ ଦୂରଦୂରାନ୍ତରୁ ଯାଇଥିବା ପରିବ୍ରାଜକମାନଙ୍କର ବସ୍ ସବୁ ମୂଳ ଗନ୍ତବ୍ୟସ୍ଥଳକୁ ଫେରି ଆସିଲା ପରେ କେବଳ ନିର୍ଜନ ରାତିରେ କୋଣାର୍କର ଉତ୍ତୁଙ୍ଗ କଳାର କୃଷ୍ଣକାୟ ଭବ୍ୟତା, ଆକାଶକୁ ସ୍ପର୍ଦ୍ଧିତ ଉଚ୍ଚତାରେ ପୁଣି ଉତ୍ତୋଳିତ ହେଉଥାଏ– ପରବର୍ତ୍ତୀ ତୁଚ୍ଛ ସକାଳ ହେଲାଯାଏ । ନିର୍ଜନ କବି ଜଗନ୍ନାଥ ଦାସଙ୍କର କଳ୍ପନାରେ ରହସ୍ୟମୟ ଅଧିଭୌତିକତାପୂର୍ଣ୍ଣ ବ୍ୟଞ୍ଜନାସବୁ ରହିଛି । ତାଙ୍କର କବିତା ଦିଗନ୍ତର ଭୂମି ଉପରୁ ଦୈବୀଶକ୍ତିର ମହା ଆଶୀର୍ବାଦ ଯାଏ ପରିବ୍ୟାପ୍ତ ।

କୋଣାର୍କର ନାମ ଶାସ୍ତ୍ରରେ "ପଦ୍ମକେଶରୀ । ଏହାକୁ ପଣ୍ଡିତଗଣ "ସୂର୍ଯ୍ୟକେଶର" ବୋଲି ମଧ୍ୟ କହିଥାଆନ୍ତି ।

କୋଣାର୍କ– ଓଡ଼ିଶାର କାବ୍ୟ-କବିତାରେ ଏକ ଆପେକ୍ଷିକ ଅଘଟନ- ଘଟନାର କାରୁଣ୍ୟମୟ ଆକୃତି: ସଜୀବ କୀର୍ତ୍ତିସ୍ତମ୍ଭ । ସେଇ କୀର୍ତ୍ତିସମ୍ଭର ଅନନ୍ୟ ଚୂଡ଼ା ନିର୍ମାଣ ହେଉଛି ମାତ୍ର ବାରବର୍ଷ ବୟସର କିଶୋର ଧର୍ମପଦ: ସର୍ଜନ-ପ୍ରତିଭାର ଏକ ସୃଷ୍ଟି ନରତନୁ ଦୀଧିତି । ସେ ତା'ର ବଂଶାନୁକ୍ରମିକ ଶିଳ୍ପୀ-ପରମ୍ପରାରେ ଏକ ଆତ୍ମ-ସମର୍ପିତ ବିଦ୍ୟା-ବିନ୍ଦୁ । ଯାହାର ବିଦ୍ୟାଥାଏ ସେ କ'ଣ ଅକାଳରେ ସ୍ୱେଚ୍ଛାକୃତ ଭାବରେ ନିଜକୁ ବିସର୍ଜନ କରିପାରେ ? ସମ୍ଭବତଃ କୋଣାର୍କର ଚୂଳ-ନିର୍ମାଣ ଶେଷରେ ସ୍ୱଜୀବନଧାରଣ ନିମିତ୍ତ ସଂଚିଥିବା ଯୁକ୍ତିଠାରୁ ତା'ର ସ୍ୱ-ନିଧନ ନିମିତ୍ତ ଯୁକ୍ତିଗୁଡ଼ିକ ଅଧିକ ବଳିଷ୍ଠ ଥିଲା । ବୟସ ତା'ର ଏତେ ବେଶି ହୋଇନଥିଲା ଯାହାର ଫଳସ୍ୱରୂପ ସେ ଅର୍ନ୍ତଭେଦୀ ଜୀବନଧାରଣ ନିମିତ୍ତ ଯୁକ୍ତିସବୁ ଆୟତ୍ତ କରିବ ! କବି ଡକ୍ଟର ପ୍ରସନ୍ନ କୁମାର ମିଶ୍ରଙ୍କର ରଚିତ "ଧର୍ମପଦର ଶେଷ ସଙ୍ଗୀତ"– କ୍ଷୁଦ୍ର କାବ୍ୟରେ ଧର୍ମପଦ ନିଜ ମାଆଙ୍କ ନିକଟରେ ଯେଉଁ ବିବେକୀ-ଯୁକ୍ତିସବୁ ଶୁଣେଇଛି ସେସବୁ ଅତ୍ୟନ୍ତ ହୃଦ୍ୟ:

"ହେ ଧ୍ରୁବର ମାଆ ମୋର !
ଶିଖାଇଲୁ ନୀତି ଆଉ ଅନୀତିର ଭେଦ ।
ଜୀବନରୁ ଧର୍ମ ବଡ଼, ପଣ ପାଇଁ ଜଣର ଉତ୍ସର୍ଗ,
ଶିଳ୍ପ ଆଉ ଶିଳ୍ପୀଠାରୁ ବଡ଼ ଅଟେ ତ୍ୟାଗ...
ତୋର ପୁଅ ଧରମାଠୁ ବଡ଼ ଅଟେ ଏଇ ଧର୍ମପଦ,
ସେଇ ଜୀବନର ବାଣୀ, ଧରମାର ହେ ପରମ ମାତା !
ଜୀବନର ଶିକ୍ଷୟିତ୍ରୀ ତୁହି, ଆଜି ମୁଁ ପରୀକ୍ଷା ଦିଏ
ଏ ଶିଳ୍ପର ଅଗ୍ରଭାଗେ ଠିଆ ହୋଇ ଏକା,
ମୋ ନିହାଣ ମୋ ମୁଗୁର, ମୋର ଏଇ ଉନ୍ମାଦ ବଟାଳି
ମୋର ଶିଳ୍ପ, ମୋ ଚେତନା, ମତେ ଆଜି ନ ପାରନ୍ତି ଟାଳି ।"

କବି ଲର୍ଡ଼ ବାଇରନ୍‌ଙ୍କର ଏକ ପ୍ରସିଦ୍ଧ ଉକ୍ତି ହେଲା, "Whom the god, love die young" । ଅର୍ଥାତ୍‌, "ଈଶ୍ୱର ଯାହାକୁ ଭଲପାଆନ୍ତି ତା'ର ବାଲ୍ୟତ୍ ଅବସ୍ଥାରେ

ପରଲୋକ ହୁଏ ।" କିନ୍ତୁ କବି ବାଇରନ୍ କେବେ ଲେଖିନାହାନ୍ତି ଈଶ୍ୱର ଯାହାକୁ-ଭଲ ପାଆନ୍ତି ସେ ବାଲୁତ କାଳରେ ଆତ୍ମ-ବିସର୍ଜନ କରିବ ବୋଲି ! ଧର୍ମପଦ କୋଣାର୍କରେ ନିଦ୍ରାଗତ ବାରଶହ ଶିଳ୍ପୀମାନଙ୍କ ପାଇଁ ନିଜକୁ ଏକ ଗୁରୁତର ପ୍ରାଣ ଘାତକ-ବୋଝ ବା କଠିନ ଭାର ବୋଲି ମନେକଲା । ନିଜର କୃତିତ୍ୱ ପାଇଁ ଆତ୍ମୀୟ ଓ ସମଜାତୀୟ ବୟସ୍କ ଗୁରୁଜନମାନଙ୍କର ସମ୍ରାଟଙ୍କ କ୍ରୋଧ ଯୋଗୁ ଜୀବନ- ବିପନ୍ନ କରିବା ଆଶଙ୍କାରେ ସେ ସ୍ୱଃ-ନିଃଶେଷକାରୀ ଦୁଃସାହସ କଲା । କୁହାଯାଏ, ଯେଉଁମାନେ ଆତ୍ମହତ୍ୟା କରନ୍ତି ସେମାନେ ସବୁଠାରୁ ଦୁଃସାହସୀ । ଚରମ ସାଫଲ୍ୟ ପରେ ଏ ପ୍ରକାର ଜୀବନ-ବୀତସ୍ପୃହତାର କାରଣ କ'ଣ ? କେବଳ ବୟୋଜ୍ୟେଷ୍ଠ ଅଭିଜ୍ଞ ଶିଳ୍ପୀମାନଙ୍କ ଜୀବନ ପ୍ରତି ବିପଦ ନ ପଡୁ -ଏହି ସମର୍ପିତ ଇଚ୍ଛାଟିଏ ମାତ୍ର ?

ଧର୍ମପଦ କ୍ଷେତ୍ରରେ– ଏକ ଜଟିଳ ମାନସିକ ଭାରସାମ୍ୟ-ଲୁପ୍ତ ପରିସ୍ଥିତି ମଧ୍ୟରେ, ଯଥା ଚୂଳମାରିବାର କୌଶଳର ବ୍ୟାଖ୍ୟା ପରେ ଶିଳ୍ପୀ କୁଳଙ୍କର ପ୍ରଚ୍ଛନ୍ନ ଈର୍ଷା, କଟାକ୍ଷ ତାକୁ ମିଳିଛି ।

ଅବେଳାରେ ଧର୍ମପଦର ସ୍ୱେଚ୍ଛାକୃତ ସଲିଳ ସମାଧି ସତ୍ତ୍ୱେ ସିଏ ଶୋଭା-ସ୍ୱର୍ଗ ଅର୍କକ୍ଷେତ୍ରର କାରୁଶିଳ୍ପକୁ ଅମରତ୍ୱ ପ୍ରଦାନ କରିଯାଇଛି । ଯେଉଁ ଅଭୂତପୂର୍ବ ମାନବୀୟ ବେଦନାବୋଧକୁ ଅନିଭୋଗ କରିବା ଥିଲା ସେସବୁକୁ ସିଏ ଅନିଭୋଗ କରିଛି– ଏପରିକି ସାନ ପିଲାଟିଏ ହୋଇ ଦୁଃସହ ମନୋବେଦନାରେ ଅଣନିଃଶ୍ୱାସୀ ହେଇ ଜଳସାମାଧିକୁ ଆପଣେଇ ନେଇଛି । ସେଇ ନିପୁଣ ସର୍ବୋତ୍ତମ ଶିଳ୍ପୀ ସତ୍ତାର ସ୍ୱ-ଇଚ୍ଛିତ ଦିବଂଗତି ପୂର୍ବରୁ ସେ ମାଆକୁ କହିଥିବା ନିମ୍ନୋକ୍ତ କଥା କେଇପଦ ଯୋଗୁ ହୃଦୟ ହାହାକାର କରି ଉଠେ:

"ଚୂଲୀ ମୁଣ୍ଡେ ବସି ସଞ୍ଜବେଳେ
ଆଉ କି କରିବୁ ପିଠା ନଡ଼ିଆ ଓ ଗୁଡ଼ ପୂର ଦେଇ ?
ମୁଁ ଯେ ପୂର ତୋ' ମଣ୍ଡାପିଠାର,
ମୋର ବିନେ ଶୂନ୍ୟ ତୋ' ଭଣ୍ଡାର ।

X X X X X

ବରକୋଳି ଗଛ ଥିବ । ବରକୋଳିମାନେ ସବୁ
ପାଚିଥିବେ । ଗ୍ରାମ ସାଥିମାନେ ମୋର
ତୋ' ନିକଟେ ଅଳି କରୁଥିବେ ।

ଧର୍ମପଦର ବ୍ୟକ୍ତିତ୍ୱର ବଡ଼ ବିଭାବ ହେଉଛି ତା'ର ବିନୟତା, କୋମଳପ୍ରାଣତା । ପୁଣି ତା'ର ମାତୃପ୍ରାଣତା ମହାକାଶ ବ୍ୟାପୀ । କବି ପ୍ରସନ୍ନଙ୍କ କବିତାରେ ତାହା ହିଁ ଅଛି । ନିଜ ମାଆଙ୍କ ପ୍ରତି ଅତି ହୃଦୟଗ୍ରାହୀ ଅଭିମାନ, ଅଭିଯୋଗ, ବିନତି, କ୍ଷମାଶୀଳତା ଓ ପ୍ରାର୍ଥନାର ସାମଗ୍ରିକ କାବ୍ୟ ରୂପ ହେଉଛି "ଧର୍ମପଦର ଶେଷ ସଂଗୀତ" । ସଙ୍ଗୀତ ? ଏହା ତ କାରୁଣ୍ୟ କଥନ । ମାଆ ପ୍ରତି କରିଥିବାର ତାହାର ସଂବୋଧନ ଓ ଉଚ୍ଚାରଣଯାକ ଚନ୍ଦ୍ରଭାଗା ମୁହାଣରେ ଥିବା କୋର୍ଣାକରେ ସେ ଦୁର୍ଲ୍ଲଭ ପ୍ରସ୍ତର ଶିଳ୍ପରେ ଘନୀଭୂତ । ସେଇ କାରୁଣ୍ୟ– ଉଚ୍ଚାରଣ- ଜୁଆରରେ ଧର୍ମପଦକୁ ଭାବି ବସିଲେ କି ରାଜା, କି ବାରଶହ ଶିଳ୍ପୀକୁଳ, ମନ୍ଦିରର କାଳାନୁକ୍ରମିକ ସମସ୍ତ ପୂଜକ, ପୁରୋହିତ, ମାଳୀ, ଠାକୁର ସଜକାରୀ ଏବଂ ମନ୍ଦିର ନିର୍ମାଣ-ପରିଚାଳକ, ପାତ୍ର, ମନ୍ତ୍ରୀ ବଡ଼-ସାନ ସମସ୍ତେ କେଉଁକାଳୁ ତିରୋହିତ ହେଲେଣି । ଏହା-ସତ୍ତ୍ୱେ ମନଶ୍ଚକ୍ଷୁରେ ଏବେ ବି ସମସ୍ତେ ଦିଶିଯାଆନ୍ତି । ଆଲେକ୍‌ଜାଣ୍ଡର ପୋପ୍‌ଙ୍କ ଭାଷାରେ :

"One thought of thee put all the pump to flight.
Priests, tapers, temples swim before my sight."

ସେ ନିଜର ସ୍ୱତଃ ପୋଥି - ଅର୍ଥ : "କେବଳ ଥରଟିଏ ମାତ୍ର ତୁମରି ଭାବନା ଯୋଗୁଁ ସବୁ ଆଡ଼ମ୍ବର ଲୁଚିଛପି ପଳାୟନ କରନ୍ତି । ସବୁ ପୁରୋହିତ, ବତୀ, ବନ୍ଦିତା ଓ ସବୁ ମନ୍ଦିର ମୋ ଆଖି ସାମ୍ନାରେ ପହଁରୁ ଥାଆନ୍ତି ।" ଶିକ୍ଷାପ୍ରାପ୍ତ ସର୍ଜନାକାରୀ ପ୍ରବୃତ୍ତିର ସାର୍ଥକ ବିନିଯୋଗ କରିବା ସତ୍ତ୍ୱେ– ଅର୍ଥାତ୍ କୋଣାର୍କ ଶୀର୍ଷରେ ଚୁମ୍ବକ ପ୍ରସ୍ତରର ଭାରସାମ୍ୟ ପୂର୍ଣ୍ଣ ସ୍ଥାପନା ସହିତ ମୁଦଶିଳାକୁ ସଂଯୋଗ କରିବାର ବାସ୍ତବ ସମୀକରଣ କାର୍ଯ୍ୟ ସମାପ୍ତି କରିବା ପରେ କାହାଠାରୁ ସକାରାତ୍ମକ ଦମ୍ଭ ନ ପାଇ ନିଜ ଅବଚେତନ ମନର ଶକ୍ତିଶାଳୀ ମୃତ୍ୟୁପ୍ରବୃତ୍ତି ଦ୍ୱାରା ପୀଡ଼ିତ ହୋଇ ସମୁଦ୍ରକୁ ଲମ୍ଫ ପ୍ରଦାନ କରିଛି । ସେହି ଏକାପ୍ରକାର ଅବେଚତନ ମନର ପ୍ରତିଭା-ଧ୍ୱଂସକାମୀ ମାନସିକତାରେ ଅନୁଦାର ବାରଶହ ଶିଳ୍ପୀ ସେଠାରେ କାର୍ଯ୍ୟରତ ଥିଲେ । "ଧର୍ମପଦର

ସତ୍ତା ଲୁପ୍ତ ହେଉ- ନ ହେଲେ ଆମ ଜୀବନ ବିପନ୍ନ ହେବ ।" ଏହି ସଂକୀର୍ଣ୍ଣ ଅନୁଦାର ଭାବନା ପରିବର୍ତ୍ତେ କିପରି ରାଜାଙ୍କ ସମ୍ମୁଖରେ ଦରକାର ପଡ଼ିଲେ ସତକଥା କହି ସମୂହ ବିନତି ଏପରିକି ସମୂହଦଣ୍ଡପ୍ରାପ୍ତି ପାଇଁ ପ୍ରସ୍ତୁତ ହେବାକୁ ପଛଘୁଞ୍ଚା ଦେଲେ ?

ଧର୍ମପଦ କଥା ଏକ କିମ୍ବଦନ୍ତୀ । କିମ୍ବଦନ୍ତୀ ହେଉଛି ସଂସ୍କୃତିର ଏକ ବିଶେଷ ବିଭାବ । ଗୋଟିଏ ସମାଜ, ଅଂଚଳ, ପ୍ରଦେଶ ବା ଦେଶରେ ସ୍ତର ସ୍ତର ହୋଇ ଜମିଯାଇଥିବା କିମ୍ବଦନ୍ତୀ, ଲୋକକଥା, ମିଥ୍ ବା ପୁରାଣକଥା ଓ ଆଖ୍ୟାୟିକା ପ୍ରଭୃତିର ସମାହାର ହେଉଛି ସଂସ୍କୃତି । କିମ୍ବଦନ୍ତୀ ଏବଂ ଲୋକକଥା ଶୁଣିଲେ ଶିଶୁ ବା ବୟସ୍କ ନିର୍ବିଶେଷରେ ସମସ୍ତଙ୍କ କଳ୍ପନାର ବିସ୍ତାର ଘଟେ ଓ ଜୈବିକ ଚକ୍ଷୁ ଦୁଇଟି ଜ୍ଞାନ-ଚକ୍ଷୁରେ ରୂପାନ୍ତରିତ ହୁଏ । କ୍ରମେ ସାଧାରଣ ଜୀବନଯାପନ ସ୍ତର ଯାହା ଗତାନୁଗତିକ ହୋଇ ରହି ଥାଉ ନା କାହିଁକି ମାନସିକ ଜଗତ ଉତ୍ତେଜିତ ଓ ଆହୁରି ଆହୁରି ସର୍ଜନା ଆଡ଼କୁ ଉନ୍ମୁଖ ହୁଏ । ସେହି ବିଦଗ୍ଧ ପାଠକର ପ୍ରଶ୍ନାକୁଳ ଜ୍ଞାନଧୁଆ ଚକ୍ଷୁ ଆହୁରି ଖୋଜେ, ସେ ବୌଦ୍ଧିକତାର ଜଗତରେ ଘୂରି ବୁଲେ । ଆମ ଲୋକକଥାର କାହାଣୀମାଳାର ସମୁଦ୍ର, ନଦୀ, ଜାହାଜ, ଡଙ୍ଗା, ବୋଇତ, ଅଶ୍ୱାରୋହଣ, ରାଜା, ସୈନ୍ୟସାମନ୍ତ, ଅସୁର, ଅସୁରୁଣୀ, ନାବିକ, ଯୋଗୀ, ରାଜକୁମାରୀ, ପରୀ, ମହାଦ୍ୱୀପ, ସୁଡ଼ଙ୍ଗ, ପ୍ରାନ୍ତର, ଦୂରଦିଗନ୍ତ ଏପରିକି ପାତାଳ ଗ୍ରହ- ଗ୍ରହାନ୍ତର ଇତ୍ୟାଦି ଆଡ଼କୁ ପାଠକର କଳ୍ପନା ଗତିଶୀଳ ହୁଏ । " ଧର୍ମପଦର ଶେଷ ସଙ୍ଗୀତ" ଠିକ୍ ତାହା ହିଁ କରୁଛି ।

କବି ପ୍ରସନ୍ନ ମିଶ୍ରଙ୍କ ଏ ଦୀର୍ଘ କବିତାରେ କିମ୍ବଦନ୍ତୀର ଧର୍ମପଦ ନିଜର ଆତ୍ମ- ବିସର୍ଜନର ଅବ୍ୟବହିତ ପୂର୍ବରୁ ନିଜର ମାଆ ପ୍ରତି କରିଥିବା ସରଳ କରୁଣ ସ୍ୱଗତୋକ୍ତି ହିଁ ଅଛି । ଜନ୍ମ ବେଳାରୁ ଆରମ୍ଭ କରି ବାରବର୍ଷ ବୟସର ହେଲା ଯାଏ ଆଦୌ ନିଜର ବାପାଙ୍କୁ ଦେଖି ନ ଥିବା ଓ କେବଳ ମା'ଙ୍କ ମୁହଁରୁ ତାଙ୍କର ପାରଦର୍ଶିତା ଶୁଣି ଶୁଣି ତା' ଭିତରେ ଶିଳ୍ପୀ-ପିତା ବିଶୁମହାରଣାଙ୍କୁ ଦେଖିବାର ପ୍ରବଳ ଅଭିପ୍ରେରଣା ତାକୁ ଖୋଜି ଖୋଜି ବାଟଘାଟ ପଚାରି ଚାଲି ଚାଲି କୋଣାର୍କ ଉପକୂଳଯାଏ ନେଇଯାଇଛି । ବାପା ପୂର୍ବ ପରିଚିତ ସ୍ୱାଦିଷ୍ଟ ବାଡ଼ି ବରକୋଳି ଖାଇ ତାକୁ ଚିହ୍ନିପାରିବେ ବୋଲି ସେ କିଛି ସାଙ୍ଗରେ ବରକୋଳି ବି ଆଣିଛି । ତା'ର ସହଜାତ ସ୍ଥାପତ୍ୟ-

ପ୍ରତିଭା ଥିଲା । କିନ୍ତୁ ଶୈଶବ ଓ କୈଶୋର କାଳରେ ପ୍ରସ୍ତର ଶିଳ୍ପର ସୂକ୍ଷ୍ମ ଗାଣିତିକ ସମୀକରଣକୁ ନିଜର ଆଗ୍ରହ ଓ ଅଧ୍ୟବସାୟ ବଳରେ ଆୟତ୍ତ କରିଛି । ଏ ବିଦ୍ୟାରେ ବାସ୍ତବ କ୍ଷେତ୍ରରେ ପ୍ରୟୋଗ- ବିଦ୍ୟାରେ ସାଫଲ୍ୟ ଜନିତ ଅନ୍ତର୍ଦୃଷ୍ଟି ମଧ୍ୟ ଅର୍ଜନ କରିଛି । ସେ ନିର୍ଭୀକ- ଅକୁତୋଭୟ । ଶେଷ ବିଦାୟ ବେଳେ ନିଜ ମାଆକୁ କହିଥିବା କଥାଗୁଡ଼ିକରୁ ଜାଣିହୁଏ ଯେ ଧର୍ମପଦ କିପରି ସ୍ପର୍ଶକାତର ଥିଲା । ଅତି ବୁଦ୍ଧିମାନ ସମ୍ବେଦନଶୀଳ ମଣିଷମାନେ ହିଁ ସ୍ପର୍ଶକାତର ହୁଅନ୍ତି । ସ୍ପର୍ଶକାତରତା ହେଉଛି ଏକ ବ୍ୟାପକ ଆବେଗଯୁକ୍ତ, ଅଭିଜ୍ଞାନ ପ୍ରଦାନକାରୀ ଆଚରଣ- ଗୁଣବତ୍ତା । ଏହି ସ୍ପର୍ଶକାତରତା ଏକ ସମୟରେ ଯେଭଳି ସର୍ଜନାର ପ୍ରବାହ ଖୋଲି ଦେଇପାରେ, ବିପରୀତରେ ମଧ୍ୟ ଜୀବନକୁ ଘୋର ନୈରାଶ୍ୟର ମର୍ମଦାହରେ ବିମର୍ଷ ବ୍ୟଥିତ କରି ଅଭିପ୍ରେରଣା ଶୂନ୍ୟ-ନିଷ୍କ୍ରିୟ କରିଦେଇପାରେ । ଅତିରିକ୍ତ ହେଲେ ସ୍ପର୍ଶକାତର ବ୍ୟକ୍ତି ଜୀବନହାରି ଦିଏ । କବି ସେଲୀଙ୍କ ଭାଷାରେ, "He went unterrified into the gulf of death but his clear sprite yet reign over earth." (P.B. Shelly, "The third among the sons of light") ଅର୍ଥ : "ସେ ମୃତ୍ୟୁର ଗଭୀର ଗର୍ତ୍ତ ଭିତରକୁ ନିର୍ଭୟରେ ଚାଲିଗଲା, ହେଲେ ତାହାର ଆମୋଦପ୍ରିୟ ଚପଳତା ଏବେ ବି ଧରାପୃଷ୍ଠ ଛାଇଯାଇଛି ।" ଧର୍ମପଦର ଚୂଡ଼ାନ୍ତ ମେଲାଣି ବେଳେ ମାଆ ପ୍ରତି ଦୀର୍ଘ ଦୂରତାରୁ କହିଥିବା କଥାତକ ନିଖିଳର ପିତାମାତାଙ୍କୁ ଥମ୍ ଥମ୍ କରେ । କି ଏକ ଅସହାୟ ଦୀର୍ଘଶ୍ୱାସରେ ବିଷାଦିତ କରେ !

ବିଶୁ ମହାରଣାଙ୍କ ପୁତ୍ର ସେହି ଟିକି ବିଶ୍ୱକର୍ମା-ଧର୍ମପଦ ନିମିତ୍ତ କୋଣାର୍କର ଶିଖର ଥିଲା ଏକ ସାରସ୍ୱତ ସ୍ଥାପତ୍ୟ-ଆହ୍ୱାନ । ତା'ର କୃତିତ୍ୱ ଥିଲା ଶିଳ୍ପୀସତ୍ତାର ଉନ୍ମୋଚନ । ସିଏ ସେହି ଦିବ୍ୟମନା– ସମୂହର ହିତାକାଙ୍‌କ୍ଷୀ କିଶୋରଟିଏ ଯାହାର ସ୍ୱଗତୋକ୍ତିରେ କବି ପ୍ରସନ୍ନ ମିଶ୍ରଙ୍କର ଶେଷ ସଂଗୀତର ଅନ୍ତରାଳରେ ପ୍ରତିପାଠକ ତାଙ୍କୁ ପଢ଼ି ଆପଣା ଅନ୍ତରରେ ଗୁଣୁଗୁଣୁ- ଆର୍ଦ୍ର ସ୍ପନ୍ଦନରେ ଭାବିତ ହେଉଥାଏ । ଭାବି ଭାବି ଆଉ ଟିକେ ନିଭୃତରେ କାନ୍ଦକାନ୍ଦ ଓ ଧର୍ମପଦ-ମନସ୍କ ହୁଏ । ତା'ର ଶେଷ ଗୀତୋକ୍ତିର ଘୋରା ଘୋରା ମେଘରେ ସମୟକୁ ଘୋର ଅବସନ୍ନ ଆବେଶରେ ଗଭୀର କରିହୁଏ । କବି ପ୍ରସନ୍ନଙ୍କ ଲିଖିତ ଧର୍ମପଦର ଏଇ ଶେଷ ଉଚ୍ଚାରଣରେ ନବ-ନିର୍ମାଣ-ଅଭୀପ୍‌ସାର ଭବିଷ୍ୟ ନକ୍ସା ଅଛି ଯାହା ଆପଣାସେବୀ ପ୍ରବୀଣମାନଙ୍କ ଠାରେ ବି ଦୁର୍ଲଭ ।

ସେଇ କିଶୋର ଧର୍ମପଦ ବୟସ ଓ ଉଚ୍ଚତାରେ ସାନ ହେଲେ ଶିଳ୍ପାୟନ-ସ୍ଥାପତ୍ୟ ବିଦ୍ୟାରେ ଥିଲା ଦୀର୍ଘତନୁ । ସରସ୍ୱତୀଙ୍କର କୃପାଲାଭ କରିଥିବା ଧର୍ମପଦର, ଆବେଗ, ଅଭିପ୍ରେରଣା, ଶୈଳ୍ପିକ ମୂଲ୍ୟବୋଧ ଓ ଅଭିନବ ନିର୍ମାଣ- ଚେତନାରେ ଢାଇଁଥିବା ଧର୍ମପଦର ଅକୁତୋଭୟ ଯୋଦ୍ଧାତୁଲ୍ୟ ପରାକାଷ୍ଠା ତତ୍କାଳୀନ ବୟସ୍କମାନଙ୍କ ଠାରୁ ଶ୍ରେଷ୍ଠତର ଥିଲା ।

କବି ଉଇଲିୟମ୍ ଓଡ଼ସୱର୍ଥଙ୍କର ନିମ୍ନ ପଙ୍କ୍ତିଟି ସେଇ ଅନନ୍ୟ ଧର୍ମପଦ ପାଇଁ ପ୍ରଯୁଜ୍ୟ : More skillful in self Knowledge, even more pure

As temped more, more able to endure,
And more exposed to suffeing and distress".

(– "Character of a Happy warrior")

ଅର୍ଥ : "ଆତ୍ମଜ୍ଞାନରେ ଅଧିକତର ଦକ୍ଷ ହୋଇସାରି ଏପରିକି ଅଧିକତର ନିର୍ମଳମନା ହୋଇ ଆପଣା ଭାବନାରେ ବେଶୀ ପ୍ରଲୋଭିତ ହେଲାରୁ ଓ ଅଧିକ ସହନଶୀଳ ହେବାରେ ସକ୍ଷମ ହେଲାରୁ ତଥା ଯନ୍ତ୍ରଣା ଓ ଅସହାୟ ଅବସ୍ଥାର ଅଧିକରୁ ଅଧିକ ସମ୍ମୁଖୀନ ହେଲାରୁ ସେ ଜୀବନକୁ ବିଲୁପ୍ତ କଲା ।"

କବି ସୁଇନ୍‌ବର୍ଣ୍ଣଙ୍କ ଭାଷାରେ ସେ ମହୋଦଧି ହେଉଛି "mother and lover of men, the sea, I will go back to the great sweet mother."

(–The Triumph of Time.)

ଅର୍ଥ : "ମହୋଦଧି ହେଉଛି ମାଆ ଏବଂ ମନୁଷ୍ୟମାନଙ୍କର ପ୍ରେମିକ । ମୁଁ ମୋର ଅତି ପ୍ରସିଦ୍ଧ ମାଆ ପାଖକୁ ଫେରିଯିବି ।"

କବି ଶ୍ରୀ ମିଶ୍ରଙ୍କର ଏହି ଗାଥାକବିତା ମରମୀ, ସମ୍ବେଦନଶୀଳ ପାଠକବର୍ଗଙ୍କୁ ଚନ୍ଦ୍ରଭାଗା ମୁହାଣର ଲୋତକାର୍ଦ୍ର ବେଳାଭୂମିରେ ଅନ୍ୟମନସ୍କ ଓ ଉଦାସ କରି ରଖିବ ହିଁ ରଖିବ । ଧର୍ମପଦ ତା' ମାଆଙ୍କୁ କହିଥିବା କଥାଯାକ ଯେଉଁ ଭାବାବେଗ ପାଠକଟି ଭିତରେ ସୃଷ୍ଟି କରେ ସେଇ ଭାବାବେଗର ଦର୍ପଣରେ ଚାହିଁଲେ ଉପଲବ୍ଧି କରିହୁଏ ଯେ ଧର୍ମପଦ ଆମ ଭିତରେ ଏକ ସ୍ଥାୟୀ ଅଜର-ଅମର ଆଦିବିମ୍ବ (archetype) ହୋଇ ତା' କଥା ପଢ଼ିବା ମାତ୍ରେ ଆମକୁ କଷ୍ଟ ଦେଉଛି । ଅଣଲେଉଟା ଦୂର ଜନପଦରେ

ଛାଡ଼ି ଆସିଥିବା ମାଆକୁ କୋଣାର୍କ ଚୂଡ଼ାରୁ ସ୍ୱଗତୋକ୍ତି କରି- କରି ଏ ଭାବନାରୁ ଚିର ବିଦାୟ ନେବା ବେଳରୁ ଧର୍ମପଦ, ଜନ୍ମ-ଜନ୍ମାନ୍ତର ଧରି ସ୍ୱର୍ଗରେ- ସୂର୍ଯ୍ୟସାନ୍ନିଧରେ ରହିଛି ଓ ରହିଥିବ ମଧ- କୋଣାର୍କ ଭାସ୍କର୍ଯ୍ୟର ସତ୍ତା ଥିଲା ଯାଏଁ । ତା'ର ଶେଷକଥା ଆଦିଗନ୍ତ ଶୋକାର୍ତ୍ତ କରୁଥିବ । କେତେଗୁଡ଼ିଏ ମରମୀ ଶବ୍ଦର ମହାଜନ ହୋଇ ମାନସିଂହ ତାହା ଅକୃପଣ ହାତରେ କାବ୍ୟରସିକ ଓ ବିଦଗ୍ଧ ଚାରଣ ଦର୍ଶକମାନଙ୍କୁ ବିତରଣ କରିଯାଇଛନ୍ତି । ମୁମୂର୍ଷୁ କୋଣାର୍କର ଜଟିଳ ଓ ନରମନଧର କ୍ଷତ ଉପରେ ଅସ୍ତ୍ରୋପଚାର କଲାବେଳେ ନୀଳକଣ୍ଠୀୟ ସଂଯମ, ମାନସିଂହୀୟ ଦୟିତ-କୋମଳତା ଓ ଗୋପବନ୍ଧୁଙ୍କର ସମବେଦନା, ବିଷ୍ଣୁ ଦେ' ଓ ବିନୋଦ ନାୟକଙ୍କର ରମ୍ୟବାଦୀ ସ୍ୱଚ୍ଛନ୍ଦ ରସିକତା ଏବଂ ଭାନୁଜୀ ରାଓଙ୍କର ଆଧୁନିକ ମାନସ, ପ୍ରସନ୍ନ ମିଶ୍ର ଓ ମନୋଜ ଦାସଙ୍କର ଅର୍ନ୍ତଭେଦୀ କୈଶୋର ଚେତନା ଇତ୍ୟାଦି ଆବଶ୍ୟକ । ସେଠାରେ କ୍ଷତପାଇଁ କାହାକୁ ଦୋଷାରୋପ ଏବଂ ଅଭିଯୁକ୍ତ କଲେ, ରୋଗିଣୀର ଅପମୃତ୍ୟୁ ହେବ ଯେ !

ଅନ୍ୟାନ୍ୟ ଭାରତୀୟ ଭାଷାରେ କୋଣାର୍କରେ ମୁଗ୍ଧ ଓ ପ୍ରଭାବିତ ଏକାଧିକ ଦରଦୀ କବିଗଣ କୋଣାର୍କ ଉପରେ କଳା ସମର୍ପଣ କରିଯାଇଛନ୍ତି । ସେସବୁକୁ ଏଠାରେ ଅନୁବାଦ କରି ସଂଯୋଗ କରିବା ସମ୍ଭବ ନୁହେଁ ଯେହେତୁ ଏହା ଓଡ଼ିଆ କବିମାନଙ୍କର କୋଣାର୍କ ସମ୍ବନ୍ଧୀ କୃତି-କବିତା ସମୂହ । ଆସାମୀ ଭାଷାରେ କବି ନୀଳମଣି ଫୁକନ୍, ସମୀର ତନ୍ତି; ବଙ୍ଗଳାର ବିଷ୍ଣୁ ଦେଙ୍କ ବ୍ୟତିତ ଦେବରତୀ ମିତ୍ର, କାଜଲ ଚକ୍ରବର୍ତ୍ତୀ, ଡୋଗରୀ ଭାଷାର କବି ପଦ୍ମ ସଚଦେବ, ଇଂରାଜୀରେ ଜୟନ୍ତ ମହାପାତ୍ର ଓ ଶିବ କେ. କୁମାର, ହିନ୍ଦୀ ଭାଷାରେ ଚନ୍ଦ୍ରକାନ୍ତ ଦେଓଝଲି, ପ୍ରଭାତ ତ୍ରିପାଠୀ, ଅନାମିକା, କ୍ଷମା କାଉଲ୍, କନ୍ନଡ଼ ଭାଷାରେ ଜି. ଏସ୍. ଶିବରୁଦ୍ରାପା, ମାଲାୟାଲମର କେ. ସିଚ୍ଛିଦାନନ୍ଦନ, ମଣିପୁରୀ ସାହିତ୍ୟରେ ରାଜକୁମାର ମଧୁବୀର, ୟୁମଲେମ୍ନମ୍ ଇବୋମ୍‌ଚା, ମରାଠୀ ଭାଷାର କକ ନିରଞ୍ଜନ ଉଜ୍‌ଗାରେ, ପଞ୍ଜାବର କବି ସୁରଜିତ୍ ପଟର୍, ତାମିଲ ଭାଷାର କବି ନୀଳ ପଦ୍ମନାଭନ୍, ଟି. ପାଲାମାଲାଇ, ତେଲଗୁ ସାହିତ୍ୟର କବି ନିଖିଳେଶ୍ୱର ଓ ଏ. ଜୟପ୍ରଭା ଏବଂ ଉର୍ଦ୍ଦୁ ସାହିତ୍ୟରେ ବଳରାଜ୍ କୋମଲ୍‌ଙ୍କର କବିତା ସବୁ କୋଣାର୍କ ଉପରେ ଆଧାରିତ ।

ଚଳଚ୍ଚିତ୍ର ପ୍ରୋଜେକ୍ଟରର କାମ ଉପରେ ଥିବା ଟେକ୍‌ନିସିଆନମାନଙ୍କ ପରି ରାଧାନାଥ, ନୀଳକଣ୍ଠ, ମାନସିଂହ, ରାଉତରାୟ, କୁଞ୍ଜବିହାରୀ, ବିନୋଦବାବୁ, ବିଷ୍ଣୁ ଦେ', ଭାନୁଜୀ ରାଓ ଓ ରବି ସିଂହ ଓ ଅନ୍ୟଭାଷାର କବିଗଣ ଆମକୁ ଦୃଶ୍ୟ ପରେ ଦୃଶ୍ୟ ଦେଖାଇ ଯାଇଛନ୍ତି । କୋଣାର୍କ ବହୁ ଦର୍ଶକର ଆର୍ଶିଜଗତ ଭିତରେ ବହୁମାନସକୁ ପ୍ରତିବିମ୍ବିତ ଓ ପ୍ରତିଆଲୋକିତ କରିଛି । ନିଜ ନିଜ ଦର୍ପଣର ଛୋଟ ବଡ଼ ଆକାର ଓ ଗୁଣାତ୍ମକ ନିଖୁଣତା ଅନୁପାତରେ ଏହା କାହାକୁ ଭଲ ଅଥବା ଖରାପ ଲାଗିଛି । ଏହି ପ୍ରତିଭାଧର କବିମାନଙ୍କର ଶବ୍ଦ- ମେଳକ ମାଧମରେ ପ୍ରତ୍ୟେକ ପ୍ରତିମାକୁ ଏଠି ଦେଖିହୁଏ । ଶିଳ୍ପ କଳାଚାତୁର୍ଯ୍ୟ ସବୁକୁ ନିଜ ଶବ୍ଦ-ସ୍ଥାପତ୍ୟ ଦେହରେ ଲଗାଇ ହୁଏ । ସବୁକୁ ଆଣି ସାମ୍ନାରେ ରଖି ବିଚାର କଲେ, ମନେହୁଏ ମାନସିଂହଙ୍କ କବିତା ତା'ର କବି ସୁନାଚେନ୍ ପରି । ନୀଳକଣ୍ଠୀୟ କାବ୍ୟ ଜଗନ୍ନାଥ ରଥ ଦଉଡ଼ି । ଗୋପବନ୍ଧୁଙ୍କ କୃତି ତୁଳସୀମାଳି ସଦୃଶ । ରାଧାନାଥଙ୍କ ରଚନା ବିଦେଶୀ ଡେଜି ବା ଡାଲିଆ ଫୁଲର ମାଳା ଏ ଦେଶର ମାଟିରେ ପ୍ରତିଭାର ସବୁଜସାର ପାଇ ବିକଶିତ । ସଚ୍ଚି ରାଉତରାୟଙ୍କ ଲେଖା ଲଙ୍ଗଳ ଦଉଡ଼ି ବା କ୍ରେନ୍‌ର ଲୁହା ଜଞ୍ଜିର ଭଳି ଓ ରବି ସିଂହଙ୍କ ଲେଖା ସହିଦ ବେକରେ ଫାଶୀ ଦଉଡ଼ି । ଆଉ ଅନ୍ୟମାନଙ୍କର ଚମ୍ପା, ବଉଳ, ଟଗର, କରବୀର ଓ ଯୂଇ ଫୁଲର ଗୋଟିଏ ଗୋଟିଏ ଆନ୍ତରିକ ମାଳାଗ୍ରଂଥନ । ପ୍ରୋକ୍ତ କବିଗଣ ଏହି ଶିଳାତୀର୍ଥର ବ୍ରହ୍ମ ସହିତ ନିଜର ନୀରବ ଭାବନା ବିନିମୟ କରିବା ପରେ ଯେଉଁ ନାନ୍ଦୀ ଓ ମଙ୍ଗଳାଷ୍ଟକ ଗାଇଗଲେ, ତାହା ବହୁ ଦିଗରୁ କୋଣାର୍କରୁ ଆମ ସହିତ ଯୁକ୍ତ କରାଇଛି । ତେବେ ବି କୋଣାର୍କ ଉପରେ ଏମାନଙ୍କର ଦସ୍ତଖତ ଶେଷ କିମ୍ବା ଚୂଡ଼ାନ୍ତ ନୁହେଁ । ଅନାଗତ ସମୟ ଅନେକ ବାଣୀସାଧକଙ୍କୁ କୋଳକୁ ନେବ । ଶ୍ରଦ୍ଧା, ସ୍ନେହର ଫୁଲ ଚନ୍ଦନରେ ଅବଶିଷ୍ଟ ଯୁଗର କେତେ କବିଙ୍କର ଉନ୍ନତ ଭାଲପଟ ଶ୍ରୀମନ୍ତ ହେବ । କେତେ ନୂଆ ଅକ୍ଷର- ସ୍ୱପ୍ନର ଫୁଲଝରିରେ ସେମାନେ କୋଣାର୍କ ଉପରୁ ଜୀବନର ଦୀପାବଳୀ ପାଳିବେ । ଆହା ଯେଉଁମାନେ ଆଜି ଶେଷ ପର୍ଯ୍ୟାୟର ମୁଖଶାଳା ଆଡ଼କୁ ଯାଉଛନ୍ତି, ସେମାନଙ୍କ ପାଇଁ ରବର୍ଟ ଫ୍ରଷ୍ଟ୍‌ଙ୍କ ଲେଖା ଉଦ୍ଧାର କରି କହିହେବ–

"It would be easy to be clever
And tell the stones : men hate to die
And have stopped dying for ever
I think they would believe the lie."

ଅର୍ଥାତ୍ : "ଏତେବେଳେ ଯଥାସମ୍ଭବ ନିରାପଦ ଚତୁରତାର ସହିତ ସବୁ ପଥରଙ୍କ ସାମ୍ନାରେ ଗୋଟିଏ କଥା ବ୍ୟକ୍ତ କରିଦେବା ଆବଶ୍ୟକ । ତାହାହେଲା: ମଣିଷ ମୃତ୍ୟୁକୁ ଅତ୍ୟଧିକ ଅଶ୍ରଦ୍ଧା ଓ ହେୟଜ୍ଞାନ କରେ ଓ ସିଏ ନିଜେ ମୃତ୍ୟୁର ଅସହାୟ ସଂଭାବନାକୁ ସବୁଦିନ ପାଇଁ ସ୍ଥଗିତ ଓ ରହିତ କରିସାରିଲାଣି । ତାହାର ଆୟୁ, ତାହାର ମୃତ୍ୟୁରେଖାକୁ ଟପିଯାଇ ଅମରତ୍ୱ ପାଇଲାଣି । ମୁଁ ଭାବୁଛି ଏହାପରେ ସେଇ ପଥରଗୁଡ଼ିକ ଆମରି ଏ ଛଳନାକୁ ଅବଶ୍ୟ ବିଶ୍ୱାସ କରିବେ ।"

କୋଣାର୍କ ଆମର ସତରେ ଏକ ପ୍ରଣାମଯୋଗ୍ୟ ସ୍ମୃତି ମନ୍ଦିର । ଏକ ରୋରୁଦ୍ୟମାନ ସ୍ମାରକୀ । ଯେ କୌଣସି କବିତା, ଚାରୁକଳା ଅଥବା ରମ୍ୟ ରଚନା ଅପେକ୍ଷା ଏହା ଆହୁରି ବିରାଟ: ଆହୁରି ମହିମାମୟ ।

ପ୍ରମୋଦ କୁମାର ମହାନ୍ତି

–୦–

# ସୂଚୀ

## ୫୮ କବିତା କୋଣାର୍କ

## ୬୨ କବିତା କୋଣାର୍କ

# ଚନ୍ଦ୍ରଭାଗା

ରାଧାନାଥ ରାୟ

କୋଣାର୍କ କ୍ଷେତ୍ରରେ ମୋହର
ଏହି ତୁଙ୍ଗ ମନ୍ଦିର,
ଉତ୍କଳ ଦେବୀଙ୍କ ମୁକୁଟ –
ପ୍ରାୟେ ରାଜେ ରୁଚିର ।
ସୁରତରୁ-କୁଞ୍ଜେ ମଞ୍ଜୁଳ
ମୋର ମୈତ୍ରେୟ ବନ,
କୁସୁମ-ସମ୍ପଦେ ବିରାଜେ
ଯହିଁ ଋତୁରାଜନ ।
ଭୋଜରାଜ ସୁତା ଲଭିଲା
ମୋତେ ଭଜି ଦ୍ୱାପରେ
ମହାବୀର୍ଯ୍ୟବନ୍ତ କୁମାର
ନର-ହର୍ଯ୍ୟକ୍ଷ ନରେ ।
ମନ୍ତ୍ରବଳେ କୁନ୍ତୀ ଆକର୍ଷି
ମୋତେ ଆଣିଣ ଥିଲା,
ଆଣିଲୁ ଲାବଣ୍ୟ-ରଜ୍ଜୁରେ
ବାନ୍ଧି ତୁହି ଛଇଳା ।
ରାଜରାଜେଶ୍ୱରୀ ସୁଷମା-
ରାଜ୍ୟେ ତୁହି ସୁନ୍ଦରୀ,
ଛାୟାମୟୀ ଛାୟା ନୁହେଁ ତୋ
ଦାସୀ-ପଣକୁ ସରି ।

ପ୍ରଦକ୍ଷିଣ କରେ ମୋ ରଥ
ନିତ୍ୟ ମେରୁ ପର୍ବତ,
ଅସଂଖ୍ୟ ଅପସରୀ ଦେଖଇ
ବେଶ ଭୂଷାରେ ରତ ।
ଦେଖିନାହିଁ କେବେ ଏମନ୍ତ
ମନୋହର ମାଧୁରୀ,
ଶୋଭା ଦେଖି ଶୋଭା-କମଳା
ଦୁଃଖେ ମରିବେ ଝୁରି ।
ନୟନ ନିମେଷ-ବିହୀନ
କରି ରଚିଲେ ବିଧି,
ସାର୍ଥକ କଲୁ ଏ ବିଧିକି
ତହିଁ ଲାବଣ୍ୟନିଧି ।
ଶତ୍ରୁ ମୁଁ ନୁହଇ ତୋହର
କର ଯୋଡ଼ି ମାଗଇ
ସ୍ଥିର ହୁଅ, ମୃଦୁ ଚରଣେ
ବଡ଼ ବ୍ୟଥା ଲଗାଇ ।
ତହୁଁ ବଳି ବ୍ୟଥା ଲାଗଇ
ବାଳା; ହୃଦେ ମୋହରି,
ସୁକୁମାରୀ ହୋଇ କଷଣ
ଏଡ଼େ ଲଭିଲୁ ଗୋରୀ ।
ମୁହଁ ମାଡ଼ି କାଳେ କଚାଡ଼ି
ବାଳା, ପଡ଼ିବୁ ଝୁଣ୍ଟି,
କୁଶାଙ୍କୁର ଜିବ କୋମଳ
ଚାରୁ ଚରଣେ ଫୁଟି ।
ସଞ୍ଚାଣ ମୁଖରୁ କପୋତ
ଏହି ରୂପେ ପଳାଏ,
ଶ୍ୱାନଠାରୁ ଭୀରୁ ଶଶକ
ପ୍ରାଣ-ବିକଳେ ଧାଏଁ ।

ସିଂହଠାରୁ ଖରେ ପଳାଏ
ମୃଗ ଏ ରୂପେ ସିନା,
କିଣା କିଙ୍କରକୁ ଏ ଶଙ୍କା
କିପାଁ କରୁ ନବୀନା ?
ରଖ ଏ ଜୀବନ ସେବକ
ପଦେ ବରି, ସୁନ୍ଦରୀ !
ତୋହ ଦୟା ବିନା ଗଲିଟି
ନିଶ୍ଚେ ସରି, ସୁନ୍ଦରୀ !
ବୃଥା ହେଲା ଏତେ ମିନତି,
ଏତେ ଚାଟୁ ବଚନ,
ପଳାଇଲା ଋଷି କୁମାରୀ
ବେଗେ ହୋଇ ଉଚ୍ଛନ୍ନ ।
ବିରାଗେ ଧାଇଁଛି ଲଳନା,
ରାଗେ ଲୋକଲୋଚନ,
ବେନି ଭାବ ବେନି ହୃଦୟେ
କରେ ବେଗ ବର୍ଦ୍ଧନ ।
ମାୟାବିପ୍ର ରୂପେ ପଶ୍ଚାତେ
ଅନୁସରନ୍ତି ହରି,
ଡୋରଲଗ୍ନ ଥୋପ ଯେସନ
ଅନୁସରେ ଶଫରୀ ।
ପଳାୟନେ ପୁଣି ସୁନ୍ଦରୀ
ଦିଶେ ସୁନ୍ଦରତର,
ଅସମ୍ଭାଳ-ବେଶ-ଭୂଷଣ
ଆହା କି ମନୋହର ।
ଶାଣ-ଶୀର୍ଣ୍ଣ ପ୍ରାୟେ ଅଙ୍ଗନା
ଅଙ୍ଗ ଚାରୁ ବଳନ,
ବସନ ଉଡ଼ଇ ଦେଖାଏ
ରଙ୍ଗେ ସିନ୍ଧୁ-ପବନ ।

ଚୁମ୍ବି କରଣକୁ ଚିକୁର
ରାଜି ଦୋଳେ ଚରମେ,
ମଦନ-କେତନ ଉଡ଼ଇ
କିବା ଶୋଭା-ଆଶ୍ରମେ ।
କଳିବାକୁ ଏହି ସୌନ୍ଦର୍ଯ୍ୟ
ଧୈର୍ଯ୍ୟ ସୂର୍ଯ୍ୟଙ୍କ କାହିଁ ?
ନ ଧରିଲେ ସେହି ବାଳୀକୁ
ତାଙ୍କ ତ୍ରାହି ତ ନାହିଁ ।
ହେମାଙ୍କ ହଳଦୀବସନ୍ତ
ଦେଖି ଯେହ୍ନେ ସଞ୍ଚାଣ
ଅନ୍ତରୀକ୍ଷେ ଧାଏଁ ସଳଖେ
କ୍ଷଣପ୍ରଭା ସମାନ ।
ଜୀବନ ବିକଳେ ସଭୟେ
ଖରେ ଧାଏଁ ଦୁର୍ବଳ,
ଖରତର ବେଗେ ଜୀବିକା –
ଆଶେ ଧାଏଁ ପ୍ରବଳ ।
ମୁହୁଃ ଚଞ୍ଚୁମୁନ ସଞ୍ଚାଣ
ପଛୁଁ କରେ ବିସ୍ତାର,
ମଣେ କରଗତ ପଲଂକେ
ପରା ହେଲା ଶିକାର ।
ହଳଦୀବସନ୍ତ ଏକାନ୍ତ
ପ୍ରାଣ-ଭୟେ ଅସ୍ଥିର,
କ୍ଷଣେ ଧୃତ, କ୍ଷଣେ ମୁକତ
ମଣେ ନିଜ-ଶରୀର ।
କାଞ୍ଚନ-ପୁଚ୍ଛକୁ ସଞ୍ଚାଣ-
ଚଞ୍ଚୁ କ୍ଷଣେ ପରଶେ,
ଚଞ୍ଚଳ ଏଡ଼ାଇ ଶିକାର
କ୍ଷଣେ ତୀର୍ଯ୍ୟକେ ଖସେ ।

ଏହି ରୂପେ ହରି ଧାଆନ୍ତି
ପ୍ରେମଭୋଳେ ବିହ୍ୱଳ,
ଅବଳା ବାଳାକୁ ଏ ରୂପେ
ଭୀତି ଦିଅଇ ବଳ ।
ହରିଣ-ଲୋଚନା ଏ ରୂପେ
ଧାଏଁ ଉତ୍ତରମୁଖେ,
ଉତ୍ପ୍ରଷ୍ଟ ଲୋଚନେ ହରିଣେ
ଦୂରୁ ଦେଖନ୍ତି ଦୁଃଖେ ।
ଅତି ଦ୍ରୁତବେଗ ଦଉଡ଼ି
ଅବସାଦେ ଜଡ଼ିତ,
ଊର୍ଦ୍ଧ୍ୱଶ୍ୱାସେ ଧନୀ ଉଦଧି-
କୂଳେ ହେଲା ସ୍ଥଗିତ ।
କଣ୍ଠାଗତ ପ୍ରାଣ କାରୁଣ୍ୟ-
ମୂର୍ତ୍ତି ପ୍ରାୟେ ବରାକୀ,
ହାତ ଯୋଡ଼ି ନିଜ ମାତାଙ୍କୁ
କହେ ଉଦ୍ଦେଶ୍ୟେ ଡାକି ।
"ଦୁଃଖ ଫେଡ଼ ମୋର ଜନନୀ !
ହର ଏ ରୂପ ମୋର,
ବିଭୂଷଣ ହୋଇ ହେଲା ଏ
ସିନା ଦୂଷଣ ଘୋର ।
ଦିବ୍ୟ ରୂପ ତୋର, ତା' ସଙ୍ଗେ
ଅଛି ଦିବ୍ୟ ଶକତି,
ଶକ୍ତିହୀନ ରୂପ କେବଳ
ସିନା ଲଭେ ଦୁର୍ଗତି ।
ଭୂତଧାତ୍ରୀ ମାତଃ ବସୁଧେ !
ଦ୍ୱିଧା ହୁଅ ତୁ ଲବେ,
ଶରଣ ସମ୍ଭାଳ, ଆଶ୍ରୟ
ମୋତେ ଦିଅ ଗରଭେ ।"

ଏମନ୍ତ କହନ୍ତେ ଉଠିଲା
ଊର୍ମି ପର୍ବତାକାର
ନୀଳ ବାହୁ ନୀଳ ସାଗର
କିବା କଲେ ବିସ୍ତାର ।
ମହାକଳରବେ ଉଡ଼ିଲେ
ନଭେ ଜଳବିହଙ୍ଗ,
ବେଳାମୁଖେ ମାଡ଼ି ଆସିଲା
ବିଶ୍ୱଗ୍ରାସୀ ତରଙ୍ଗ ।
ମିଶିଯାଏ ଯଥା ପ୍ରଭାତୀ-
ତାରା ରବି-କିରଣେ,
ମିଶିଯାଏ ଯଥା ଜୀବାତ୍ମା
ବିଶ୍ୱ-ଆତ୍ମା ଚରଣେ ।
ମିଶିଯାଏ ଯଥା ଚପଳା
ନୀଳ ଜଳଦ-ଅଙ୍ଗେ
ମିଶିଗଲା ତଥା ଅବଳା
ସେହି ନୀଳ ତରଙ୍ଗେ ।
ସ୍ତମ୍ଭୀଭୂତ ହୋଇ ରହିଲେ
ରବି ମହାବିସ୍ମୟେ,
ଭୟ ଏତେଦିନେ ପଶିଲା
ଭୟଶୂନ୍ୟ ହୃଦୟେ ।
ଘନଘୋଷ ପ୍ରାୟେ ଏ କାଳେ
ହେଲା ଶବ୍ଦ ଭୈରବ,
ଚକିତେ ଚାହିଁଲେ ପଶ୍ଚିମେ
ପ୍ରଭୁ ଅବ୍‌ଜ-ବାନ୍ଧବ ।
ଭୂମିସାତ ଦେବ ଦେଖିଲେ
ନିଜ ପ୍ରିୟ ଦେଉଳ,
ଉତ୍କଳଭୁବନେ ଦେଉଳେ
ଯାହା ଥିଲା ଅତୁଳ ।

ଧ୍ୟାନଯୋଗେ ଜାଣି ସୁମନ୍ୟୁ
ସୂର୍ଯ୍ୟ-କାର୍ଯ୍ୟକଳାପ
କୋପାନଳେ ଜଳି ତପସ୍ୱୀ
ଦେଲେ ଦାରୁଣ ଶାପ ।
ସେହି ଶାପ-ଯୋଗୁଁ ପଡ଼ିଲା
ତଳେ ଦେଉଳରାଜ,
ଦିବୁଁ ଦେବଶିଳ୍ପୀ ଯା ଦେଖି
ଲଭୁଥିଲେକ ଲାଜ ।
ବିଷମ କୁସୁମକୋଦଣ୍ଡ-
ଦଣ୍ଡ-ଲଭିଣ ଭଲେ
ବିମନା ହୋଇଣ ମାର୍ତ୍ତଣ୍ଡ
ଗଲେ ନିଜ-ମଣ୍ଡଳେ ।
କୋଣାର୍କ କ୍ଷେତ୍ରରୁ ଉଠିଲା
ଅର୍କପୂଜା-ବିଧାନ,
ପରିଣତ ହେଲା ସେଦିନୁ
ମରୁ-ରୂପେ ସେ ସ୍ଥାନ ।
ସେ ପୂର୍ବ-ଗୌରବ-ସାକ୍ଷିଣୀ
ମୁଖଶାଳା ମାତର
ପ୍ରତିଧ୍ୱନି ଛଳେ ପାନ୍ଥକୁ
ଏବେ ଦିଏ ଉତ୍ତର ।



[ 'ଚନ୍ଦ୍ରଭାଗା' କାବ୍ୟର ସଂପାଦିତ ଅଂଶ ]

# ଧର୍ମପଦ

ଗୋପବନ୍ଧୁ ଦାସ

ବିହିତ କରମ ମାନବ ଧରମ
ବୀର ଭାବେ ଯେହୁ ସାଧେ,
ସେହି ଧନୁର୍ଦ୍ଧର ରାମ ବୀରବର
ଭବାର୍ଣ୍ଣବେ ସେତୁ ବାନ୍ଧେ ।
ତୁମର ମୋହର ଦେଖା ଦିନକର,
କିପାଁ ଏତେ ମାୟା ମୋହ ?
ତେଜ ମୋ ମମତା ଦେଖାଅ ବୀରତା
କର ନାହିଁ ଜାତି-ଦ୍ରୋହ ।
କହ ମନ ସୁଖେ, 'ନାହିଁ ପୁଏ ଦାୟେ
ବାରଣ ବଢ଼ାଇ ଦାୟ',
ଜଗତେ ଏ କଥା ରହୁ କାଳେ କାଳେ
ନେଉଛି ଏବେ ବିଦାୟ ।
ପାହି ଆସିଲାଣି ଅନ୍ଧାର ରଜନୀ
ନିର୍ମଳ ଦିଶେ ମୋ ପଥ,
ଦିଅ ଆଶୀର୍ବାଦ ଘେନ ଏ ଜୀବନେ
ଏହି ଶେଷ ଦଣ୍ଡବତ ।"

(୮)

ଏତେ କହି ପୁଅ ବାପ-ପଦରଜ
ନେଇ ଲଗାଇଲା ଶିରେ,
ବୃଦ୍ଧ ମୁଖେ କିଛି ବଚନ ନ ଆସେ
ଗଣ୍ଡ ସିକ୍ତ ନେତ୍ର-ନୀରେ ।

ମୂକ ଆଶୀର୍ବାଦ ଇଙ୍ଗିତେ ପ୍ରକାଶି
ସ୍ନେହେ ଚୁମ୍ବିଲା ବଦନ,
ଚାଲିଗଲା ପୁଅ କ୍ଷଣେ ବୃଦ୍ଧ ତହିଁ
ହେଲା ଶୋକେ ଅଚେତନ ।
ଅରୁଣ-ଆରକ୍ତ- ବରଣେ ରଞ୍ଜିତ
ଦିଶେ ପୂରବ ଆକାଶ,
ଫିଟି ନାହିଁ ନିଶା- ଅଙ୍ଗୁ କଳାଶାଢ଼ୀ
ଫୁଟି ନାହିଁ ଉଷାହାସ ।
ଚନ୍ଦ୍ରଭାଗା-ନୀରେ ପାହାନ୍ତି ସମୀରେ
ଖେଳଇ ମୃଦୁ ତରଙ୍ଗ,
ଅଦୂର କାନନେ ପହର ପ୍ରମାଣେ
ରାବେ କୁମ୍ଭାଟୁଆ ଖଗ ।
ଏ ମୁହଁ ଅନ୍ଧାରୀ ବେଳେ ଧର୍ମପଦ
ଚାଲିଗଲା ଅତି ଖରେ,
ଚାର-ପଥେ ଚଢ଼ି ଉଠିଲା ତୂରିତେ
ଦେଉଳ ଶିଖ ଉପରେ ।

(୯)

ଚୌଦିଗେ ବିସ୍ତୃତ ସାଗର-ସୈକତ
ନିସ୍ତବ୍ଧ ବିଜନ ବେଳା,
ସମ୍ମୁଖେ ଅପାର ନୀଳ ପାରାବାର
ଚିରନ୍ତନ ଊର୍ମି ଖେଳା ।
ଉର୍ଦ୍ଧ୍ୱେ ସୁଶୋଭିତ ତାରକା-ଖଚିତ
ଅନନ୍ତ ନୀଳ ଆକାଶ,
ହେଲା ଶୁଦ୍ଧପ୍ରାଣେ ଅପୂର୍ବ ଉଦାର
ମହାଭାବ ପରକାଶ ।
ଜଳ ସ୍ଥଳ ନଭ ହେଲା ଏକ ଭାବ
ଲିଭିଗଲା ବିଚିତ୍ରତା,
ଅନନ୍ତ ଅଭେଦେ ପରମ ନିର୍ବେଦେ
ବ୍ୟକ୍ତ ବିଶ୍ୱ-ମହାସତ୍ତା ।

ବାଳୁତ ହୃଦୟ ମିଶିଗଲା ସେହି
ମହା ଅନନ୍ତ ବିତାନେ
ଅଜ୍ଞ ଭାବ ଭୁଲି ମଣେ ଆପଣାକୁ
ଏକୀଭୂତ ବିଶ୍ୱପ୍ରାଣେ ।
ମୁହୂର୍ତ୍ତକେ ପୁଣି ସେ କ୍ଷୁଦ୍ର ହୃଦୟେ
ସଙ୍କୁଚିତ ବିଶ୍ୱସାରା,
ଭିତର ବାହାର କଲା ଏକାକାର
ଅମୃତ ସଙ୍ଗୀତଧାରା ।
ହୋଇ ଏକ ଧ୍ୟାନ ମିଳାଇଣ ତାନ
ବିଶ୍ୱ-ସଙ୍ଗୀତ-ଲହରେ,
ଗାଏ ଧର୍ମପଦ ପରମ ଆନନ୍ଦେ
'ଜୟ ଜଗଦୀଶ ହରେ ।'
"ନମୋ ନିରଞ୍ଜନ ନିଖିଳ ନିଦାନ
ବ୍ୟାପ୍ତ ସର୍ବ ଚରାଚରେ,
ପ୍ରଭୁ ଦୟାମୟ ମଙ୍ଗଳ-ଆଳୟ
ଜୟ ଜଗଦୀଶ ହରେ ।
ନମୋ ନିରାକାର ସର୍ବ ବିଶ୍ୱାଧାର
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ,
ପ୍ରଭୁ ବିଶ୍ୱପତି ଅଗତିର ଗତି
ଜୟ ଜଗଦୀଶ ହରେ ।
ଧରି ତୁମ୍ଭ ବଳ ବହଇ ଅନିଳ
ଅନ୍ତରୀକ୍ଷେ ନିରନ୍ତରେ,
ଆଦେଶେ ଉଦଧି ନ ଲଙ୍ଘେ ଅବଧି
ଜୟ ଜଗଦୀଶ ହରେ ।
ତବ ଦିବ୍ୟଜ୍ୟୋତି ପରକାଶେ ନିତି
ଗ୍ରହ ତାରା ନୀଳାମ୍ବରେ,
ତବ ପୁଣ୍ୟ ହାସେ କୁସୁମ ବିକାଶେ
ଜୟ ଜଗଦୀଶ ହରେ ।

ନଦୀ ବନ ଗିରି ଭୀମକାନ୍ତ ଶିରୀ
ତୁମ୍ଭରି କଟାକ୍ଷେ ଧରେ,
ଗାଏ ତୁମ୍ଭ ଗୀତି ଏ ବିଶ୍ୱ-ଭାରତୀ
ଜୟ ଜଗଦୀଶ ହରେ ।

ଅନନ୍ତ ମହିମା ଅତୁଳ ସୁଷମା
ଦିଶେ ବିଶ୍ୱ ସ୍ତରେ ସ୍ତରେ,
ତବ ମହାପ୍ରେମ ଖେଳେ ଚରାଚରେ
ଜୟ ଜଗଦୀଶ ହରେ ।

ସେ ମହାମହିମା କି ବୁଝିବି ପ୍ରଭୋ,
କ୍ଷୁଦ୍ର ନର କଳେବରେ,
କି ଭାଷାରେ ତବ କରିବି ହେ ସ୍ତୁତି
ଜୟ ଜଗଦୀଶ ହରେ ।

ଦେଶ କାଳ ସୀମା- ଅତୀତ ମହିମା
ଅଗୋଚର ସୁର ନରେ,
ଏକ ଅଦ୍ୱିତୀୟ ପୂର୍ଣ୍ଣ ପ୍ରେମମୟ
ଜୟ ଜଗଦୀଶ ହରେ ।

ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପୟରେ,
ପୂରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।

ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ ଅନ୍ତରେ,
କର ତାହା ସିଦ୍ଧି କରୁଣା-ବାରିଧି
ଜୟ ଜଗଦୀଶ ହରେ ।

ମୋ ହୃଦୟ-ସ୍ୱାମି, ପ୍ରଭୁ ଅନ୍ତର୍ଯ୍ୟାମୀ,
ଦେଖାଇଛ ଯାହା ଥରେ,
ସେ ଅମୃତ-ଗତି ଦିଅ ପ୍ରାଣପତି
ଜୟ ଜଗଦୀଶ ହରେ ।

ଚନ୍ଦ୍ରଭାଗା ମୋର ଘେନ ନମସ୍କାର
ନିଅ ମୋତେ ନିଜ ଅଙ୍ଗେ,
ବହି ମାତୃସ୍ନେହ ମିଶାଅ ଏ ଦେହ
ଅତଳ ଉଦଧି ସଙ୍ଗେ ।"
ଗାଇ ଏହିପରି କହି 'ହରି ହରି'
ଡେଇଁଲା ସେ ନଦୀଜଳେ,
ନ ରହିଲା ତା'ର ଚିହ୍ନ କି ଆକାର
ଗଲା ମହାସିନ୍ଧୁ ତଳେ ।
ଆର ଦିନ ରବି ଉଇଁଣ ଚୁମ୍ବିଲା
ସମ୍ପୂର୍ଣ୍ଣ ମନ୍ଦିର-ଚୂଳ,
ନ ଜାଣିଲେ କେହି କିଏ ସେ ମୁଦିଲା
କୋଣାରକେ ଏ ଦେଉଳ ।
ନଦୀ ଗିରି ବନେ ସାଗର କାନନେ
ମିଶିଗଲା ହାଡ଼ ମାଂସ,
"ଧର୍ମପଦ" ନାମ କାଳସିନ୍ଧୁ କଲା
ବିସ୍ମୃତି-ଗରଭେ ଗ୍ରାସ ।
ଲୁଚି ରହେ ନାହିଁ ସତ୍ୟ ଚିରଦିନ
କାଳେ ହୁଏ ତା ବିବୃତ୍ତି,
ନାହିଁ ଧର୍ମପଦ, ଭାଙ୍ଗିଛି ଦେଉଳ,
ଅଛି ଏବେ ଜନଶ୍ରୁତି ।



('ଧର୍ମପଦ' କାବ୍ୟର ସଂପାଦିତ ଅଂଶ)

# କୋଣାର୍କେ ଉଷା

ଗୋପାଳବଲ୍ଲଭ ଦାସ

କେଡ଼େ ମନୋଲୋଭା କାରୁକାର୍ଯ୍ୟ ଶୋଭା
ହେଉଛିରେ ଛାରଖାର
ଦେଖିଲେ ବଚନ ନ ସ୍ଫୁରେ ନୟନ
ତେଏଙ୍କେ ଅଶ୍ରୁ ଅନିବାର ।
ଶଇବାଳାବୃତ କାହିଁ ସ୍ଥାନ ଚ୍ୟୁତ
ମୂର୍ତ୍ତି କେଡ଼େ ମନୋହର
ଦୁଃଖ ବିମୋଚନ ପାଇଁ କି ବଚନ
ଭାସିବାକୁ ତତପର ?
କାହାର ପୟର କାହାର ବା କର
ପଡ଼ିବାରୁ ଆହା ଖସି
ନାସିକା ଶ୍ରବଣ ହେବାରୁ ଛେଦନ
କାନ୍ଦୁଛି କି ଦୁଃଖେ ବସି ?
କେତେ ବା ରୋଦନ ଜାଣି ଅକାରଣ
ହେଲେଣି ନୟନ ହୀନ
ଧରଣୀ ଶୟନ କଲେଣି ବରଣ
କେତେ ବା ନ ସହୁଁ ଦିନ ।
କାହାର ବା ଶିର ହରାଇ ଶରୀର
ସ୍ମିତେ ହସି ହସି ଭାଷେ
ପାଷାଣେ ନିର୍ମିତ ତଥାପି ଚର୍ବିତ
ହେଲୁଁ ଦେଖ କାଳଗ୍ରାସେ ।
ଅଭିମାନ ନର ମନୁ ଦୂର କର
ଆମ୍ଭ ଏହି ଦଶା ଧ୍ୟାୟି ।

ରୂପ ଯଉବନ ନୁହେଁ କାଦାଚନ
ପାଷାଣୁଁ ଅଧିକ ସ୍ଥାୟୀ ।
ଧନ୍ୟ ସେ ବିଜ୍ଞାଣୀ ନିହିଛି ଯେ ଆଣି
ଶିଳାରେ ଜୀବିତ ଠାଣି
ଅତି ମନୋରମ କାର୍ଯ୍ୟ ଅନୁପମ
ବର୍ଣ୍ଣିପାରେ ବୀଣାପାଣି ।
କାହିଁ ହସ ହସ କାହିଁ ବା ବିରସ
ସୁରାସୁର ନର ନାରୀ
କାହିଁ ହରି କରୀ ନାନା ଭଙ୍ଗି ଧରି
ଜନମନ ମୁଗ୍‌ଧକାରୀ ।
କାହିଁ ମଲ୍ଲ ମୂର୍ତ୍ତି ଦେଖାଉଛି ସ୍ଫୂର୍ତ୍ତି
ଯେହ୍ନେ ଦେବ-ସେନାପତି
କାହିଁ ଧନୁର୍ଦ୍ଧର ନିକ୍ଷେପୁଛି ଶର
ଅବହେଳେ ଅରି ପ୍ରତି ।
କାହିଁ ବିକଶିତ ସୁମନମଣ୍ଡିତ
ଚାରୁ ତରୁ ଲତାପୁଞ୍ଜ
କାହିଁ ବିଦ୍ୟାଧରୀ ବୀଣା କରେ ଧରି
ମଣ୍ଡେ ମନୋରମ କୁଞ୍ଜ ।
ଲୋକ ଆଗମନ ଦେଖି ସମ୍ଭାଷଣ
କରିବାକୁ ଅଭିଳାଷୀ
ହୋଇ କିବା ବୀଣା ବାଦନ ପ୍ରବୀଣା
ବନ୍ଦକଲା ମଦାଳସୀ ।
ଶିଳା-ବିନିର୍ମିତ ନ ଘେନଇ ଚିତ୍ତ
ଆହା କି ଅପୂର୍ବ ଶିରୀ
ନିଜକୁ ପାଷାଣ ବୋଲି ହୁଏ ଜ୍ଞାନ
ମନ୍ତ୍ରମୁଗ୍‌ଧ ହେଲା ପରି ।
ଆହା କି ମଞ୍ଜୁଳ ନାଶା ତିଳଫୁଲ
ମୁଖ ଅରବିନ୍ଦ ଶୋଭା
ଖଞ୍ଜନ ଗଞ୍ଜନ ବିଶାଳ ନୟନ
ଆହା କେଡ଼େ ମନଲୋଭା ।

ଯେଠାରେ ଯେମନ୍ତ ଭଙ୍ଗିମା ତେମନ୍ତ
ଦିଶଇ ଜୀତ ବିପରି
ଲବଣି ପିତୁଳା ହେଲେ ହେବ ତୁଳା
ଆନ କେହି ନୁହେ ସରି ।
ନ ଉଚ୍ଚାରି ବାଣୀ କହୁଛି କାହାଣି
ଉତ୍କଳର ପୁରାତନ
ଯେବେ ଏ ଦୁଃଖିନୀ ଭାରତନନ୍ଦିନୀ
ଥିଲା ସୁଖ ନିକେତନ ।
ପୁଲକିତ ମନେ ଉତ୍କଳ ନନ୍ଦନେ
ଘେନି ଜୟ ବୈଜୟନ୍ତୀ
କରୁଥିଲେ ସଜ ଯେବେ ଅଶ୍ୱ ଗଜ
ପଦାତିକ ପନ୍ତି ପନ୍ତି ।
ମାତି ବୀରମଦେ ସର୍ବେ ମହାନନ୍ଦେ
ପିଟେ ଯେବେ ଜୟ ଡଙ୍କା
ତୁରୀ ଭେରୀ ସ୍ୱନେ ଅରିବୃନ୍ଦ ମନେ
ଉପୁଜାଉଥିଲେ ଶଙ୍କା ।
ଥିଲେ ବଡ଼ ସାନ ଏକ ମନ ପ୍ରାଣ
ଜାତୀୟ ବିଷୟ ସ୍ମରି
ଭୁଲି ଆତ୍ମଜ୍ଞାନ ମାନ ଅପମାନ
କାଷ୍ଠ ପୁତ୍ତଳିକା ପରି ।
ଚାଳିତ ସକଳେ ଜାତୀୟ ମଙ୍ଗଳେ
ଅତି ପୁଲକିତ ମନେ
ଧାଉଁଥିଲେ ରଙ୍ଗେ ଯେପରି ପତଙ୍ଗେ
ଅଗ୍ନିଶିଖା ଦରଶନେ ।
ନିଦାଘ ତପନ ବରଷା ପବନ
କରୁଥିଲେ ହେୟ ଜ୍ଞାନ
ଗିରି ନଦୀ ଝର ଲଙ୍ଘନେ ତତ୍ପର
ରଖିବାକୁ ଜାତି ଟାଣ ।

ଉଦ୍ଦେଶ୍ୟ ସାଧନ ନିମନ୍ତେ ଜୀବନ
ଅଜ୍ଞାତରେ ବିସର୍ଜନ
କରୁଥିଲେ ରଣେ ପୁଲକିତ ମନେ
ସ୍ୱର୍ଗ ସୁଖ ଉପାର୍ଜନ ।
ଧରି ଅନୁପମ ମୃଗେନ୍ଦ୍ର ବିକ୍ରମ
ଯଯାତି କେଶରୀ ସଙ୍ଗେ
ଯେବେ ତୋଷମନେ ଅରି ନିର୍ଯ୍ୟାତନେ
ମାତିଥିଲେ ରଣରଙ୍ଗେ ।
ଯେବେ କାଞ୍ଚି ପୁରେ ଦକ୍ଷିଣେ ସ୍ୱଦୂରେ
ତରି ଗୋଦାବରୀ କୃଷ୍ଣା
ଜିଣି ଗଣପତି ଟେକି ବୈଜୟନ୍ତି
ନିବାରିଲେ ଜୟ ତୃଷ୍ଣା ।
ପୁରୁଷ ଉତ୍ତମ ସେ ପୁରୁଷୋତ୍ତମ
ବିଷ୍ଣୁଭକ୍ତ ବିଜ୍ଞବର
କାଞ୍ଚିରାଜ ଗର୍ବ ହେଲେ କଲା ଖର୍ବ
ଯେବେ ବୀର ଧନୁର୍ଦ୍ଧର ।
କାବେରୀ ତ୍ରିବେଣୀ ସ୍ରୋତସ୍ୱତୀ ବେନି
ମଧ୍ୟେ ଘେନି ଫରିକାଣ୍ଡ
ଯମଦୂତ ପରି ଦିବସ ଶର୍ବରୀ
ଯୋଦ୍ଧା ମଣ୍ଡୁଥିଲେ ଦାଣ୍ଡ ।
ଯେ କାଳେ କଟକ ମାନଙ୍କ ଛଟକ
ଦେଖି ଜଗଦ୍‌ବାସୀ ଗଣ
ଚକିତ ସ୍ତମ୍ଭିତ କେତେ ବା ଶଙ୍କିତ
କେତେ ପୁଲକିତ ମନ ।
ଅତି ପୁରାତନ ବିରଜା-ଭବନ
ମନୋହର ଉପବନେ
ଯେବେ ଯାଜପୁରେ ଅଶିଚ(ବ)ର୍ମ କରେ
ବୁଲୁଥିଲେ ବୀରଗଣେ ।

ରୂପେ ଅନୁପମା ଅତି ମନୋରମା
ଯେକାଳେ ଅମରାବତୀ
କୃଷ୍ଣାନଦୀ ତୀରେ ମଣ୍ଡୁ ଥିଲେ ବୀରେ
ଶୌର୍ଯ୍ୟେ ଯେହ୍ନେ ଲଙ୍କପତି ।
ଯେବେ ପାହାଡ଼ିଆ ନଅର ଛତିଆ
କାରୁକାର୍ଯ୍ୟ ସୁଶୋଭିତା
ତ୍ରିଦିବ ସମ୍ପତ୍ତି ଶଚୀ ଶଚୀପତି
ଘେନି ଅତି ପୁଲକିତା ।
ଯେବେ ଚତୁର୍ଦ୍ଦ୍ୱାର ପ୍ରକାଣ୍ଡ ପ୍ରାକାର
ମହାନଦୀ ବାମତୀରେ
ସତତ ମଣ୍ଡିତ ବର୍ମବିଭୂଷିତ
ଭୀମକଳେବର ବୀରେ ।
ଯେବେ ବାରବାଟୀ ଦୁର୍ଗ ପାରିପାଟୀ
ଶୋଭାରାଶି ଦରଶନେ
ଅବାରିତ ଗତି ଚିତ୍ରୋତ୍ପଳା ସତୀ
ଅତି ପୁଲକିତ ମନେ ।
ମନ୍ଥର ଗାମିନୀ ହୋଇ ସୁହାସିନୀ
ଉଭା ହେଉଥିଲା ଘେନି
ଅର୍ଦ୍ଧ ଚନ୍ଦ୍ରାକାର ମୁକୁର ଉଦାର
ପରସାରି ବାହୁବେନି ।
ଚନ୍ଦ୍ରବିନ୍ଦୁ ଶୋଭା ଦୁର୍ଗ ମନୋଲୋଭା
ଯେତେ ହିମାଳୟ ଗିରି
ପିନ୍ଧି ଯଜ୍ଞ ସୂତ୍ର ସିନ୍ଧୁ ବ୍ରହ୍ମପୁତ୍ର
ଜନମନ ମୁଗ୍ଧକାରୀ ।
ଯେସନେ କେଶରୀ ଉତ୍ପାଦନ କରି
ପ୍ରୀତି ଭୀତି ଯୋଦ୍ଧାଗଣ
ଇନ୍ଦ୍ରଜିତ ପରି ନାନାଅସ୍ତ୍ର ଧରି
କରୁଥିଲେ ବିଚରଣ ।

ବିଳାସ ଭବନ ରମ୍ୟ ଉପବନ
ମଣ୍ଡନେ ନ ଦେଇ ମନ
ମନ୍ଦିର ଗଠନ ତଡ଼ାଗ ଖନନ
କରୁଥିଲେ ରାଜଗଣ ।
ଯେବେ ବନ୍ଦିଗଣେ ଦିବା ଆଗମନେ
ବୀରରସପୂର୍ଣ୍ଣ ଗୀତ
ଗାଇ ସୁତାନରେ ବୀଣାର ଝଙ୍କାରେ
କରୁଥିଲେ ଜାଗରିତ ।
ଯେକାଳେ ବ୍ରାହ୍ମଣେ ଶାସନେ-ଶାସନେ
ଯେହ୍ନେ ପୋଷ୍ୟପୁତ୍ର ଗଣ
ଅତି ସୁଖମନେ ବେଦ ଉଚ୍ଚାରଣେ
କାଟୁଥିଲେ ରାତିଦିନ ।
ଯେକାଳେ ବିନ୍ଧାଣୀ ଦୂରୁଶିଳା ଆଣି
ଅଭ୍ରଭେଦି ଚୂଡ଼ାଧାରୀ
ମନ୍ଦିର ନିକର ମଣ୍ଡନେ ତତ୍ପର
ଜନମନ ମୁଗ୍ଧକାରୀ ।
ଭାଷେ "ବୀଣାପାଣୀ" ଏସବୁ କାହାଣି
କହି କହି ବାକ୍ୟ ହୀନ
ହେଲୁଣି, ଉତ୍କଳ ବଦନ ଉଜ୍ଜ୍ୱଳ
ହେଉ ନାହିଁ ଶୁଭଦିନ ।
ହାୟ ପିତୃଗଣେ ବିଶେଷ ଯତନେ
ରଖିଗଲେ ଯେଉଁଧନ
ସବୁ ଅକାରଣ ଉତ୍କଳ ନନ୍ଦନ
କରିବାକୁ ଅଯତନ ।



(ଜାନୁଆରୀ ୧୮୯୫ ମସିହାରେ ସାହିତ୍ୟ ପତ୍ରିକା 'ଇନ୍ଦ୍ରଧନୁ'ରେ
ପ୍ରକାଶିତ ସଂପାଦିତ ଅଂଶ)

# କୋଣାର୍କେ

ପଂଡିତ ନୀଳକଂଠ ଦାସ

## ପ୍ରଥମ ଭାଗ

## ରାମଚଂଡୀଠାରେ ରାତି ଓ ସକାଳ

### ରାମଚଂଡୀଠାରେ ରାତି

- ୧ -

କି କରାଳ ଆଜି ଯାମିନୀ? ବହେ ଝଂଜା ପବନ,
ତରା ନ ଦିଶଇ ଗଗନେ, ଶୁଭେ ଘନ ଗର୍ଜନ ।
ମୂଷଳ-ଧାରାରେ ଝଟିକା ଦିଏ କଚାଡ଼ି କେବେ,
ଶୋଇ ପଡ଼ିଛ ତ ବାପା ହେ ଜାଣୁ ନ ଥିବ ଲବେ ।
ଆଜି ଯେ କୁଆଁର ପୁନିଅଁ କେତେ ସୁଖ-ଶରଧା,
ମାଆ ଭଉଣୀଙ୍କ ଆଦର, ନବ- ବସନ-ପିନ୍ଧା,
ମନେ ପଡୁନାହିଁ ବାବୁ ହେ କାଶି ଯାଇଛି ନିଦ;
ମାଆ ଭଉଣୀଏ ଭବନେ ଭଜୁଥିବେ ବିଷାଦ ।
ଲୁଗାରେ ହଳଦି ଲଗାଇ ଚାହିଁ ଥିବେ ଜନନୀ ।
ପିଠାପଣା ଖାଉ ନ ଥିବ ସୁଖେ ଆଜି ଭଗିନୀ ।
ପବନ-ଝଙ୍କାରେ ଶୁଣୁ ସେ ଥିବ ଡାକ ତୁମ୍ଭର
ପଲକେ ପଲକେ ଚମକି ହେଉଥିବେ କାତର ।
ଫାଟିଯାଉଥିବ ଜାହାଜ ତାଙ୍କ ହୃଦ-ସାଗରେ ।
ନିରାଶାରେ ଆଶା-ଚମକେ ଥିବେ ସେହୁ ଜାଗରେ ।
ଜନନୀର ଗୁରୁ ବେଦନା, ଭଗିନୀର ବିଷାଦ,

ସୁମରି ସପନେ ଚମକି ଭାଙ୍ଗି ଯିବଟି ନିଦ ।
ଶୁଅ ଶୁଅ ଧନ, ଆରାମେ ଶୋଇ ଥାଅରେ ଶିଶୁ;
ପଥଶ୍ରମ କରି ଆସିଛ, ଶ୍ରମେ ବିରାମ ମିଶୁ ।

୨

ବହୁ ବାଲିବଂତ ଡେଇଁ ହେ ଆଜି ଆସିଛ ଚାଲି,
ସଇକତ-ନଦୀ-ଗରଭେ ପଶି ହୋଇଛ ପାରି ।
ଉରଗ-କୁଟିଳ-ତଟିନୀ ଭରା ଆସାର-ନୀରେ
ବିସ୍ମୟ ସୋହାଗେ ଭେଟିଛ କେତେ ବାଂକେ ପ୍ରାଂତରେ
ବାଟଭୁଲି କେତେ ଅନ୍ଧାରେ ସହି ବରଷାଧାରା,
ନବଗୁଡ଼ିକଙ୍କ ଲତିକା ମାଡ଼ି ଚାଲିଛ ପରା !
କାନ୍ଧେ ଭାର ବହି, ଏସବୁ ପଥେ ସହି ନିରତେ;
କୁତୁହଳେ ପୁଣି ଶାମୁକା ସାଉଁଟିଛ ହେ କେତେ ।
ନୂଆ ଜୀବଟିଏ ଅନ୍ଧାରେ ଦେଖି ନଇମୁହାଣେ,
ନାଚି ଉଠିଅଛ କି ଭାବ ବହି ଶିଶୁ ପରାଣେ ।
ସେ ଭାବ ମୋହର କାହିଁ ହେ, କାହୁଁ ବୁଝିବି ମୁହିଁ ?
ଶିଶୁମେଳେ ସିନା ବୁଲୁଛି, କାଳ ଯାଉଛି ବହି !
ସୁମରିଲେ ପଦ-ବେଦନା ଭାର ନ ଦିଶେ ମୋତେ;
ନିରର୍ଥକ ନେବି ଭାବିଲେ ପାଦ ନ ପଡ଼େ ହାତେ ।
ଭାରଟିଏ ସେ ତ ଶାମୁକା, କାହିଁ ରୁଚି ମୋହର ?
କି ଅଛି ତହିଁରେ, କିମ୍ପାଇ ବେଳା କଲ ହେ ଜୂର ?
ବୁଝାଇ ଦେବ କି ବାଳକେ, ଥରେ ଶୁଣିବି ମୁହିଁ ?
ଶିଖାଉଚି ନିତି, ଶିଖିବି ଆଜି ପରାଣ ଦେଇ ।
ପ୍ରବୀଣ-ବିଗ୍ରହେ ଉଠିବ ଶିଶୁ-ହୃଦୟ ନାଚି,
ସୁମରି ଝୁରିଚି, ଆସିଛି ମୁହିଁ ବେଳା ମୂରୁଛି ।

୩

ମନେ ପଡୁଛି ମୋ' ସେ ଦିନ, ଯେବେ ବାଲୁତପଦେ,
କୋଣାର୍କ ଆବେଗେ ପରାଣ ଭରି କିଶୋର-ମୁଦେ,
ବିଲକୁଂଜ ଛାଡ଼ି ପ୍ରାଂତରେ ପଶି କୋଣାର୍କ ଦେଖି,
ଚମକି ପୁଲକେ ଚାହିଁଲି, ହୃଦେ ରହିଛି ଲାଖି ।

ବାରୁଣୀ-ତାମସ-ଅରୁଣ-ଭାସେ ପ୍ରାଚୀ-ଲଲାଟେ
ଧୂସର-ତିଳକ-ମଂଦିର ଦିଶେ ସାଗର-ତଟେ ।
ଫେନ-ତାରକିତ-ନୀଳିମା ଭେଦି ଉଠିଲା ଛବି,
ପୁଛିଥିଲି, "ଏ କି କୋଣାର୍କ, ଉତ୍ର କୀରତି-ରବି ?"
ଲଘୁ ସେ କିଶୋର ଚରଣ ସିକତିଳ ପ୍ରାଂତରେ
କୁରଂଗ-ବିଭବେ ପଡ଼ିଲା ବଂତୁ ବଂତ ପ୍ରସାରେ ।
ଶାବକ ଗହଣେ ପଳାଏ ପଥେ କୁରଂଗବାଳା;
ଗ୍ରୀବା ଭଂଗେ ଦୂରେ ଦେଖାଏ ଲଘୁତରଳ ଲୀଳା ।
ଦେଖି ନ ଦେଖିଲି ସେ ଛବି, ଚାଂଦ ଫୁଟିଲା ହସି;
ତରଳ ରଜତ-ପ୍ଲାବନେ ଗଲା ସିକତା ଭାସି ।
ଉଠି ପଡ଼ି କେତେ ଅବାଟେ ଭଗ୍ନ ଶଇଳ ଭେଦି,
ଅଦୂରେ ମଂଦିର-ଚତ୍ୱରେ ତହିଁ ଦେଖିଲି ସାଦୀ;
ପୃଥୁ ବାଜିବର, ପର୍ଯ୍ୟାଣେ ତୁଂଗ ବପୁଷ୍କ ବୀର !
ଦେଖି ଶିଶୁ ପ୍ରାଣେ କି ହେଲା ? କ୍ଷଣେ ରହିଲି ସ୍ଥିର ।
ଶିଳ୍ପ-ବିରଚନ ଜାଣିଲି; ଗଲି ଭରସି ପାଶେ ।
ଦେଖିଲି ଜୋଛନା-ଲାବଣ୍ୟେ କିବା ମୂରତି ହସେ !
ବାରମ୍ବାର ଭ୍ରମେ ଦେଖିଲି ପୁଣି ନିରେଖି ଛବି;
ବାରମ୍ବାର ଚିତ୍ତେ ଚମକି ଗଲି ପୁଲକେ ଦ୍ରବି ।
ଚାହିଁଲି ମନ୍ଦିର-ଲଲାଟେ; ବୁଲି ଦେଖିଲି କେତେ ।
ସୂଚୀ-ଶିଳ୍ପ, କାରୁ-ଖୋଦନ, ତୁଂଗ ମୂରତି ଯେତେ ।
ତୁହିନ-ମୟୁଖ-ରସାଣେ ସବୁ ଦିଶିଲା ତୋରା,
ଜୀର୍ଣ୍ଣ କଳଂକିତ ପଥର, ସବୁ ଲାବଣ୍ୟ-ଭରା ।
ଜୋଛନାର ଛାଇ ଦିଶିଲା ସ୍ତରେ ସ୍ତରେ ମନ୍ଦିରେ,
କାଳର ବିଭଂଗ, ଲୁଚିଲା ପୁଣ୍ୟ ଜୋଛନାପୂରେ ।
ପୁରାଣ କୋଣାର୍କ ଦେଖିଲି କେଡ଼େ ଜୀବଂତ ପରି;
ସୁଧାଂଶୁ-କିରଣେ ସତେ କି ପଡ଼େ ଅମୃତ ଝରି !
ଦିବା-ଅଟ୍ଟହାସେ ଶିଶୁଏ କାଳ-ଭଗ୍ନୁର ଲେଖା
ଦେଖିଛଂତି, ରହ ଝଟିକା, ଫୁଟି ଉଠୁ ଚନ୍ଦ୍ରିକା ।

୧୧

ବିଶାଳ ପଥର ଆଣିବେ ଦୂର ଶଇଳ ଛେଦି;
ସୂଚୀ-କାରୁ ସ୍ତୂପ ଗଢ଼ିବେ ନଦୀ-ଗରଭ ଭେଦି ।
ନରସିଂହ ଦେବେ ଦେଖିବ ଗଂଗବଂଶ-ତପନେ ।
ଶତଶତ ଶିଳ୍ପୀ ନାଚିବେ ତୁଂଭ ବାଳନୟନେ ।
ଶିବେଇ ସାମଂତ୍ରା ଆସିବେ ଘେନି 'ବାରଶ' ଶିଳ୍ପୀ ।
ଦେବ ହେ ବଢ଼େଇ-ବାଳକ ସୁଖେ ପ୍ରାଣ ଅରପି;
ପଡ଼ିବ ମଂଦିର-ଶିଖରୁ କଂକରିଳ ପ୍ରାଂଗଣେ,
ଭାଙ୍ଗିବଟି ନିଦ ଚମକି ତବ ମଧୁ ସ୍ୱପନେ !
ପ୍ରେତପରି ପୁଣି ଦିଶିବେ ପୂର୍ବ-ପୁରୁଷ-ମେଳେ ।
କୀରତି-ଶ୍ମଶାନ ହସିବ ତବ ସ୍ୱପନ-ଖେଳେ ।
ରାମଚଂଡୀ ଆଉ ଛଳନେ କଳାପାହାଡ଼ ଛାଡ଼ି
କୁଶଭଦ୍ରା-ଅଂକେ ଭାସିବେ ନାହିଁ କୁଂଭ-ଆଦରି ।
ଜଡ଼ ପରି ପୁଣି ବସିବେ ଏଥି ହୋଇ ପଥର,
ଗୁଦ୍ଧ ଜନପଦ ହେବ ହେ ସେହିପରି ପ୍ରାଂତର ।
ରହି ଯାଆ ବାଆ ପବନ, ଝଡ଼ ହୁଅ ତୁ ଥିରା,
କେତେ ତ ସହିଛି, ଆଉ କି ସହି ପାରେ ଏ ଧରା ?

- ୩୦ -

କିଏ ଗଢ଼ିଥିଲା ଏ ଭୂମେ ଏଡ଼େ କଳା ବିଶାଳ,
କି ସାହସେ ନଦୀ ଗରଭେ
ପୋତି ଏତେ ପଥର ?
କେଉଁ ତୁଙ୍ଗଗିରି କାଟି ସେ, ଏଡ଼େ ବିଶାଳ-ଶିଳା
କେସନେ ବହିଲେ ଏ ଭୂମେ, ଏ ତ ସିକତା-ମାଳା ?

ସିଂଧୁ-ବାତେ ରମ୍ୟ କେସନେ କଂପି ଚିରାଳ-ତନୁ,
ଖେଳି ଯାଉଥିଲା ? କହ ଗୋ ଖଂଡି ସଂଶୟ ମନୁ ।
ବିଶାଳ ଆୟସ-ଧାରଣା ଶିଳ୍ପୀ ରଚି କେମନ୍ତେ,
ଉତ୍ତୁଂଗ-ମଂଦିର-ଶିଖରେ ବହି ନେଲେ କି ଯଂତ୍ରେ ?
ମୋହନ-ମୁଗୁନି-ଅକର୍ମ-ଶିଳା କି ଶସ୍ତ୍ର ଧରି,
ମୂର୍ତ୍ତି ଗଢ଼ିଥିଲେ କିଏ ସେ ଏଡ଼େ ଜୀବଂତ କରି ?

ଯୁଗ-ପରିତ୍ୟାଗ ଭୀଷଣ ସିଂଧୁ-ପବନ-ଘାତେ
ପଥର-ମୂରତି ଦିଶଂତି, ଯଥା ନୂତନ ସତେ !

ସୂଚୀ-ଲେଖା କମ୍ର ବିଗ୍ରହେ ଲୁଚି ନାହିଁ ତ ତିଳେ,
ଅଂଗ-ତ୍ରାଣେ ସୂତ୍ର-ସଂପଦ ଫୁଟିଉଠେ ବିମଳେ;
ଲାବଣ୍ୟ ଝରଇ ଶ୍ରୀଅଂଗେ ମୁଖେ ମୋହନ ଦ୍ୟୁତି;
ବିକଚ କମଳ ଶ୍ରୀକରେ ଶୋହେ ସୂର୍ଯ୍ୟ ମୂରତି !
ସପ୍ତ-ଅଶ୍ୱ ରଥେ ବାହନ ବସେ ଅରୁଣ ଆଗେ;
କାରୁ-ବିଖଚିତ-ମୁକୁଟ ଶୋହେ ଲଲାଟ-ଭାଗେ ।

୩୮

ଉଦୟ-ବିଭବ କୋଣାର୍କେ ଶୁଣ କହୁଚି ହେଜି,
ଦୁର୍ଦ୍ଦିନ ତାମସେ କାହୁଁ ରେ ବାପା ଦେଖିବ ଆଜି ?
ତୁଂଭପରି ଥିଲି ଯେବେ ମୁଁ, ରାତି ନ ପାହୁ ଆସି,
ଚଂଦ୍ରଭାଗା-କୂଳେ ଥିଲିରେ ଚାହିଁ ଅରୁଣେ ବସି ।

କୁଆଁତାରା ଜ୍ୟୋତି ଲିଭିଲା, ଉଷା ଗଗନ-ପଟେ
ଖେଳିଗଲା, ଗଲା କାଳିମା ଲୁଚି ପ୍ରତୀଚୀ-ତଟେ,
ଅରୁଣ-କିରଣ-ବିତାନ-ପଛେ ଉଠିଲେ ରବି,
ତରଳ-ମାରାଗ-କଂପନ-ପଛେ ହାଟକ-ଛବି,

ପରିଧି-ପ୍ରସାରେ ଚଂଚଳ ସିଂଧୁ ଭେଦି କ୍ରମଶେ,
ଚପଳ-ହାଟକ-ଦ୍ରବେ କି ଖଂଡ-ମଂଡଳ ଭାସେ ?
ବୃତ୍ତାଭାସ ପରି ଦିଶିଲା ଉଠି ଅର୍ଧ-ମଂଡଳ,
ବର୍ତ୍ତୁଳିତ-ପ୍ରାଂତ ତଂବରୁ କ୍ରମେ ଦିଶେ ସୁଂଦର ।
ଉଠିଆସେ ବିଂବ, ଅଳପ ଲାଗି ରହିଲା ନୀରେ;
ହାଟକ-କଳସ ଭାସିଲା ଛୁଇଁ ମୁଖେ ସାଗରେ ।

ଛିଡ଼ିଲା ଚମକେ କଳସି-କଂଠ, ଉଠିଲା ବିଂବ,
ଡେଇଁପଡ଼ି କିବା ରଭସେ ରବି କଲେ ଗରବ ?
ହାଟକ-ତରଂଗ-ବିତାନେ ନୀଳ-ସାଗର-ନୀର,

ସିଂଧୁ-ମଥାମଣି ପରାଏ ରବି-ଖଂଡ-ଶରୀର
ରହିଗଲା, ଏଣେ ଉଠିଲେ ଭାନୁ ଗଗନ-ଚୂଳେ,
ସ୍ୱର୍ଣ-ଖଂଡ ଭାସି ରହିଲା ନୀଳ-ଜଳଧି-ଜଳେ ।
ବାଳୁତ-ନୟନେ ବୁଝିଲି ନାହିଁ ବିଜ୍ଞାନ ଗଣି,

୪୦

ଚାଲ ଚାଲ ବାପା, ଜଗତେ ଏହି ଜୀବଂତ ଗୀତି ?
ବାଳୁତ ବୟସେ କିପାଁଇରେ ଜାଣି ପାଇବ ଭୀତି ।
ଏବେ ବି ବାଳକେ ସେ ଛବି ଝୁରି ହୁଅଇ ଗୁଣି ।
ବାଟ ଭାଂଗି ଚାଲ, ତଟିନୀ-ମୁଖ-ବିସ୍ତାର ଏଡ଼ି,
ବଂତ-ମୂଳେ-ମୂଳେ କୋମଳ-କୁଶ-ଅଂକୁର ମାଡ଼ି ।
ହେଳାରେ ନ ମାଡ଼ ତଟିନୀ-ଚଳ-ପାବନ-ନୀର;
ଇତିହାସେ ଗଢ଼ା ଏହାର ପରା ପୁଣ୍ୟ ଶରୀର !

କୋଣାର୍କ-ତୁଂଗିମା ବହିଲା ପରା ହୃଦେ ଏ ଧାରା !
ନରସିଂହେ ବହି ଆଦର, ବୁଲି ଆସୁଛି ପରା !
ଚଂଦ୍ରଭାଗା ପରା ଏହାରି ପୁଣ୍ୟ-ତୀର୍ଥ-ଦୁହିତା !
କଳି-ସୁରଧୁନୀ ଏହାରି ପରା ଜୀବଂତ ମାତା !

ବିରସ-ବିହାରେ ଏହାରି ଜଳେ ସେ ନରସିଂହ
ଖୋଜି ଦେଖୁଥିଲେ କୋଣାର୍କେ ମାୟାଦେବୀ-ବିଗ୍ରହ ।
ସେ ବିହାର-ଫଳେ କୋଣାର୍କ ହେଲା ନଦୀ-ଗରଭେ;
ମାୟା-ରୂପେ ଛାୟା ପରା ହେ ଏଥି ରହିଲେ ଭବେ !
ଏକାମ୍ର-କାନନେ ଭେଟିଲେ ସେହୁ ରାଜକୁମାର;
ପ୍ରଣୟ-ଗରବେ ବରିଲେ ସୁଖେ ଅଂତିମ କାଳ ।
ଶୁଣିନାହଁ ବାପା ସେ କଥା, ଘରେ କହିବି ଗଲେ,
ସେ କୀରତି-ଗାଥା ଅଳପେ କୁଳଗୃହ ମହଲେ ।



('କୋଣୋର୍କେ' କାବ୍ୟର ସଂପାଦିତ ଅଂଶ)

# କୋଣାର୍କ

ଡ. ମାୟାଧର ମାନସିଂହ

ହେ କୋଣାର୍କ ବିଗତ-ଯୌବନା
ମୌନ-ଦୁଃଖେ ସୈକତ-ଶୟନା !
ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ଗୋ ବିମୁଗ୍‌ଧ ନୟନେ
ଚାହେଁ ବିଶ୍ୱ, କରୁଣାରେ ତେଜି ଅଶ୍ରୁ ତୋ ଦୁଃଖ-ଶୟନେ ।
ଜଗତର ଶିଳ୍ପୀ-କବି ରୂପ-ରାଗ ଦେଖି ତୋହଠାରେ
ଆଶ୍ଳେଷ ଇଚ୍ଛଇ ତୋର ବୃଦ୍ଧ ଦେହେ, ଶୋଭା ପିପାସାରେ ।
ଅଙ୍ଗେ ଅଙ୍ଗେ ଚୁମ୍ବିବାକୁ ନିରବଧି କରଇ ଭାବନା
ତୋହରେ ଗୋ ଗତ-ଯଉବନା ।୧ ।

ଅନିନ୍ଦିତେ, ହେ ବେଳା-ଶୋଭନେ,
ଯେବେ ତୁମ୍ଭେ ଉଠିଲ ଗଗନେ
ଭେଦିଣ ସହସା ନଦୀ-ନୀଳ-ବେଣୀ ସ୍ୱର୍ଣ୍ଣ-ସଇକତ
କ୍ଷୀରୋଦ ପ୍ରଶାନ୍ତ ଗର୍ଭୁ ବିଶ୍ୱରାମା ବିଷ୍ଣୁ-ପତ୍ନୀବତ
ଅତର୍କିତ ଫିଟିଥିବ ଏ ଦେଶର ଅୟୁତ ଲୋଚନ
କୋଟି ହସ୍ତ ବଦ୍ଧହୋଇ କରିଥିବ ତୁମ୍ଭରି ବନ୍ଦନ –
"ଜୟ ସ୍ୱର୍ଗନିବାସିନୀ ଅବତର୍ଣ୍ଣା ମର୍ତ୍ତ୍ୟ ବିଭୂଷଣେ
ରୁକ୍ଷ ବିଶ୍ୱେ ଶୋଭା ବିତରଣେ ! ।୨ ।
ବାରଶତ କବି କଳ୍ପନାରେ
ଜଗତର ବୁଦ୍ଧି ଅଜଣାରେ
ଅଜ୍ଞାତ ରହସ୍ୟମୟ ଶଇଶବ ଯାପିତ ତୋହରି
ସେ ଦିନ ଚକିତ ଦୃଷ୍ଟି ବିଶ୍ୱର ଗୋ ପଡ଼ିଲା ତୋ'ପରି

ଯୌବନ-ଲାବଣ୍ୟ-ଲୀଳା ଖେଳୁଅଛି ଅଙ୍ଗେ ଅଙ୍ଗେ ତବ
ଫୁଟିଉଠେ ଦେହେ ଦେହେ ସୁଲଳିତ ଅଙ୍ଗ-ସଉଷ୍ଠବ ।
ମନ୍ତ୍ର ଶିଖି ଆସିଥିଲ ମନ-ଜୟେ ମନର ସେ ପାରେ
ବାରଶତ କବି କଳ୍ପନାରେ ।୩ ।
ସହସା ହୋଇଲା ବିମଳିନ
ନଭେ ନଭେ ହୋଇଲା ବିଲୀନ
ଅଗଣିତ ତାରକାର ଦିବ୍ୟ ଜ୍ୟୋତି ରଜତଧବଳ,
ଲାଜେ ଲାଜେ ବ୍ୟୋମପଟେ ଲୁଚିଗଲେ ଶୀତାଂଶୁ ଶୀତଳ,
ଦୂର ନଗମାଳା ହେଲେ ଭକ୍ତି-ଭୟେ ଚକିତ-ପୁଲକ
ପଦ-ଚୁମ୍ବୀ ମହାସିନ୍ଧୁ ଗାଏ ସ୍ତବ, ଲହରୀ ଅଳକ –
"ହେ ଚାରୁଭୈରବକୀର୍ତ୍ତି ମନୁଷ୍ୟର, ମଣ୍ଡ ମୋ ପୁଳିନ
ଧନ୍ୟ ହୁଏ ତୋହରେ ସେବିଣ ।" ।୪ ।
ପୌର୍ଣ୍ଣମାସୀ ଶୁଭ୍ର ହାସ୍ୟ ତଳେ
ଧବଳିତ ସମୁଦ୍ର-ଲହରେ
ତାଳେ ତାଳେ ଲାସ୍ୟେ ମାତି ଜଳଦେବୀ ଗାଇଲେ ତୋ କଥା
ଓଷଧୀଶ ଜ୍ୟୋତ୍ସ୍ନାପୁରେ ସିକ୍ତ କଲେ ତୋ' ତରୁଣ ମଥା,
ତୋର ମୌନ କଟାକ୍ଷରେ ବ୍ୟୋମଚାରୀ ମାର୍ଗେ ହୋଇ ମୂଢ଼
ଅବତରି, କର୍ଣ୍ଣେ କର୍ଣ୍ଣେ କହିଗଲେ ବାରତା ନିଗୂଢ଼ ।
ଅପ୍ସରୀ ବନ୍ଦିଲେ ତୋତେ ସ୍ୱର୍ଗୁଁ ଆସି କୌମୁଦୀକଲ୍ଲୋଳେ
ପାରିଜାତ ପୁଷ୍ପ ଉପହାରେ ।୫ ।
ଜୀବନର କେତେ ଲୀଳାଖେଳା
ଅଙ୍ଗେ ତୁହି ଧରିଲୁ ଛବିଳା,
ଶିଖିଲା ତୋହଠୁଁ ରାଜା ଶତ୍ରୁ ମୁଖେ ଯୁଦ୍ଧ ଅଭିଯାନ,
ପାତ୍ର ମନ୍ତ୍ରୀ ରାଜା ପାଶେ କରିବାର ଯୁକ୍ତ ମନ୍ତ୍ରଦାନ ।
ପ୍ରେମିକ ପ୍ରେମିକା ଆସି ତୋହଠାରୁ ଶିଖିଲେ ଆଶ୍ଲେଷ
ବୀର ପୁଣି ଯୁଦ୍ଧଭୂମେ ଅରି ସହ କୌଶଳ ବିଶେଷ
ବେତ୍ରହସ୍ତ ଅବଧାନେ ଚାଟଶାଳେ ଶାସିବାର ପିଲା
ହେ ପାଷାଣି ! ତୋଠାରୁ ଶିଖିଲା ।୬ ।

ବିଶ୍ୱ ଯେତେ ବିକାଶ ରୂପର
ଯେତେ ରୂପ-ବିଳାସ ଚିତ୍ତର
ପ୍ରକୃତିର ଅଙ୍ଗେ ଅଙ୍ଗେ ସୁଷମାର ଯେତେକ ପ୍ରକଟ
ମାନବର ମନେ ମନେ ସୁଷମାର ଯେତେକ ସଂଘଟ
ତୋତେହିଁ ପାଷାଣ କବି, ଅତି ସ୍ନେହେ ନିବେଦିଲେ ବସି
ଅନନ୍ତ କବିତାଧାରା ନିହିଲେ ସେ ତୋ ଦେହ ପରଶି ।
ପ୍ରସ୍ତରେ ପ୍ରସ୍ତରେ ତୋର ସୁନିହିତ କବିତା ସଂହାର,
ହେ ପାଷାଣ-କବିତା-ଝଙ୍କାର ।୭ ।

ସଉଧ କୁଟୀର ଶତ
ଉପହାର ପୁଷ୍ପହାର ବତ
ତୋତେ ଘେରି ତୁଙ୍ଗ ଶିର ସର୍ବେ ଗର୍ବେ ଟେକିଲେ କ୍ଷଣକେ
ବିଶାଳ ନଗରୀ, ସିନ୍ଧୁ-ଭାଲଟୀକା ହସିଲା ପୁଲକେ ।
ଦିଗ୍‌ବିଦିଗୁଁ ସିନ୍ଧୁ ଡେଇଁ ଭକ୍ତି ଭରେ ନୁଆଁଇଣ ପାଲ
ଆସିଲେ ବହିତ୍ରପନ୍ତି ପୂଜି ତୋତେ ଅଙ୍କ ହେଲା ଆଲୋକିତ,
କକ୍ଷ ତୋର ଜ୍ୟୋତିରେ ଚକିତ ।୮ ।

ରାଜା ତେଜି ପ୍ରାସାଦ-ବିଭବ
ତୁଳିତଳ୍ପ ସୁଖ-ଅନୁଭବ,
ଜାନୁପାତି-ତୋର ମୁଖେ ଚାହିଁ ଚାହିଁ କଟାଇଲେ ଦିନ,
ସନ୍ନ୍ୟାସୀ ତୋ ପଦତଳେ ତପ କରି ତନୁ କଲେ କ୍ଷୀଣ,
ଦେଖୁ ଦେଖୁ ସମାଗତା ନାରୀ, ପଦ କିଙ୍କିଣୀ-କଂପନେ
କଲେ ମୁଖରିତ ଦିନେ ବକ୍ଷ ତୋର, ଲାକ୍ଷାରସ ବର୍ଣ୍ଣେ
ରଂଜିଲେ ମଧୁରେ କରି ଭୂମି ତୋର ଶୋଭାର ଉତ୍ସବ
ଲଜ୍ଜା ଦେଇ ପୁଷ୍ପ ବଇଭବ ।୯ ।

କ୍ରୁଦ୍ଧ ହେଲା କୀର୍ତ୍ତି-କୀଟ କାଳ
କ୍ରମେ ହେଲା ପ୍ରକୃତି କରାଳ,
ଗଉରବ-ଅସହିଷ୍ଣୁ ବୁଲାଇଲେ ନୟନ ରକ୍ତିମ
ସୁକୋମଳ ଗ୍ରୀବା ତୋର ତ୍ରସ୍ତ ଭୟେ ହୋଇଲା ବଙ୍କିମ,

ଯାଦୁକରୀ ହାସ୍ୟ ତୋର ସେ ନିଷ୍ଠୁର କରୁଣାର କଣ
ନପାରିଲା ଉପୁଡ଼ାଇ; ଚୂର୍ଣ୍ଣ କଲେ କ୍ରୂର-ପ୍ରହରଣ ।
ବିଶ୍ୱ ଦେଖେ ଆଜି ମାତ୍ର ସେ ଶୋଭାର ଖଣ୍ଡିତ କଂକାଳ
ଲାବଣ୍ୟର ନଷ୍ଟ ଅସ୍ଥିମାଳ ।୧୦ ।
ତେବେ ହେଁ ସେ ଅସ୍ଥି ଭେଦି
ତରୁଣର ଜ୍ୟୋତି ପଡ଼େ ଭାଜି,
ପକ୍ୱକେଶେ ଜୀର୍ଣ୍ଣବେଶେ ତେବେ ହେ ଗୋ ଯୌବନର ବିଭା
ଫୁଟିଉଠେ, ସାୟନ୍ତନ ଘନ ପରେ ଅସ୍ତରାଗ କିବା ।
ବିମୁଗ୍ଧ ସଂସାର ତୋର ପାଦତଳେ ଅଦ୍ୟାପି ସୁନ୍ଦରି ?
ସମ ଦୁଃଖେ କାନ୍ଦିଥାଏ, ବ୍ୟାକୁଳିତ, ଆପଣାର ପରି ।
ଆୟୁଷ କଲ୍ୟାଣ ପାଇଁ ଲଭେ ବିଶ୍ୱ ସୁଆଶିଷରାଜି
ତେବେ ହେଁ ତୋ' ଅସ୍ଥିରାଜି ଆଜି ।୧୧ ।



('କୋଣାର୍କ' କାବ୍ୟର ସଂପାଦିତ ଅଂଶ)

# କୋଣାର୍କର ଲାସ୍ୟଲୀଳା

ଡ. ମାୟାଧର ମାନସିଂହ

## ସ୍ପନ୍ଦନ

**ଜ୍ୟୋସ୍ନା –**

ହେ ପାଷାଣି, କିବା ଜାଣି ଅଛ ଲାଜ-ବସନା,
ତବ ସଖୀ ଆସିଲି ଯେ ଜ୍ୟୋସ୍ନା ମୁଁ ଜ୍ୟୋସ୍ନା ।
ନିରଜନ ଶୂନ୍‌ଶାନ୍ କେହି ନାହିଁ କୁଆଡ଼େ,
ମୂକ ନାରୀ ଆସଭାରି, ଉଲ୍ଲାସ ହିୟାରେ ।
ସଂଗିନୀ ରଂଗିନୀ ଚିର ମୁହିଁ ତମର,
ଏକ ମୋର ନିଶୀଥରେ ଖୋଲ ତମ ଘୁମର ।
ଜନମରୁ ରମ୍ଭୋରୁ ସଂଗିନୀ ମୁଁ ତବ,
କପୋଳରେ ତବ ଢାଳେ ଚୁମ୍ବନ-ବିଭବ ।
ଦୁହିଁଙ୍କର ଜନମର ଥନ ରୂପ-ସାଗର,
ତେଣୁ ଚିର ସୋଦରୀର ବଂଧନ ଆମର ।
ମୂକ ଆମେ ଲୋକ ଜାଣେ ଭାଷା ନାହିଁ ମୁଖରେ,
ମିଥ୍ୟା ତା, ବର୍ତ୍ତିକା ଜଳେ ଆମ ବୁକରେ ।
ଆସ ଆସ ଶିଳା-ବାସ ତେଜି ଆଲୋ ଅଳସୀ,
ଖଣ୍ଡନ ବନ୍ଧନ କର, ବେଳା ବିଳସି ।

**ପ୍ରଥମ ବିଗ୍ରହ –**

କେ ଅଛ ଲୋ ଖୋଲ ଖୋଲ ଓଢ଼ଣା ସରମର,
ଜୋଛନା ଯେ ଡାକେ ଆସି ଦୁଆରେ ମରମର ।
ପୂର୍ନିମା ଜହ୍ନମା ଛୁଇଁ ଦେଉଁ ନରମେ,
ଚାଉଁକିନି ଚମକିଲି, ଜୁଡ଼ା ଖସେ ଚରମେ ।
ଧୀରେ ଧୀରେ ମୋ ଆଖିରେ ମେଲାଇଲି ବେଳାରେ
ଜନତାର ସଂଚାର ନ ଦେଖିଲି କେଆଡ଼େ ।

ତେଣୁ ସଖି ଦିଏ ଡାକ— ଜୋଛନାରେ ଖେଳିବା,
ଉଠ, ଉଠ, କିପାଁ ମଠ ? ନାଟପୀଠେ ଚଳିବା ।
ଉଠ ସଖି ଲାଜ ରଖି, ଚରଣ ସଂଚାଳ ଗୋ,
ମୁରଲୀରେ କରେଁ ଧୀର ମରମ ସଂଚାର ଗୋ ।
ଅପଘନ— ଛନ୍ଦରେ ବନ୍ଦନା ରଚନା,
କରି, ଦେବେ ବନ୍ଦିବା ଆମେ ଚାରୁ-ଲୋଚନା ।
ବାଣୀ ଫୁଟୁ ମୋ ବେଣୁର ପାଷାଣର ବକ୍ଷେ
ତନୁଲତା ଉଠୁ ଦୋଳି ରୂପ-ହୋମ ଲକ୍ଷ୍ୟେ ।
ଦ୍ୱିତୀୟ ବିଗ୍ରହ —
ସହି କି ଲୋ, ଡାକ ତୋର ବଁଚାଇଲା ସତେ ଲୋ,
କି ଅସଜ ଏ ମୁରଜ ଧରି କଟୀ ତଟେ ଲୋ ।
କିଏ ସେ ଲୋ ବଲ ବଲ କରି ଆଜି ଚାହିଁଲା ।
ଧୀରେ ମୋର ବକ୍ଷର ବୃନ୍ତରେ ଛୁଇଁଲା ।
କେଶ ପାଶେ ଆଉଁସିଲା, ଲସାଇଲା ମରମ,
ଗଣ୍ଡରେ ଚିପି କରେ ଜନ୍ମାଇ ଘରମ ।
ସେ ସରମେ ମନେ ମନେ ମରିଗଲି ସଖିରେ,
ଅଛି ଦେଖି ପାଖ ସଖୀ ସବୁ କଥା ଆଖିରେ ।
ଜୋଛନାରେ ଥରଥର କୋଳେ ମୋର ମୂରଜ,
ରହି ରହି ଗୁମୁରଇ ସ୍ପନ୍ଦାଇ ଉରଜ ।
ମୃଦଙ୍ଗ— ଅଙ୍ଗେ ମୋ ପ୍ରାବୃଟ ମେଘ ଗୋ,
ଆଶ୍ରିଛି ଦେବତାର ତୋଷେ, ଥିର-ବେଗ ଗୋ ।
ଆସ ଆସ ଅର୍କର ଆଲୋକ ଅପ୍‌ସରୀଏ,
ମୋ ମାଦଳ ତାଳେ ତାଳେ ନାଚ ବେଳା ଭରି, ଏ ।
ତୃତୀୟ ବିଗ୍ରହ—
କା’ ବଚନ କଂକଣ ଧ୍ୱନି କାହା କରର
ଶୁଭେ ତେଣୁ ? କିପାଁ ରେଣୁ ଥରେ ପୀଠ-ତଳର !
ଡାକି ବୁଝେଁ— “କାହା ଭୁଜେ କଂକଣ ବାଜେ ଲୋ,
ଜୋଛନାରେ ମଦ ଭାରେ ଛାଡ଼ିଲା କେ ଲୋକେ ଲୋ ?”

ପ୍ରଥମ ବିଗ୍ରହ—

ଆମେ ସହି ଶ୍ୟାମା, ମୁହିଁ ଆସ ଏଣିକି,
ଆଣ ଡାକି ବାକି ସଖୀ ବାଣୀ ଆଉ ରାଣୀକି ।
କୁସୁମାକୁ ଆସିବାକୁ ଡାକ ଦେ ଲୋ । ଉତଳ,
ଜୋଛନାର ସଂଚାର ପାଣି କରେ ପଥର ।
ତାହାଁକର ପାଷାଣର ଦେହ ନିକି ଥରେ ଲୋ,
ଆଣିଲା କେ ଯାଁକ ଲାଖେ ନୀରସା ଏ ଥଳେ ଲୋ ?
ଡାକିଆଣ ଆଖି-ବାଣ ଛାଡ଼ିବେ ଏ ବେଳାରେ,
ଦିନ-ଯାକ ରହି ମୂକ ସଢ଼ିବା କି ହେଳାରେ ?
ନିଶୀଥିନୀ କିଂକିଣୀ- ନାଦେ ହେଉ ମୁଖର,
ବେଳାଭୂମି, ପରଣମି ଚୁମିବ ଶ୍ରୀ ପଦର ।

ଦ୍ବିତୀୟ ବିଗ୍ରହ—

ଜାଗ୍ରତ ମୁଁ ଯେ ସଖି ବିନା ଡାକେ । ଥରେ, ଯେ
ଜୋଛନାର ଚୁମ୍ବନେ, - ଅଜ୍ଞାତ ଡରେ ଯେ ।
ହେଲା ବେଳ ଚଂଚଳ ଆରମ୍ଭ ବରଣ,
ତାଳ ପାଇଁ ଅସ୍ଥିର ମୋର ଦୁଇ ଚରଣ ।
ଆସ ନଟୀ ସଂଘଟି ସୁଷମାର ଆରତି,
ଶୂନ୍ୟ ଏ ବେଳା କର ସୃଜନରେ ଭରତି ।

ଚତୁର୍ଥ ବିଗ୍ରହ—

ମଲା ମଲା, ପାଖେ ଥିଲା ଲୋକ ମତେ ପୁଛନା,
ଦୂର ଜନେ କି କାରଣେ ଏତେ ସମ-ଶୋଚନା ।
ଚାଲ ସଖି ଆଖି ଆଖି ମିଳାଇବା ସକଳେ,
ଦିନ-ଯାକ ରହି ମୂକ ଦେହ ଜଡ଼ ବିକଳେ ।
ଚନ୍ଦ୍ରର କାନ୍ତ ଏ କର, ଛୁଇଁ ଦେହରେ,
ବନ୍ଧନ— ଭଂଜନ ଘଟାଏ କି ସ୍ନେହରେ ।
ଆଜି ସଖି ଦେଖିନ କି ବହୁ ଆଖି ନିରେଖି,

ଚାହିଁବାର ବାର ବାର ଛୁଇଁବାର କି ଦେଖି ?
ସେ ପରଶେ ଲାଜବଶେ ହୋଇଥିଲି ଜଡ଼ ଲୋ,
ବକ୍ଷ, ଅ— ଲକ୍ଷ୍ୟରେ ଭୟ ହେଲା ବଡ଼ ଲୋ ।
ଏବେ ଚାଲ ଜ୍ୟୋସ୍ନାର ସାଥେ ରାସ ରଚିବା,
ନିଶୀଥରେ ନଭ ତଳେ ପ୍ରାଣ ଭରି ନାଚିବା ।
ଆସ ଯେତେ ସଂଗିନୀ ଆନନ୍ଦରଂଗା,
ବାରଶତ ଶିଳ୍ପୀର କଳ୍ପନା-ଗଂଗା ।
ସବିତାର କବିତାର ପ୍ରସ୍ତର-ସ୍ୱପ୍ନ,
ଦେବତାର ଚାରି ପାଶେ ବିଶ୍ୱର ରତ୍ନ ।
ପ୍ରସ୍ତର— କବି ଚିତ୍ତୁଁ ନାଚୀଏ ଉତ୍ତୀର୍ଣ୍ଣା,
ଦେବତାର ତୋଷେ ଚିର ଲଳିତ, ଉଦ୍‌ବିଗ୍ନା ।
ନାଚି ନାଚି ଯୁଗ ଯୁଗ କ୍ଳାନ୍ତି ତ ନାହିଁରେ,
ଏ ଜୀବନ ନିବେଦିତ ଦେବତାର ପାଇଁରେ ।
ଆନନ୍ଦ- ଦାତ୍ରୀରେ ଲାବଣ୍ୟ-ଗାତ୍ରୀ,
ବନ୍ଦିବା ଦେବତାରେ ପୁଣି ଆଜ ରାତ୍ରି ।

## ଉଦ୍‌ଯୋଗ

କ୍ଷଣକର ପାଷାଣୀୟ
ପାଷାଣର ପୀଠରେ
ବଜାଇଲେ ନୂପୁର;
ମୃଦୁ ମୃଦୁ ହସ ମୁଖେ;
ଅଳସ ତ ଛାଡ଼ିନି,
ରସାଣିତ ବପୁର ।
ଅପର ଅପର ଦେହେ
ଦେହ ଢାଳି ଅଳସେ
ଚଳାଇଲେ ଚରଣ,
ସହସା ସେ ନିରଞ୍ଜନ
ମନ୍ଦିର ଧ୍ୱନିଲା
ଚଳ-ପଦ-ଭୂଷଣ ।

ଜ୍ୟୋଛନା-ନୀରବ-ବାଣୀ
ଲୁଚକାଳି ଖେଳଇ
ପାଷାଣିଁକ ଅଙ୍ଗେ,
ସେ ପରଶେ ମୂକ, ଜଡ଼
ଶିଳା ଉଠେ ଚମକି
ଜୀବନ୍ତ ରଙ୍ଗେ ।
ଲୀଳାମୟ ହେଲା ଶିଳା
ଶତ ଶିଳା-କୁଞ୍ଜେ,
ବିକଶିଲା ଜୀବନ;
କୁନ୍ଦିତ ବିଗ୍ରହେ
ସ୍ପନ୍ଦିତେ ଜାଗିଲେ,
ଫିଟାଇଲେ ନୟନ ।
ସ୍ୱନେ ଘନ ରଣଝଣ
ପାଷାଣର ଭୂଷଣ,
ଦୋଳେ ଅବତଂସ,
ସଖୀ ଗଳେ କର ଥୋଇ
ଆଡ଼ ଆଖେ ଅନାଇ
ପରଖିଁତି ପରଶ ।
କୁଞ୍ଜରଗତି ଶତ
କ୍ରମେ ହେଲେ କୁଞ୍ଜୁ
ଧୀରେ ଧୀରେ ବାହାରେ,
ଅଞ୍ଜଳିରେ କା' ଧୂପ,
ବୀଣା କାର ଉରଜେ
ମୁରଜ ବା କାହାର ।
ଶୁଭେ କଥା ତୁନୀ ତୁନୀ
"କାହିଁ ଗଲେ ଆଉ ଗୋ,
ଶ୍ୟାମା କେଉଁ ଉହାଡ଼େ ?
ନାଟପୀଠେ ଯିବା ଚାଲ,
ନାଟ ତାଳେ ନକଲେ
ମନ ନାହିଁ କୁଆଡ଼େ ।"

ଆନ ବୋଲେ "ପ୍ରିୟ ଚିର
ଧରିଛନ୍ତି ବାହୁରେ,
ଅଙ୍ଗ ମୋ ଅଳସ,
ପଦ ମୋର ଖଳ ଖଳ
ନାଚିବାରେ ହୁଏ ଲୋ
କାଖେ ଧରି କଳସ ।"

ଆନ କହେ "କେତେ କାଳ
ଦୀବ ଖାଲି ଧରିବି
ରହି ଏକ ଥାନରେ,
ନରକରେ ପଡ଼ି ସତୁ
ଶିଳ୍ପୀ, ଯେ ନ ଦେଲା
ରସ ମୋର ପ୍ରାଣରେ ।"

"ପାଖେ ମୋର କୁଞ୍ଜରେ
ଦେଖେ ନିତି ତରୁଣ,
ଚୁମ୍ବଇ ତରୁଣୀରେ,
ଭାଗ୍ୟେ ମୋ ନାହିଁ ତାହା !
କି ଭିନ୍ନ ଜନମି
ଦୁହେଁ ଏକ ଖଣିରେ !"

ଆନ ବୋଲେ "ତୁମେ ଯାଅ,
ନାଚ କର ସହିଲୋ
ନାଚି ମୁଁ ତ ଅଥିର,
ନିତ୍ୟ ମୁଁ ନାଚକର
କ୍ଷୀଣ ହେଲା ଚରଣ
ବକ୍ଷ ମୋ ଶିଥିଳ ।"

ଆନ ବୋଲେ "ସାର୍ଥକ
ଜୀବନ ମୋ ସଜନୀ
ବୀଣା ମୁଁ ଯେ ବଜାଏ
ମୁଁ ତ ଶୁଣେ, ଶୁଣେ ପ୍ରିୟ,
ଶୁଣେ ପୁଣି ଦେବତା,
ରମ ମୋ ହଜାଏ ।"

ଆନ ବୋଲେ "ଦେଖ ସଖି,
ରସିକ ସେ ଶିଳ୍ପୀ
ପ୍ରିୟ ଶୁକେ ଉରଜେ
ଲଗାଇ ଦେଇଛି, ଶୁକ
ପାନ କରେ ବକ୍ଷ
ସୁଜି ମଧୁ-ଦରଜେ।"
ଆନ ବୋଲେ, "ଯୁଗ ଯୁଗ
ସଖୀ ମୋର ଯତନେ
ବାଁଧୁ ଅଛି କବରୀ,
ଧରି ଅଛି ଯୁଗ ଯୁଗ
ଦରପଣ ମୁଖକୁ
ଆଉ ଏକ ନାଗରୀ।"
ଆନ କହେ, "ଶିଳ୍ପୀ ସେ
କରିଅଛି ପୃଥୁଳ
କେଡ଼େ; ସଖି, ଜୁଡ଼ାରେ,
ପୀନ ପୁନ ବକ୍ଷ ଲୋ।
କ୍ଷୀଣ କଟି ବହିବ
କେସନେ ଏ ଭାରାରେ।"
ଆନ କହେ "ଚରଣରେ
ପିଂଧିଥିଲି ମଲ ଯା'
ଛିଡ଼ିଲାଣି ଥାନକେ,
ଯତନରେ ପଦ ଧରି
ପରମ
ପିଁଧାଇବ ଆନ କେ।"
ଆନ ବୋଲେ "କା'ର, କା'ର
ଯୌବନ କିଛି ବା
ଅଙ୍ଗରୁ ଖସଇ,
କଦମ୍ବ ତଳେ ଠିଆ
ତନ୍ୱୀର ବପୁରେ
ବୟସ ନପଶଇ।"

କେ ବୋଲଇ "ଏ କି ମଜା
ମୂକ ହେବା ଦିବସେ,
ଚେଇଁବା ରଜନୀରେ,
କେ ଜାଣଇ ଅଛି ପ୍ରାଣ
ପାଷାଣ ଏ ଅଙ୍ଗେ
ପାଷାଣ ଧମନୀରେ ।"

"କେତେ ଶତ ଯୁଗ ଗଲା
କେହି ତ ନଜାଣିଲେ;
ଜଣା ଖାଲି ଆମରେ,
ଭଲ କଥା, —ଜଣାଗଲେ
ରଖିବେ କି ଆମକୁ
ନରେ ରୂପ-ପ୍ରେମରେ ?

"ଜାଣିଲେ ଫିଟାଇ ଶିଳା
ଦଳି ଦେବେ ନାହିଁକି
ବର୍ବର ତୃଷାରେ
ଭଲ, ଆମେ ଅଜ୍ଞାତେ
ରୂପ ରଖି ପାଇଛୁ
ପାଷାଣର ଭାଷାରେ

"ମନେଅଛି ସେ ଦିନ କି
ବହୁ ଯୁଗ ତଳେ ଲୋ
ସନ୍ଧ୍ୟାର ଆଲୋକ
ଶିଳ୍ପୀ ଯେ ଦିନ ମତେ
ଗଢ଼ି ସାରି ଯତନେ
ନିରେଖିଲା ପୁଲକେ ।

"ଚାହୁଁ ଥାଏ, ଥୋଉଥାଏ,
ନାହିଁ ପାରେ ଛାଡ଼ି ସେ
ମାଜିଦିଏ ଲପନ,
ସଖାମେଳେ ଫେରୁଥାଏ
ଚାହୁଁଥାଏ ପଛକୁ
ମତେ, —ତା'ର ସ୍ୱପନ ।

"କି କାଳ ସେ ଗଲା କାହିଁ
କୋଳାହଳ, ଜନତା,
ଅହରହ ମୁଖର,
ଯାଇଛି ତା' ଭଲ; —ସଦା
ଆଖିତଳେ ରହିବା
ନିକି ଦୁଖ ରୂପର ?"

"ଚାଲ, ଚାଲ ବୋଲେ ଆନ,
ଜୋଛନା ଯେ ବଢ଼ିଲା,
ଅଥୟ ଲୋ ପରାଣ
କେତେ ଘଡ଼ି ମୁକ୍ତିରେ
ମାଟି କରି ଦେବା କି ?
ଚାଲ, ଚାଲ, ମୋ' ରାଣ !

## ନୃତ୍ୟ

ନାଟ-ମନ୍ଦିରେ ମନ୍ଦ୍ର ମୂରଜ ଧ୍ୱନଇ
ଶତ ଶତ ଶିଳା ପଦଥରେ, ନାଟ- ପ୍ରଣୟୀ ।
ବଂଶୀ, ମୂରଜ, ବୀଣା, କରତାଳ, କାହାଳୀ,
ଖଞ୍ଜଣୀ, ମନ ରଞ୍ଜିଣୀ ଅବା କାହାରି ।
ବଜାଇଲେ, ଚିତ୍ତ ହଜାଇ ଯେତେ ସେ କାମିନୀ,
ପୂର୍ଣ୍ଣ ହୋଇଲା, ଶୂନ୍ୟ ଜୋଛନା- ଯାମିନୀ ।
ଶୂନ୍ୟ ବିଜନ ମନ୍ଦିର ଧୀରେ ଜିଇଁଲା,
ତପ୍ତ ରୁଧିର ପାଷାଣେ ଯେସନ ବହିଲା ।
ପୀବରବକ୍ଷା କ୍ଷୀଣମଧମା କାମିନୀ,
ସୁଢ଼ଳ ଜଘନ ଚାଲିଲେ ଯେହ୍ନେ ଦାମିନୀ ।
ପୃଥୁଳ ଜୁଡ଼ାର କୁସୁମର ଭାର ଖସିଲା,
ଥରା ଉରଜରୁ ମାଳା, କାଂଚଲା ଲସିଲା ।
ରଖି ଧୀରେ ଧୀରେ ନୃତ୍ୟେ ରଚିଲେ ଆରତି ।
ଦୋଳଇ କର୍ଣ୍ଣ- ଦୋଳକ, ଖେଳଇ ଚିକୁର,
ଅତୁଳ-ଚରଣ- ରୁଣିତ-ନୂପୁର ଆକୁଳ ।

ଅଧରେ ନ ଧରେ ସ୍ମିତ ରେଖା, ଆଖି ଝଲକେ,
ବର ଭୃଙ୍ଗ ଖର ଟଳଇ ପଲକେ ପଲକେ ।
ବନ୍ଧନ ହୀନ ଆନନ୍ଦ ବର୍ତ୍ତୁ ତୁରିତେ,
ଗାଇଲେ ସକଳେ ଛନ୍ଦେ, ଆପଣ ଚରିତେ ।
"ଅପସ୍ୱରୀ ଆମେ ପୁଷ୍ପ-କୋମଳ- ଧରମା,
ପାଷାଣ-ବାହାର, ଭିତରେ ରମ୍ୟ- ମରମା ।
କଳ୍ପଲୋକରୁ ଆମେ ରମ୍ଭୋରୁ ଧରାରେ,
ବିଗ୍ରହ ନେଲୁ ଅବତରି, ଟାଣ ଶିଳାରେ ।
ଖାଲି ସହସ୍ର ଶିଳ୍ପର ଆରା- ଧନାରେ,
ଘନୀଭୂତ ଆମେ ତାଙ୍କରି ଅର- ଚନାରେ ।
ସେ ନାହାଁନ୍ତି ଆଜି ନାହାଁନ୍ତି ଦେବତା ଦେଉଳେ,
ନ ଆସନ୍ତି ନିତି ଦରଶନେ ଏଥି ପୌରେ ।
ଗଲେ ରାଜା, ରାଣୀ, ଲୁଚିଗଲା ରାଜ- ବିଭବ,
ସମ ସମୟର କିଛି ନାହିଁ; କହି କି ହେବ ।
ଆମେ ଅଛୁ ଖାଲି ବାଲି ପ୍ରାନ୍ତରେ ଅଂଗେ,
ଧରି ଚିରକାଳ ଚିର ନବରୂପ ରଂଗେ ।
ଅମା ଯେ ଆମେ ମାନସ ଲୋକର ସୃଜନା,
ସ୍ଥୂଳ ଧରଣୀର ମୃତ୍ୟୁ ଆମରେ ଅଜଣା ।
ଯୁଗ ଯୁଗ ଧରି ବିଗ୍ରହେ, ତେଣୁ ରୂପରେ;
ଆମର ଏ ଲୀଳା କଠିନ ଏ ଶିଳା- ସ୍ତୂପରେ ।
ଜଗତ ଜାଣଇ ମୂକ ଆମେ ଟାଣ ପଥର,
ଅଜ୍ଞ ଜାଣିବେ କାହୁଁ ଭାଷା, ରୂପ- ପାଠର ?
ସଂଗିନୀ ଆମ ଚନ୍ଦ୍ରିକା ସିନା ନୀରବ,
ତା ବୋଲି କି ନାହିଁ ତା'ର ସମ୍ଭୋଗ- ଗରବ ?
କୁସୁମେ କୁସୁମେ ଚୁମି ସେ ଥରାଏ ଯାମିନୀ,
ଥରାଏ ଲକ୍ଷ ପ୍ରଣୟ ଆକୁଳ କାମିନୀ ।

କୁମୁଦ ସଂଗେ    ନିତ୍ୟ ତା'ର ଯା    ପୀରତି,
ଜୀବନ୍ତ ନିକି    ମଉନ ବୋଲି ସେ    ଆରତି ?
ଆମେ ସେହିପରି    ଶିଳାଲୀଳା ତଳେ    ଜୀବନ
ଲୁଚାଇ ମୁଗ୍‌ଧ    କରୁଛୁ ଏ ସାରା    ଭୁବନ ।
ମର ମନିଷର    ଯା' ଅମର, ତହୁଁ    ଜନମ,
ଛୁଇଁ ନାହିଁ ପାରେ    ଆମରେ ତେଣୁ ଗୋ    ମରଣ ।
ମର ସେ ଶିଳ୍ପୀ    ଚଳିଲେ, ମରଣ    ବାଟରେ,
ଅ-ମର ସୁଷମା    ରଖିଗଲେ ଆମ    ପାଖରେ ।
ଯୁଗ ଯୁଗ ଧରି    ଜୀବନ୍ତ ତେଣୁ    ପାଷାଣ,
ରୁକ୍ଷ ବେଳାରେ    ଉଡ଼ାଇ ରୂପର    ନିଶାଣ ।
ଜ୍ୟୋସ୍ନାରେ ଆମେ    ଲୁଚକାଳି ଖେଳୁ    ସକଳେ,
ନୀରବ, ବିଜନ    ଏ ବେଳାପ୍ରାନ୍ତ    ପଥରେ ।
ହେଲା ରାସଲୀଳା    ବେଳୁ ବେଳ ଅତି    ମର,
ରୂପର ନିବିଡ଼    ସେ ଲୀଳା ଦେଖିନି    ମର୍ତ୍ତ୍ୟ ।
କବି ଲେଖନୀରେ    ଶିଳ୍ପୀ ତୂଳୀରେ    ଯାହାର,
ଯୁଗେ ଯୁଗେ ହୁଏ    ରହସ୍ୟମୟ    ବିହାର ।
ସେହି ରୂପମୟୀ    ନିଖିଳ ସୃଜନ-    ବାସିନୀ,
ମଳୟ-ବାହନା,    କୁସୁମ-ଜ୍ୟୋସ୍ନା-    ହାସିନୀ ।
ସୂର୍ଯ୍ୟ-ତାରକା-    ଭୂଷଣା, ଅଭ୍ର-    ଚିକୁରା,
ଦୂର୍ବା-ଚରଣ,    ଅନନ୍ତ-ଦିଗ-    ଦୁକୂଳା ।
ସେ ରୂପ-ଲକ୍ଷ୍ମୀ    ପାଷାଣରେ ଘେନି    ଶରୀର
ଶୂନ୍ୟ ସେ ପୀଠ    ଚଳ-ରୂପେ କଲେ    ଅଧୀର ।
ଚିଁତି ସେ ନଟନ-    ଲୀଳାରେ, କବିର    ମାନସ,
ସ୍ତବ୍‌ଧ ଚକିତ,    ବିହ୍ୱଳ, ରସ-    ଅବଶ ।



# ଶିଳ୍ପୀ-ବନ୍ଦନା

ଡ. ମାୟାଧର ମାନସିଂହ

ବନ୍ଦେ ବାରଶତ ଶିଳ୍ପୀ
ନାମହୀନ, ଧାମହୀନ ପ୍ରାଣୀ,
ଇତିହାସ ନାହିଁ ତବ,
ତବ ଲାଗି ମୂକ କାଳ-ବାଣୀ ।
ପଛେ କିଛି ରଖି ନାହିଁ
ଯାଇଅଛ ଥାପି ମାତ୍ର ଏଇ
ଶିଳାର ବିରାଟ କାବ୍ୟ,
ଏ କୋଣାର୍କ, ତବ-କୃତି-ଦେହୀ ।
କି ବଧାଇ ଥିଲ ପାଇ
ମହାରାଜା ହସ୍ତରୁ ତୁମର ?
ତୁମେ ନାହଁ, ନାହିଁ ରାଜା,
ପୁରସ୍କାର ଯାଇଛି ସଙ୍ଗତେ,
ଦେଶ, କାଳ, ନାମ, ଧାମ,
କିଛି ତବ ନାହିଁ ଏ ଜଗତେ ।
ଅଛି ମାତ୍ର ଶିଳାସ୍ତୂପ
ଯାହା ଅଂଗେ ବାରବର୍ଷ ଧରି,
ଉତପ୍ତ ଏ ମରୁପ୍ରାନ୍ତେ
ଶ୍ରମଝାଳେ ମାନସୀ-ସୁନ୍ଦରୀ,
ଖେଳୁଥିଲେ ଧୀରେ ଧୀରେ
ଶ୍ରମାମୋଦେ ଲଭି ପୁରସ୍କାର;
ସେହି ମାତ୍ର ବଁଚିଅଛି,
କାଳ-ଦନ୍ତେ କରିଣ ଧିକ୍କାର ।
ଦରିଦ୍ର କୁଟୀରେ ବସି
ଚୀର ପିଁ ଧି କବି ବାରଶତ,
କେମନ୍ତେ କଳ୍ପିଲ ମନେ
ଅପୂର୍ବ ଏ ରୂପ ଶତ ଶତ ?
ରାଜାର ଭୃତ୍ୟତା, ନିଜ
ଦୀନତାର ବହୁ ଉର୍ଦ୍ଧ୍ୱେ ଭାସି,
ହେ ସହସ୍ର କବି, ତବ
କଳ୍ପ-ସରୁ ଏ କମଳରାଶି
କେମନ୍ତେ ତୋଳିଲ ସତେ ?
ଶିଳା ଦେହେ ଦେଲ ତାହା ଲେଖି
ପାଷାଣର ଏ କବିତା,
ମୁଗ୍ଧ ବିଶ୍ୱ ପଢ଼େ ଦେଖି ଦେଖି ।
ତୁମରେ ଭୁଲିଛି ଜାତି
ସେଥିରେ ତ କ୍ଷତି କିଛି ନାହିଁ,
ଦୀନ ତବ ଇତିହାସୁ
ଏ କବିତା ବଡ଼ ନିକି ଭାଇ ?
ବଁଚିଥିବ ସାଧାରଣ
ସହସ୍ରଂକ ପରି ତ ଜୀବନ,
କ୍ଷତି କିସ ନାହିଁ ଯଦି
ସେହି ଘର, ସଂସାର ବର୍ଣ୍ଣନ !
କିନ୍ତୁ ଦୀନ ଜୀବନରେ
ମନ-ଲୋକୁଁ କଲ ଯା ଚୟନ,
ସେହି ତବ ଶ୍ରେଷ୍ଠ ଗାଥା
ସ୍ୱପ୍ନର ଏ ମହାରୂପାୟନ ।

■

# ମୁମୂର୍ଷୁ କୋଣାର୍କ

ଡ. ମାୟାଧର ମାନସିଂହ

ଅଶ୍ରୁସିକ୍ତ ନେତ୍ର ତଳେ କୋଟି ପ୍ରେମିକର
ତିଳେ ତିଳେ ମରୁଅଛ ସୁନ୍ଦର କୋଣାର୍କ,
ନିୟୁତର ଦୀର୍ଘଶ୍ୱାସେ, ସହସ୍ରର ମୌନ ହାହାକାରେ
ହେ ସୁନ୍ଦରି ! ତୁମ ଲାଗି ଉଠେ ବିଶ୍ୱଚିତ୍ତେ
ସକରୁଣ ଅଶ୍ରୁତ ବିଳାପ ।
ନଷ୍ଟ ଭାଗ୍ୟେ ଯୌବନର ଛାୟା ମାତ୍ର ଘେନି,
ନିଖିଳ ଧରାରେ ତମେ ରଖିଥିଲ ମୁଗ୍ଧ ସଚକିତ,
ହେ ଅମ୍ଳାନକାନ୍ତିମତି, ହେ ଚିର ସୁନ୍ଦରି,
ଚିରପାଇଁ ଧରା ତେଜି, ନାହିଁ ରଖି ଚିହ୍ନ ମାତ୍ର ତବ;
ତମେ କି ଆପଣା ଲୋକେ ଯିବ ଚାଲି, ପ୍ରୟାଣରେ ତବ,
ରୁକ୍ଷଧରା ରୁକ୍ଷତର କରି ?
ଧୀରେ ଧୀରେ ତନୁ ତବ ଅୟି ସୁତନୁକେ
ଆଖି ଆଗେ ମିଶିଯାଏ ପଂଚ ପ୍ରକୃତିରେ
ନଭ, ବାୟୁ, ଆଲୋକ, ମୃତ୍ତିକା,
ପ୍ରତ୍ୟେକ ନିଅନ୍ତି ଲୁଟି ପ୍ରତିଟି ତୋ ମଧୁର ସୌଷ୍ଠବ,
ସିନ୍ଧୁ ତା'ର ଲବଣ-ଚୁମ୍ବନେ
ବିଜନ ଏ ଶାନ୍ତ ରେଣୁବନେ
ଉଜ୍ଜ୍ୱଳ କପୋଳ ତୋର କରୁଅଛି ଅସରନ୍ତ ଫିକା ।

(୨)

ହେ ଉର୍ବଶୀ ବାରଶତ କବି-କଳନାର,
ସୃଜିଥିଲେ ତତେ ଯେହ୍ନୁ ତିଳେ ତିଳୋତ୍ତମା କରି,
କଳ୍ପ-ଲୋକ-ଶ୍ରେଷ୍ଠ ଉପାଦାନେ,
ସୁକୁମାର, ସୁମଂକୁଳ, ସୁଗଠିତ, ସୁମୂର୍ତ୍ତ ସୁଷମା,

ଉଷ୍ଣରକ୍ତ ଭରିଦେଇ ତଳେ ତଳେ ରୁକ୍ଷ ପଥରର
ପେଲବ-ତରୁଣୀତନୁ-ଉଚ୍ଚାଟନ ଭରି ସର୍ବ ସ୍ଥାନେ ।
ହେ ମାନସି ! ବାରଶତ କବି ହୃଦୟର,
ତବ ସ୍ପର୍ଶେ ଏହିଠାରେ ପ୍ରାଣହୀନ କଠିନ ପାଷାଣ
ହସିଥିଲା; ବାଦ୍ୟରଙ୍ଗେ କରୁଥିଲା ଗାନ,
ନୃତ୍ୟଛନ୍ଦେ କରୁଥିଲା ଥର ଥର ସହସ୍ର ହୃଦୟ,
କଟାକ୍ଷରେ ନିଖିଳରେ କରି ଆକର୍ଷଣ,
କରିଥିଲା ପ୍ରିୟବକ୍ଷେ ସର୍ବଦତ୍ତ ଆଲିଙ୍ଗନ ଦାନ ।
ତମ ଲାଗି କବିଜନେ ଭରିଥିଲେ ବିଜନ ଏ ଭୂମି
କୋଟିଜନ ସମାଗମେ, ଦେବ, ଦବୀ, ନାଗ, ଗନ୍ଧର୍ବରେ,
ଅହଟହ ଆୟୋଜିତ ହେ ସୁନ୍ଦରି, ତବ ଆରାଧନା,
ତୁମଲାଗି ଚତୁରଂଗବଳ ସଦା ସଶସ୍ତ୍ର ସଜ୍ଜିତ,
ତୁମ ଲାଗି ଦିବା ରାତ୍ର ଚତୁର୍ଦ୍ଦିଗେ ନୃତ୍ୟ, ବାଦ୍ୟ, ଗୀତ,
ବିଜୟୀ ସମ୍ରାଟ କରେ ତବ ପଦ ପ୍ରାନ୍ତେ ଉପାସନା ।

(୩)

ସବୁ ଏ କି ଯିବ ମିଶି ଶୂନ୍ୟେ ସୁଖସ୍ୱପ୍ନ ସମ,
ତବ-ନାମ-ମାତ୍ର-ଶେଷ ହେବ ଦିନେ ଅଭାଗ୍ୟ ଏ ମାଟି,
ଶୂନ୍ୟବେଳା ହେବ ଶୂନ୍ୟତମ ।
କାହିଁ ଆଉ ଦେଖିବୁ ଗୋ ନିଜ ସ୍ୱପ୍ନ ହେବା ରୂପାୟିତ,
ପରମ ମୁହୂର୍ତ୍ତ ସବୁ ଏ ଜୀବନେ ଭୋଗ, ଆନନ୍ଦର
କାହିଁ ଦେଖା ଯିବା ଆଉ ରସଘନ, ପୂର୍ଣ୍ଣ, ସନାତନ ?
ନାମ ମାତ୍ର ଅବଶେଷ ! ଶେଷେ ଖାଲି ହେବ କିମ୍ବଦନ୍ତୀ,
ହେ ବିଶ୍ୱ ସୁନ୍ଦରୀ ତମେ, ପୁଣି ଯିବ ଫେରି ସ୍ୱପ୍ନଲୋକେ
ଯେଉଁଠାରୁ ହୋଇଲ ଉଦ୍ଭବ,
ରହିବ ସ୍ମୃତିରେ ଖାଲି ଏ ଧରାର- ସ୍ୱର୍ଲୋକର ସୁନ୍ଦରୀଙ୍କ ପରି-
ପୁଣି ହେବ କଳ୍ପନାର, ବାସନାର, ତୀବ୍ର ପିପାସାର
ବସ୍ତୁ ତମେ;- ବାସ୍ତବରେ କିନ୍ତୁ ଅସମ୍ଭବ !

ହେ ସ୍ୱପ୍ନ-ସୁନ୍ଦରୀ ତମେ ନିଖିଳ ଜାତିର,
ହେ ପରମ ରୂପ-କଳ୍ପ-ଲୋକର-କବିତା,
କବି-ଜନ ତପସ୍ୟାରେ ପୁଣି ତମେ ନ ଦେବ କି ଧାରା ?
ପୁଣି କି ଆଗାମୀ କାଳେ ନ ଉଠିବ ନବ ଅପଘନେ
ମାନବର ସୁଖ-ସ୍ୱପ୍ନ, ଆନନ୍ଦରେ ପୁଂଜୀଭୂତ କରି,
ଏକଠଶବେ ମେଲିଦେଇ ମାନବର ଅନ୍ତର-ପସରା ?
ଯୁଗେ ଯୁଗେ ନଆସ କି ହେ ଶିଳ୍ପସୁନ୍ଦରି,
କବି-ଜନ ତପସ୍ୟାର, ବୀରାଭିଳାଷର
ବର ରୂପେ ?
ଆଜି ତମେ ନିଅ ଯା ବିଦାୟ
ଅଭିମାନ ସେ କି ଆର୍ଯ୍ୟେ, ଏ ମାଟିରେ ବୀର ନାହିଁ ଆଉ,
ଯେ କି ଯୋଗ୍ୟ ତବ ପଦେ ଦେବାଲାଗି ଗୌରବର ଭେଟି,
ତବ ରୂପ ପୂଜାପାଇଁ କବି ମଧ ନାହାଁନ୍ତି ବା, ହାୟ !
ଯାଅ ତେବେ, ମନସ୍ୱିନୀ, ବିଶ୍ୱଜନ ରୂପାୟିତ ସ୍ୱପ୍ନ,
ଏଇ କ୍ଷୁଦ୍ର ଅନ୍ତରର ପରମ ମାନସୀ ।
ଆଣିପାରେ ଭାବନାରେ, କେବେ କିଗୋ, ମୋ ତପ ସାଧନେ,
ଧରାଦେବ, ହେ ଉର୍ବଶି, କୃଚ୍ଛ୍ର ବ୍ରତ ଜନ୍ମଜନ୍ମାନ୍ତରେ ?
କିବା କ୍ଲେଶ, ଯଦି ତାହା ପାରେ ସମ୍ଭବାଇ
ତମପରି ପରମ ସୃଜନେ !



# ବଢ଼େଇ ପିଲା

ରାଧାମୋହନ ଗଡ଼ନାୟକ

ଅର୍କ ଦେଉଳର ଗଢ଼େଇ କାରିଗରୀ ବଢ଼ିଲା ଆଜି
ସିନ୍ଧୁ ସଇକତେ ଚନ୍ଦ୍ରଭାଗା ଭୂଇଁ ଉଠିଲା ସାଜି
ବାରଶ ବଢ଼େଇର ବୁଦ୍ଧି ବଳ ଯହିଁ ମଉଳି ଥିଲା
ସାଧିଲା ତହିଁ ଆଜି ଧରମା ବୋଲି ଏକ ବଢ଼େଇ ପିଲା ।
ବାରଶ ବଢ଼େଇର ମରମ ତଳେ ତଳେ ସେଇଥି ଲାଗି
ଗୋଟିଏ କ୍ଷଣ ପାଇଁ ହରଷ ଉଲ୍ଲାସ ଉଠିଲା ଜାଗି ।
କ୍ଷଣକ ପରେ ପୁଣି ସବୁରି ବଦନରେ ଲାଗିଲା କାଳି
ସଭିଏଁ ଠୁଳ ହୋଇ ସରମ ଅପମାନେ ହୋଇଲେ ଭାଳି ।
ବିଶେଇ ମହାରଣା ଆଗରେ ପଚାରିଲେ ବାତୁଳ ପ୍ରାୟ
"ବାରଶ ବଢ଼େଇରେ ଦାୟ, କି ପୁଅରେ ଦାୟ ?"
"ବାରଶ ବଢ଼େଇ ତ ମୋହରି ଜାତିଭାଇ ମୋହରି କୁଳ
ବାରଶି ନିହାଣରେ ଗଢ଼ିଲେ ଏ ଦେଉଳ ପାଷାଣ-ଫୁଲ
ବାରଶ ବଢ଼େଇର ଗର୍ବ ଗଉରବେ ମୋହର ସୁଖ
ବାରଶ ବଢ଼େଇର ଗର୍ବ ଗଉରବେ ଫୁଲେ ମୋ ବୁକ ।
ମୋହରି ଜାତିକୁଳ ଉଜଳ କରି ଆଜି ମୋହରି ପୁଅ
ଭେଦିଚି ବୀର ଅଭିମନ୍ୟୁ ପରି ଆଜି ବିଷମ ବ୍ୟୂହ ।
ଜଗତ ତଳେ ଆଜି କରିଚି ଅଦ୍ଭୁତ ଆଲୋକ କାମ
ଜଗତ ତଳେ ଆଜି ଆଙ୍କି ଦେଇଅଛି ଅମର ନାମ
ଅଧିକ ନୁହେଁ କେହି ନିଉନ ନୁହେଁ କେହି ତୁଲ୍ୟ ପ୍ରାୟ
ବାରଶ ବଢ଼େଇରେ ଦାୟ, ମୋ ପୁଅରେ ଦାୟ ।"
"ଜାଣୁଚ, ତୁମେ ଆଜି ପାରିବ ନାହିଁ ରଖି ଉଭୟ କୂଳ
ଗୋଟିଏ କଥା ଆଜି ଗଭୀରତର କରି ମନରେ ତୁଳ ।

ରାଜାର ଦରବାରେ ତମର ପୁଅ କଥା ପଡ଼ିଲେ କାଲି
ବାରଶ ବଢ଼େଇର ମୁହଁରେ ନିଶ୍ଚୟ ଲାଗିବ କାଳି ।
ବାରଶ ବଢ଼େଇର ରଖିବ ଯଦି ମାନ ରଖିବ ମଥା
ପାସୋରି ଦିଅ ଆଜି ପୁଅର ଆଶା ତବ ପୁଅର କଥା ।
ଦେଉଳ ତଳେ ଆଜି ପୁଅରେ ବଳି ଦିଅ ଦେଖିବୁ ଆମେ
ଦେଉଳ ତୋଳିବାର କୀର୍ତ୍ତି ରହିଯିବ ଆମରି ନାମେ ।
ଭାଇରେ, ପୁଅ ଲାଗି ଆସୁଚି ଲୋଭ ଯଦି ଆସୁଚି ମନେ
ବାରଶ ବଢ଼େଇର ମୁଣ୍ଡକାଟ ଜାଣି ଦେଖିବ ତମେ ।
ସେ ଲାଗି ପଚାରୁଚୁ ତୁମର କହ କିବା ଅଭିପ୍ରାୟ –
ବାରଶ ବଢ଼େଇରେ ଦାୟ, କି ପୁଅରେ ଦାୟ ?"

ବଜ୍ରସମ ସେହି ବିଷମ ପ୍ରଶ୍ନର ତତ୍ତ୍ୱ ଶୁଣି
ବିଶେଇ ମହାରଣା ଭୟରେ ସେଇପରି ରହିଲା ତୁନି ।
ଘଡ଼ିକ ପରେ କହେ ବାଷ୍ପ-ଗଦଗଦ କମ୍ପ୍ର ସ୍ୱରେ
"ଦାରୁଣ କଥା ଆଜି ପକାଉଅଛ ଯାହା ମୋହରି ତୁଲେ ।
କହିଲ ଜାତିଭାଇ କଅଣ, କରିବି ମୁଁ କହିଲ ଦେଖି
ମୋହରି ପ୍ରାଣୁ ବଳି ପ୍ରାଣଟି କେଉଁପରି ଦେବି ଯେ ଟେକି ?
ସେ ଦିନ ସିଏ ପରା ତମର ଆଖି ଆଗେ ଆସିଚି ଏଥେ
ଚିହ୍ନ ଆଣି ଆହା ଚିହ୍ନା ହୋଇଅଛି ମୋହରି ସାଥେ ?
କେଡ଼ିକି ବିକଳରେ ଆହା ସେ ଖୋଜି ଖୋଜି ପାଇଲା ମତେ !
ଯୋଡ଼ିଏ ଦିନ ବୋଲି ରହିଚି ଉଷତରେ ଯୁଗକଗତେ ।
ସେ ଆଜି ଫିଟାଇଚି ଝରଣା ଏଇ ମୋର ମରମତଳେ
କରକା କାୟାପରି ପାଷାଣ ହିୟା ମୋର ମାୟାରେ ଗଳେ ।
କେସନେ କହ ଆଜି ହୋଇବି ଆତତାୟୀ କରୁଣାହୀନ
ଜାତିର ଇଚ୍ଛାରେ ପୁଅରେ ବଳି ଦେବି ମୁହିଁ କଠିନ ।
କରିବ ଯାହା କର ମୋ ପ୍ରାଣ ନିଅ ପଛେ ହେ ଜାତିଭାଇ
ପୁଅରେ ବଳି ଦେଇ ପାରିବି ନାହିଁ ମୁହିଁ, ପାରିବି ନାହିଁ ।
ତୁମେ ଯେ ପଚାରୁଚ ଅସଂସାରୀ କଥା ଏ କି ନ୍ୟାୟ ?

'ବାରଶ ବଢ଼େଇରେ ନୁହେଁ, ମୋ ପୁଅରେ ଦାୟ' ।"

ସହସା ନିମେଷକେ ଜନତା ଉହାଡ଼ରୁ ବାହାରି ପଡ଼ି

କହିଲା ନିର୍ଭୀକ ଶୌର୍ଯ୍ୟଭରା-ବାଣୀ ହସ୍ତ ଯୋଡ଼ି ।
"ନାସ୍ତି କର ନାହିଁ, ନାସ୍ତି କର ନାହିଁ, ହେ ମୋର ପିତା
ବାରଶ ବଢ଼େଇର ଇଚ୍ଛା ନୋହୁ ଆଜି ଭୂଲୁଣ୍ଠିତା ।
କୀରତି-ରଙ୍କ ମୁଁ, ଜୀବନ-ରଙ୍କ ମୁଁ ନୁହଇ କେବେ
ଝଡ଼ର ତାଳେ ତାଳେ ଜୀବନପଥ ପରେ ଆସିଚି ଏବେ ।
ବାରଶ ବଢ଼େଇର ମନର ଯାହା ରୁଚି ତାହା ମୋ ରୁଚି
ଜଗତ ଅୟନରୁ ବିଶ୍ୱ ନୟନରୁ ଯିବି ମୁଁ ଲୁଚି ।
ଜାଣିବେ ନାହିଁ ମତେ ଜାଣିବେ ନାହିଁ ମତେ ଜଗତେ କେହି
ଦେଉଳ ଚୂଳେ ଚଢ଼ି ଦେଉଳ ମୂଳେ ଆଜି ପଡ଼ିବି ଡେଇଁ ।
ଅତୁଳ ଆଗ୍ରହେ ମୁଁ ମୋର କରିବି ଏ ଜୀବନ ଦାନ
ରାଜାର ଦରବାରେ ବାରଶ ବଢ଼େଇର ରଖିବି ମାନ ।
ହେ ପିତା ! କହିଦିଅ, ଏ ପଥେ ନୋହି ଆଉ ଅନ୍ତରାୟ

'ବାରଶ ବଢ଼େଇରେ କେବଳ ମୋହଢ ଦାୟ' ।"

ବାତୁଳ ପରି ତୁହୁଁ ବିଶେଇ ମହାରଣା ଆବେଗଭରେ
ପୁଅରେ ଜଡ଼ାଇଲା ନିବିଡ଼ ବନ୍ଧନେ ବୁକୁର ତଳେ ।
ନୟନୁ ବହିଗଲା ଶ୍ରାବଣଧାରା ପରି ଉଚ୍ଛୁଳା ଲୁହ
"ଜାଣୁଚି ଆଜି ମୁହିଁ ନୋହୁରେ ନୋହୁ ତୁହି ମୋହରି ପୁଅ ।
ଦେବତା ଆସି ଥିଲୁ ଦେଉଳ ଗଢ଼ି ଗଲୁ ଧରଣୀତଳେ
ଧରଣୀତଳ ଛାଡ଼ି ପଳାଇ ଯାଉଅଛୁ ପୁଣି କି ଛଳେ ।
ମୁଁ କିଆଁ ହେବି କହ ତୋହରି ପଥ ପରେ ଅନ୍ତରାୟ ?

ବାରଶ ବଢ଼େଇରେ କେବଳ ମୋହର ଦାୟ ।"

ଅଚିରେ କାଟି ପୁଣି ସେ କାଳ-ଯାମିନୀର ତିମିର-ଜାଲ
ଅର୍କ ଦେଖା ଦେଲେ ଚନ୍ଦ୍ରଭାଗାପଥେ ରାଗରେ ଲାଲ ।
ଊର୍ଦ୍ଧ୍ୱେ ମଥା ତୋଳି ଦେଉଳ ଗୋଟି ସିନା ରହିଚି ଠିଆ
ଦେଉଳ ତଳେ ଆଜି ମୃତ୍ୟୁ ବରିଅଛି ଅମର ହିଆ ।
ଦାରୁଣ ଅଭିଶାପ ଆଙ୍କି ଦେଲେ ଭାନୁ ଉଷ୍ଣକରେ
ବାରଶ ବଢ଼େଇର ରହିଲା ଅପଯଶ ଅବନୀ-ତଳେ ।
କାଳର ବୁକୁପରେ କାତରେ ବାଜୁଥିବ ହାୟ ରେ ହାୟ
"ବାରଶ ବଢ଼େଇରେ ଦାୟ କି ପୁଅରେ ଦାୟ ?"



# କୋଣାର୍କ

ସଚ୍ଚି ରାଉତରାୟ

ତୁମେ ଦେଖିଅଛ ଶିଳାରେ ତା'ର ତ
ରମ୍ୟ କଳାର ରୂପ,
ମୁଁ ଦେଖିଚି ତହିଁ କୋଟି କଂକାଳ
ଭଗ୍ନ ବୁକୁର ସ୍ତୂପ ।
ତୁମେ ଦେଖିଅଛ ଫୁଟିଚି କିପରି
କଳାର କାଉଁରୀ ଲାଗି,
ରାତ୍ରିର କଳା ଯବନିକା ପରେ
ସ୍ୱର୍ଣ୍ଣ ଉଷାର ଛବି ।
ଦେଖିଚ କିପରି କବିତା ଫୁଟିଚି
ପାଷାଣର ମୂକ ଦେହେ,
ତଂନ୍ଦ୍ରାମଗନ ଅଳସ ସପନେ
ବୁଡ଼ିଚ ନିବିଡ଼ ସ୍ନେହେ ।
ତୁମେ ଚାଖିଅଛ ରସର ଝର୍ଣ୍ଣା
ଚାରୁ ମନ୍ଦିର ତଳେ
ଗଂଡୁଷ ଭରି ପିଇଚ ପୀୟୁଷ
ନିଭାଇ ତୃଷ୍ଣାନଳେ ।
ମୁଁ ଫେରିଚି ହାୟ ଦୀନ ବେରସିକ
ତାହାରି ସିଂହଦ୍ୱାରୁ,
ପୁଂଜିତ ବ୍ୟଥା ଅବସାଦ ଗୁରୁ
ବଳିଅଛି ହୃଦଭାରୁ ।

ମୂଲିଆର ଆଖି ନେଇ -
ମୁଁ ଦେଖୁଚି ସେଇ ମନ୍ଦିର ରୂପ ବ୍ୟଥାର ଆରତି ଦେଇ ।
ମୁଁ ଦେଖୁଚି ସେଇ ଶିଳାର କବରେ
କେତେ କାରିଗର ଛାତି,
ତିଳେ ତିଳେ ହାୟ ଲଭିଲା ସମାଧି,
ସହିଲା କଷଣ ତାତି ।
କେତେ ମଜଦୂର ଗର୍ଦ୍ଦଭ ପରି
ବହି ବହି ଶିଳା ଭାର,
ବଙ୍କା କଲେଟି ନିଜ ମେରୁ ହାଡ଼
ହିସାବ କି ଅଛି ତା'ର ?
କେତେ ଯେ ବଟାଳି, ନିହାଣ, ମୁଗୁର
ରଜାର ହୁକୁମ ମାନି,
କଳା ମୁଗୁନିର ଦିହରୁ ରକତ
ପୋଷ ପୋଷ କଲା ପାଣି ।
କେତେ ଯେ ବଢ଼େଇ, ମିସ୍ତ୍ରୀ, କମାର
ଶୋଣିତ ଗଲାରେ ମିଳି,
ସାଗରର ଲୁଣି ପାଣି ସେ କଥାକୁ
ଲୁଣ ପରି ଦେଲା ଗିଳି ।
ଦେଖିଲା ଜଗତ ବିରାଟ ଦେଉଳ !
ଘୋଷିଲା ରାଜାର ଜୟ,
ପଂଡିତ କହେ ଦେଶର କୁଆଡ଼େ
ଲେଖା ଏଥି ପରିଚୟ ।
କେ ରସିକ- କହେ ସୁନ୍ଦରୀ ନଟୀ
ଲୀଳାୟିତ ନୀବୀ-ବଂଧ !
ସ୍ୱତଃଶ୍ଳଥ ତା'ର କାଂଚୁଲି ତଳେ
ପଦ୍ମ କୋରକ ଛଂଦ !
କିଏ ଦେଖେ ନାଗକନ୍ୟାର ଗଳେ
ରତି-ଚ୍ୟୁତ ବନ ମାଳା,

ଯକ୍ଷ ବଧୂର କବରୀରେ କିଏ
ଶତ ରାତ୍ରିର ଜ୍ୱାଳା-
ଅନୁଭବେ ନିରଂତର,
ଜାଣିବାକୁ କିଏ ଲୋଡ଼ିଚି କି କେବେ
ଇତିହାସ ମଣିଷର ?
ପଚାରିନି କିଏ କେତେ ବା ଜୀବନ
ସେ-ଲାଗି ହୋଇଚି କ୍ଷୟ,
କେତେ ବା ବାରିଶି, କରତ, କୁଠାର
ଲଭିଅଛି ପରାଜୟ ।
କେତେ କ୍ଷୁଧାତୁର ମଣିଷ ଖାଇଚି
କ୍ଷୁଧାରେ ସେ ଦିନ ମାଟି,
ରମ୍ୟ କଳାର ଦରବାରରେ ତାର –
କିଛି ନାଇ ପରିପାଟୀ –
ନାଇ ତା ଚରଣ-ଲିପି,
ଶିଳ୍ପ ରହିଚି, ନାଇ ନାଇ ସେଠି, କଳାକାର ବା ଶିଳିପୀ ।
ଧନ୍ୟ ଆମର ଶିଳ୍ପ ଚାତୁରୀ !
ଧନ୍ୟ ଲଳିତ କଳା !
ରଜାର ସୁନାମ ପ୍ରଚାରର ଲାଗି
କୋଟି ବୁକେ ବାଜେ ଶଳା ।
ଅମର ହୋଇବ କାଳର କବଳେ
ଯେଣୁ ଜଣକର ନାମ,
ଲକ୍ଷ ବେନାମୀ ଜୀବନରେ ତେଣୁ
ଗଢ଼ା ହେଲା ଶମଶାନ ।
ଏ ଭାବପ୍ରବଣ ଜାତି
ଏବେ ବି ଗରବେ ଚାହିଁ ତା କବରେ
ଫୁଲାଏ ଆପଣା ଛାତି ।
କୋଟି କୋଟି ବିଶୁ ମହାରଣା,
ପୁଣି ଶିବେଇ ସାମଂତ କେତେ,
ଏଇ ମନ୍ଦିର ତଳେ ଶୋଇଛନ୍ତି,
କଳାର ଫସଲ ଖେତେ ।

ଗଢ଼ିବାକୁ ଏଇ ମନ୍ଦିର କଳା
ଶ୍ରମିକ ରକ୍ତ ଦାନ,
କୃଷକ ଦେଲା ତା' ଜନକ ଶସ୍ୟ
ରାଜ କୋଷେ ଅକଳନ ।
ଅଥଚ କଳାର ଦରବାରେ ନାଇ
ତାଙ୍କ ବ୍ୟଥାର ସ୍ଥାନ –
ହାସ୍ୟ ବା ଲୁହ, ଅଥବା କେଉଁଠି
ଫସଲ - କଟାର ଗାନ ।
ତୋରଣେ, ତୋରଣେ ନଂଦନ ଶୀରି,
ଯକ୍ଷ-ପୁରୀର ଲତା,
କେଉଁଠି କି ଅଛି ମାଟିର ଶସ୍ୟ,
ଧାନର ବିଜୁଳି ଛଟା ?
ଆଭିଜାତ୍ୟର ବରାଦରେ ସେଠି
ସାଆଁଟିଆ ରୁଚି ଛାଂଚେ,
ନଗ୍ନ ନଟୀର ନଧର ଚରଣ
ଚପଳ ଛଂଦେ ନାଚେ ।
ସେଠି ଅଛି ଖାଲି ଫୁଲର ଫସଲ
ସପନର ନୀଳ ଢେଉ,
ହୀରାର ସୂର୍ଯ୍ୟ ପାହାଂତି ପହରେ
ପ୍ରଣାମ ତା' ନେଉ ନେଉ
କହିଯାଏ ଧରା କାନେ –
ଜୀବନର ଯେତେ କ୍ଷତ, ଅପମାନ,
ଗାଇ ନାଇ କିଏ ଗାନେ ।
ରମ୍ୟ କଳାର ଲୀଳା !
କିଛି ତ କହିନି ମଣିଷର କଥା, –
କହିବାର ଯାହା ଥିଲା ।



# ଏମାନେ କୋଣାର୍କ ଦେଶର୍ ଲୋକ ନୁହନ୍ତି

ଡକ୍ଟର କୁଞ୍ଜବିହାରୀ ଦାଶ

ହେମନ୍ତର କୁହୁଡ଼ିରେ ବୁଜି ହୋଇ ଆସେ
ସକାଳର ଆଖି
କାପୁଡ଼ା ପଚାରେ କାହିଁକି, କାହିଁକି
କାହିଁକି ଏମାନେ ଚାଲିଛନ୍ତି ?
ସ୍ନେହ ପିତୁଳାର କୋଳାହଳରେ ଉଛୁଳା
ସୁଖ ଦୁଃଖର ସାକ୍ଷୀ ପଲ୍ଲୀର କୁଟୀର
କୁଟୁମ୍ବ ପରିଜନ, ବନ୍ଧୁ ସମ୍ବନ୍ଧୀ
ସ୍ମୃତି ସୋହାଗ ଛାଡ଼ି
କାହିଁକି ଏମାନେ ଚାଲିଛନ୍ତି ?
ଆଣ୍ଠୁ ଲୁଚା ଗାମୁଛାରେ ଆଙ୍ଗୁଳି ବହଳ ମଳି
କାନ୍ଧରେ ବଟୁଆ, ମୁଣ୍ଡରେ ଗଣ୍ଠିଲି, ପୁଟୁଳି
ରୋଗା ଦେହ ଆଉ ଭଙ୍ଗା ମନ ଘେନି
କାହିଁକି ଏମାନେ ଚାଲିଛନ୍ତି ?
ଦରଲିଭା ଅତୀତର ଲୁହଝରା ସଙ୍ଗୀତ
ଛିନ୍ନତାର ବୀଣାରୁ ଯେମିତି
ଦେହ ଘେନି ହୋଇଛି ଚଳନ୍ତୀ ।

ତଡ଼ି ନେଉଛି ସର୍ଦ୍ଦାର
ପଲ୍ଲ ପଲ୍ଲ ମେଷର ରଖୁଆଳ
ମଣିଷ ତା'ର ପଣ୍ୟ
ସାକ୍ଷାତେ ବନ୍ଦୀ ସୈନ୍ୟ
ବଧଭୂମିକି ଯାଉଛନ୍ତି !

ଗତିରେ ତଡ଼ିତର ଆବେଗ ନାହିଁ
ତାଡ଼ିତ ବେଗ ଅଛି
ମୁଖରେ ମର୍ମଫଟା ଅଶ୍ରୁଳ ରୁକ୍ଷତା
ଅମାବାସ୍ୟା ଅନ୍ଧକାରରେ ଦୁର୍ଦ୍ଦଶାର ଦୁଃସ୍ୱପ୍ନ ପରି
ଏମାନେ ଚାଲିଛନ୍ତି —
ଗୋଟିଏ ଗୋଟିଏ ସଚଳ ଯଜ୍ଞଶାଳା
ଜଳୁଚି ତହିଁରେ ଶତ ଉଲ୍‌କାମୁଖୀ ଉଦରର ଜ୍ୱାଳା
ସାଗର ତରଙ୍ଗ ପରି ଏମାନେ
ଏଇ ବଡ଼ବାନଳ ଶିଖା ଧରିଛନ୍ତି
ଅଗନାଗ୍ନି ବନସ୍ତ ପରି
ଜୀବନର ସ୍ନେହ ପ୍ରେମ ସୁଖ ଶାନ୍ତି
ସବୁ କିଛି ଆହୁତି ଦିଅନ୍ତି ।

ଏଇ ଜ୍ୱଳା ବିପ୍ଲବର ଧୂର୍ଜଟୀ
ଶକ୍ତିର କଷଟି
ଏମାନେ ହେବେ ଏଇ ଅଗ୍ନିର ବୀଣା
ଏଇ ଅଗ୍ନିର ଶଙ୍ଖ
ଏ ଆଣିବ ଶ୍ରମିକ ଜୀବନରେ
ଏକ ଶାଶ୍ୱତ ଶୁକ୍ଳପକ୍ଷ ।

ଏଇ ଜ୍ୱାଳାରେ ଆହୁତି ଦେବା ଲାଗି
ଏମାନେ କଲିକତାରୁ କାଲିକଟ୍
ଦିଲ୍ଲୀରୁ ଚିଲି, ଟାଟାରୁ ବାଟା ବୁଲୁଛନ୍ତି
ଏମାନେ କୋଣାର୍କ ଦେଶର ଲୋକ ନୁହନ୍ତି ।
ଯେଉଁଠି ଜୀବନର ମୂଲ ମୁଠାଏ ପାଉଁଶରୁ ଊଣା
କେତୁଟା ବିଶାକାଠି ଓଜନ କରେ
ମଣିଷର ମାଉଁସ
କେତୁଟା ସର୍ପର ବିଷ
ଜାତିର ରସବାହୀ ଧମନୀକୁ ନିଷ୍ଫଳ, ନିଶ୍ଚେତନ କରେ
ଯେଉଁଠି ଅଶିକ୍ଷିତ କୁଲି, ଶିକ୍ଷିତ ବେକାର

ବ୍ୟବସାୟୀ ଆତତାୟୀ
ଯେଉଁଠି ଅପଦାର୍ଥ ପ୍ରତିଭାର ପାଦ ଟାଣି ଧରେ
ଅଳସ ଭବିଷ୍ୟର ପଥ ରୁଦ୍ଧ କରେ
ଏମାନେ ସେହି ଦେଶର ଲୋକ
କୋଣାର୍କ ଦେଶର ଲୋକ ନୁହନ୍ତି ।

ପଥର ଜୀଇଁଛି, ମଣିଷ ମରିଛି
ଏ ଆଉ ଗୋଟିଏ ଜାତି
ଦୁଃସ୍ଥ, ଦୁର୍ଗତ
ଦୁଃଖ ଦାରିଦ୍ର୍ୟ ସହିତ ତା'ର ସଂଗ୍ରାମ
ଦେହର ଗୋଛାଏ ଅସ୍ଥି ତା'ର ଅସ୍ତ୍ର
ମନର ଦହନଜ୍ୱାଳା ତା'ର ମନ୍ତ୍ର
ଅଶ୍ରୁ ତା'ର ବର୍ମ
ମୃତ୍ୟୁ ତା'ର ବିଶ୍ରାମ ।



# କୋଣାର୍କର୍ ସେଇ ଲାବଣ୍ୟବତୀ ପ୍ରତି

ବିନୋଦ ଚନ୍ଦ୍ର ନାୟକ

- ୧ -

ଆସ ତୁମେ ଛାଡ଼ି
କୋଣାର୍କ ଶିଳାଭୂମି
ସ୍ତନଚୂଡ଼ା ଛାୟା
ଛୁଆଁ କଟୀତଟ
ମଦିରେକ୍ଷଣ ରୂପ
ଛାଡ଼ି ତୁମେ ଆସ,
ହାତେ ମୋର ତୁମ
ନଗ୍ନ ହାତଟି ରଖ !

- ୨ -

କବରୀରୁ ତୁମେ ନିକ୍ଷେପ କର
ରାତିର ତନ୍ୱୀ ଫୁଲ
ଅଶୁଚି ବସନ ସମ ନିକ୍ଷେପ କର
କ୍ରାନ୍ତିବଳୟ ବିଭାସିତ କରି
ତରୁଣ ତମାଳ ତନୁ ନେଇ ତୁମେ ଆସ
ଉଦ୍ଧତ ପ୍ରେମ ଉଦ୍ୟତ ହାତେ ନେଇ
ହାତେ ମୋର ତୁମ ନଗ୍ନ ହାତଟି ରଖ !

- ୩ -

ଶଙ୍ଖର ରବେ ଗାୟତ୍ରୀ ସୁର ତୋଳି
ଜାହ୍ନବୀ ସମ
ଛାଡ଼ି କେଉଁ ହିମଶିଳା
ଆସିଥିଲ ତୁମେ ରଜନୀଗନ୍ଧା,
କେୟୁର ବଳୟ ହାତେ,

ବିଳମ୍ବିତ ସେ ନୀବୀ ମୋକ୍ଷଣ
ବାସର ମଦିରା ମାୟା
ସାଗରୋଲ୍ଲାସେ ଶପଥେ ଶପଥେ
ସେ ଦିନ ସେ ହାତ
ରଖିଥିଲ ମୋର ହାତେ !

- ୪ -

ଆଜି ଏଇ ଦେଖ
ରଣକ୍ଲାନ୍ତ ସେ ହାତ
ରାଜ୍ୟ ବିଜୟୀ ଆଶା ସବୁ
ମରୁ ଲୀନ
ଭୂମିଶାୟିନୀ ସେ ମକର ମୁକୁଟ –
କେତୁ
ଦିଗନ୍ତେ ହିମ ଝଡ଼ !

- ୫ -

ଦୂରେ ଦେଖାଯାଏ ନୀଳ ଆଭା ଲେଖା
ସେ କେଉଁ ପାଣ୍ଡୁ ଭୂମି
ନୀଡ଼ ସନ୍ଧାନୀ ମନ ତହିଁ ଚାହେଁ
ଜ୍ୟୋତ୍ସ୍ନା ଧୂସର ଶାଖା,
ଦୁଇ ଜଣେ ମୃଦୁ ମଧୁର କୂଜନେ
ବିଧୁର ଯାମିନୀ ଶେଷ
ଦୀର୍ଘ ମିଆଦି ଛୁଟି ।

- ୬ -

ଜୀବନର ସେଇ ଶୂନ୍ୟ କଳସ
ମୁଗ୍ଧ ହାସରେ
ଭରି ତୁମେ ଏଥେ
ଆସ ।
ତୁହିନ ଶୀତଳ ହାତେ ମୋର ତୁମ
ନଗ୍ନ ହାତଟି ରଖ !
ନଗ୍ନ ହାତଟି ରଖ ! !



# ବିଶୁ ମହାରଣା ଘରେ ନାହିଁ

ଭାନୁଜୀ ରାଓ

ଘରେ ନାହିଁ ବିଶୁ ମହାରଣା,
ମୁଁ ଫେରୁଛି, ମୋର ଗୋଡ଼ଯାକ ଧୂଳି,
ସରି ଆସିଲାଣି ଆକାଶେ ଗୋଧୂଳି,
ରାତି ହେଲାଣି ବେଶ୍, ଶେଷ ହେବ
ଦେଖୁ ଦେଖୁ ପ୍ରଥମ ପ୍ରହର ।

ଘରଯାକ ଏଣେତେଣେ ପଡ଼ି ଅଛି
ଛେଣି ଓ ବଟାଳି,
ଡାକି ଡାକି ପଳାଇଲା କୋକିଶିଆଳି
ବାଲିବନ୍ତ ଆଡ଼େ ।

ମୋ ହାତରେ କିଛି ନାହିଁ
ରିକ୍ତ ହାତ, ରିକ୍ତ ରହିଯାଏ ।
ହୃଦୟରେ ଆଶା ଭରି
ଆଣିଥିଲି ରକ୍ତିମ ମନ୍ଦାର,
ଚାରିଆଡ଼େ ଜଟିଳ ଅନ୍ଧାର,
ପକ୍ଷୀ ହୁଏ ବାଟବଣା,
ଘରେ ନାହିଁ ବିଶୁ ମହାରଣା ।
ଧୂଳି ଗୋଡ଼ରେ ମୁଁ ଫେରିଯିବି
ଘରକୁ ଏଥର ।

ମୁଁ କିନ୍ତୁ ଆଣିଥିଲି ଝୁଲାମୁଣି ଭରି
ସିଂହକଟି, ମୁକ୍ତନାଭି, ପାର୍ବତୀର ସ୍ତନ,
ଶିବଙ୍କ ଶାଳପ୍ରାଂଶୁ ଭୁଜ
ଆକାଶରେ ପକ୍ଷୀଙ୍କ ତ୍ରିଭୁଜ
ଉଡ଼ିଗଲା ପରେ
ବିଶୁ ଆଦରି ନେବ ତାକୁ ସବୁ
ଖଞ୍ଜି ଦେବ ନିରୋଳା ଆଙ୍ଗିକ
ତା ମୂର୍ତ୍ତିରେ ବିଭିନ୍ନ ଆଭରଣ ଭରି ।
ଗଢ଼ିଛ ମିଥୁନ ମୂର୍ତ୍ତି ଅତି ନିଷ୍ଠାରେ,
ଶତାବ୍ଦୀ ଶତାବ୍ଦୀବ୍ୟାପୀ ଅନନ୍ତ ଆଶ୍ଳେଷ,
ବିଲୋଳ କଟାକ୍ଷରାଶି ବିନ୍ଧୁଛି ମର୍ମକୁ ।
ପାର୍ଥିବ ପକ୍ଷୀଙ୍କ ଗାନ
ଆଜି ମନେପଡ଼େ,
ସେମାନେ ଲୁଚିଛନ୍ତି ଏହିସବୁ
ପଥର ସନ୍ଧିରେ ।
ତାକୁ ଫୁଟାଇବାକୁ ଶକ୍ତି ଅଛି ତୁମ,
କୁଆଡ଼େ ଗଲ ତୁମେ ଘର ଖୋଲା ଛାଡ଼ି,
ମୂର୍ତ୍ତିରେ ଲୋହିତର କଣା,
ଘରେ ନାହିଁ ବିଶୁ ମହାରଣା ।



# କୋଣାର୍କ

ଦୁର୍ଗାଚରଣ କୁଅଁର

ଏ ପ୍ରଚାର ଓ ବିଜ୍ଞାପନ ଯୁଗରେ
କୋଣାର୍କ ମନ୍ଦିରର ବାଣିଜ୍ୟ-ମୂଲ୍ୟ ବେଶ୍ ବୃଦ୍ଧି ପାଇଛି ।
ବହୁ ଦେଶୀ ବିଦେଶୀ ପର୍ଯ୍ୟଟକଙ୍କ ସମାଗମରେ
କୋଣାର୍କର ବେଳାଭୂମି ଏବଂ ମନ୍ଦିର ପ୍ରାଙ୍ଗଣ
ସଦା ମୁଖରିତ ।

ରାତିର ଉଜ୍ଜ୍ୱଳ ବିଜୁଳି ଆଲୁଅ ଏବଂ ଜନ କୋଳାହଳରେ ତ୍ରସ୍ତା
ମୁଖଶାଳା ଗାତ୍ରର ବାଦ୍ୟରତା କିନ୍ନରୀଗଣ
ଏବଂ ନାଟମନ୍ଦିରର ନର୍ତ୍ତକ ନର୍ତ୍ତକୀ
ନିରୋଳା ଜ୍ୟୋତ୍ସ୍ନା ରାତିରେ ରୂପପରିଗ୍ରହ କରି
ହଲ୍ଲୀଷକ ନୃତ୍ୟ କରିବାର ଅବକାଶ ବା ଆଉ ପାଉଛନ୍ତି କେଉଁଠି !
ଶହ ଶହ ବର୍ଷର ସ୍ଥାଣୁତ୍ୱ ପରେ
ସେମାନେ ବି ଏବେ ସଚଳ ହେବାକୁ ଆରମ୍ଭ କରିଛନ୍ତି ।

ଆଜିକାଲି ସେମାନଙ୍କ ସହିତ ପ୍ରାୟ ଭେଟ ହୁଏ
ହାଟବଜାର, ରେଳଷ୍ଟେସନ ଓ ଆନ୍ତର୍ଜାତୀୟ ବିମାନ ବନ୍ଦରର ସୋ ରୁମ୍‌ରେ,
ଖଡ଼ିପଥର ଓ ପ୍ଲାଷ୍ଟର ଅଫ୍ ପ୍ୟାରିସରେ ତିଆରି
ସେମାନଙ୍କ ମଡେଲ୍‌ର ଚାହିଦା
ଦେଶ ବିଦେଶରେ ଆଶାତୀତଭାବେ ବୃଦ୍ଧି ପାଇଛି ।

କଟକର ସୁନାରୂପା ତାରକସୀ ଦୋକାନମାନଙ୍କରେ
କୋଣାର୍କ ସୁରସୁନ୍ଦରୀମାନଙ୍କ ନାନା ଅଙ୍ଗଭୂଷଣର ବହୁ ଫର୍ମାସୀ,
ଏବଂ ସେମାନଙ୍କର ଭଳି ଭଳି କେଶ ସଜ୍ଜା

ଆଧୁନିକ କେଶବିଳାସିନୀମାନଙ୍କ ପାଇଁ
ବଜାରର ଏକ ସୁଲଭ ପଣ୍ୟସାମଗ୍ରୀ ।
ଦୀର୍ଘ ସାତଶହ ବର୍ଷ ପୂର୍ବେ
ବହୁ ସମରବିଜୟୀ କୋଣାର୍କ ମନ୍ଦିର ନିର୍ମାତା ଗଜପତି ନରସିଂହ ଦେବ
ଏବଂ ମନ୍ଦିରର ଶତ ଶତ ଶିଳ୍ପୀ
କେବେ କ'ଣ କଳ୍ପନା କରିଥିଲେ
ସେମାନଙ୍କ ଅନବଦ୍ୟ କଳାକୃତିର
ଏ ଯୁଗରେ, ଏ ପ୍ରକାର ବ୍ୟବସାୟ-ମୂଲ୍ୟ କଥା !

ସ୍ୱାଧୀନତାପ୍ରିୟ ଏକ ଦୁର୍ଦ୍ଧର୍ଷଜାତିର ବିଜୟ-ସ୍ମାରକୀ
ଏ ନଭଶ୍ଚୁମ୍ବି ଦେଉଳ,
ପ୍ରତି ଶିଳାଖଣ୍ଡରେ ତା'ର ଅଙ୍କିତ ଏ ଜାତିର ଯଶଗାଥା
ଶତ ଶତ ଗଜ ବାଜୀ, ଜୈତ୍ର ଯାତ୍ରା, ଚତୁରଙ୍ଗ ବଳ
ଏବଂ ଭଗ୍ନମନ୍ଦିରର ପ୍ରସ୍ତର ସ୍ତୂପ ମଧ୍ୟରୁ ଏବେ ବି ଉଚ୍ଚାରିତ
ଏ ଜାତିର ସ୍ୱାଭିମାନ
ଏବଂ ବିଶ୍ୱବିଶ୍ରୁତ କଳା ସ୍ଥାପତ୍ୟର
ବିମୁଗ୍ଧ ଅଭିଜ୍ଞାନ ।

ସେଇ ବିରାଟ ନିର୍ମାତା ଓ ବୀରପୁଙ୍ଗବମାନଙ୍କର
ଆମେ ଅକିଞ୍ଚନ ଦାୟାଦ
କ'ଣ ବା ଆଉ କରନ୍ତୁ !
ଅଳ୍ପରେଇ ଆମେ ତୁଷ୍ଟ
ଏବଂ ସେମାନଙ୍କ କାଳଜୀର୍ଣ୍ଣ ଶିଳ୍ପ ଭାସ୍କର୍ଯ୍ୟର ପ୍ରଦର୍ଶନୀ କରି
ଅନାୟାସରେ ଯଦି କିଛି ଅର୍ଥ ଓ ସମ୍ମାନ ମିଳିଯାଏ
ସେଇଟା ବୋଧହୁଏ
ଆମର ବିଧିନିର୍ଦ୍ଦିଷ୍ଟ ପରମାର୍ଥ ।।



# କୋଣାର୍କ

ବିଦ୍ୟୁତ୍‌ପ୍ରଭା ଦେବୀ

କୋଣାର୍କ ! ତୋ ଅଙ୍ଗେ ଫୁଟେ ବାରଶତ ଶିଳ୍ପୀଙ୍କର ସ୍ମୃତି,
ଲିଭି ନାହିଁ ଆଜି ସୁଦ୍ଧା ଉତ୍କଳର ଅନଶ୍ୱର କୀର୍ତ୍ତି ।

ଲିଭି ନାହିଁ ଶିଳା ଦେହୁଁ ରାମାୟଣ ବିରାଟ କାହାଣୀ,
ଆର୍ଯ୍ୟର ପ୍ରତିଭା ଆଜି ଟେକିଛି ମା ଉତ୍କଳ-ଜନନୀ ।

ତୋ ଭାଗ୍ୟର ବିପର୍ଯ୍ୟୟେ ପାରାବାର ମରୁଭୂମି ଆଜି,
ଦେବାଳୟ ବିକଳାଙ୍ଗ ଶିରୀ ମାତ୍ର ଯାଇ ନାହିଁ ହଜି ।

ଯାଇଛି ତୋ ଚୂଡ଼ାପରେ ବହି କେତେ ବିଦ୍ରୋହ ତୋଫାନ
ନୀରବ ଏ ମରୁବକ୍ଷେ କଣ୍ଠ ତୋର ମୂକ, ଭାଷାହୀନ ।

ମସ୍ତକେ ବିରାଟ ନଭ ଅଙ୍କେ ତା'ର ରବି ଶଶୀ ଧରି,
ନିମ୍ନେ ତୁ ଦଣ୍ଡାୟମାନ, ଚିର ମୂକ ଆର୍ଯ୍ୟସୁତ ସ୍ମରି ।

ଦୀର୍ଣ୍ଣ ତୋର ବୁକୁ ଆଜି, ଛିନ୍ନ ତୋ'ର ଲୋହିତ ପତାକା,
ଭଗ୍ନାଂଶ ରହିଛି ଖାଲି ଶିଳ୍ପୀର ଯେ ରକ୍ତମୁନେ ଲେଖା ।

ସେ ଲେଖା ପଢ଼ଇ ବିଶ୍ୱ ଥାପି ତାର ବିମୁଗ୍‌ଧ ନୟନ,
ବୃନ୍ତଝରା ପୁଷ୍ପସମ ଦେହୁ ତୋର ଖସିଛି ପାଷାଣ ।

'କେ କୋଣାର୍କ ସୃଷ୍ଟିକର୍ତ୍ତା' ପଚାରିଲେ ଦେବ ତା ଆଭାସ,
ଆର୍ଯ୍ୟ ଶିଳ୍ପୀଙ୍କର ଯେଉଁ ପୁରାତନ ଶିଳ୍ପ-ଇତିହାସ ।

ନାହାନ୍ତି ସେ ଶିଳ୍ପୀ ଆଜି ବିରାଜିତ ତାଙ୍କ ମଧୁ ସ୍ମୃତି,
ଗାଉଥିବ ସେ କୀରତି କାଳ କାଳ ଶତ ମୁଖେ କ୍ଷିତି ।

ବିରାଟ ତୋ ରମ୍ୟତନୁ ସୂଚୀ ଅଗ୍ରେ ଗଢ଼ି ଆର୍ଯ୍ୟସୁତ,
ଶିଳ୍ପର ନୈପୁଣ୍ୟେ କଲେ ବିଦେଶୀର ନୟନ ଚକିତ ।

ନାହାନ୍ତି ସେ ଶିଳ୍ପୀ, ଆଜି ନାହିଁ ତାଙ୍କ ଭୁଜେ ଭୀମବଳ,
ଦେବତାବିହୀନ ତୋର ଶୂନ୍ୟ ଗୃହ କରେ ହାହାକାର... ।

ଚିରଦିନ ରବିତଳେ ରଖିବାକୁ ତୋ କୀର୍ତ୍ତି-ସମ୍ପଦ,
ଅମିତ ସାହସ ବଳେ ହେଲା ପ୍ରାଣ ବୀର ଧର୍ମପଦ ।

ତା ମୃତ୍ୟୁର ସାକ୍ଷୀ ଆଜି ପାହାନ୍ତିର ଦୀପ୍ତ କୁଆଁତାରା,
ଅମ୍ବୁଧି ଉତ୍ତାଳ ଊର୍ମି ଆଉ ତୋ'ର ଲୁପ୍ତ ଭଗ୍ନ ଚୂଡ଼ା ।

ସୁଦୂର ବିଦେଶୀ ପାନ୍ଥ ଧାଏଁ ଯେବେ ତୋ ଶିଳ୍ପ ଦର୍ଶନେ,
ସଜଳ ନୟନ ତା'ର ଲାଖିରହେ ସ୍ଖଳିତ ପାଷାଣେ ।

କବି ତୋ'ର ସ୍ମୃତିଟିକ ଇତିହାସେ ରଖିଛି ସାଇତି,
ଅମର କାହାଣୀ ତୋ'ର ଦିନୁଁଦିନ ଲଭେ ଦିବ୍ୟଜ୍ୟୋତି ।

କୋଣାରକ ଛବି ତୋର ଉତ୍କଳର ଚାରୁ ଅଳଙ୍କାର,
ତୋ ପାଇଁ ଉତ୍କଳୀ ଗର୍ବ କରୁଥିବେ ଯୁଗ ଯୁଗାନ୍ତର ।

ଚାହାଁରେ ପଥିକ ଭାଇ ତୋର ଆର୍ଯ୍ୟ ବଂଶଧର କୀର୍ତ୍ତି,
ଲିଭି ନାହିଁ, ଲିଭିବନି କେବେ ଏହି ଆର୍ଯ୍ୟ ଶିଳ୍ପ-ସ୍ମୃତି ।



# କୋଣାର୍କର ନୃତ୍ୟମୂର୍ତ୍ତିମାନେ

ଜୀବନାନନ୍ଦ ପାଣି

ସେମାନଙ୍କୁ ଛୁଇଁଲିନି
କାଳେ ଅଂଧହାତ ପଥର ବ୍ୟତୀତ
ଆଉ କିଛି ଦେଖି ପାରିବନି :
କିମ୍ବା ବାରି କାମନାର ଈଷତ୍ ଉଷ୍ମତା
ସେମାନଙ୍କ ଅଙ୍ଗର ତରଙ୍ଗ
ପଥର ପାଲଟି ଯିବ !
ମୋ ପାଇଁ ପଥର ଗୋଟେ ନିର୍ବୋଧ ଓଜନିଆ ବୋଝ
ଯାହାକୁ ପିଠିରେ ବୋହି ଜୀବନ ବିକଳ
ଶିଳ ତଳ ଦୂବଘାସ ପରି ।
ସେଇସବୁ ମୂର୍ତ୍ତିକାରମାନେ ଜାଣିଥିଲେ
ମୃତ୍ୟୁଠାରୁ ଗଭୀର ନିଦରେ ଯିଏ ଶୋଇଜାଣେ
ସେଇ ତ ପଥର:
ଏବଂ ସେ ନିଦତଳେ ନାଚୁଥିବା ଛନ୍ଦର ଭଂଗୀକୁ
ହାତର ଗାୟତ୍ରୀ ପାରେ ମୁକୁଳାଇ ସେମାନଙ୍କ ହାତ
ନିହାଣୀରେ ଭାଂଗିଦେଲା ଜେଲର କୋଲପ,
ପଥରର ଧ୍ୟାନସ୍ୱପ୍ନମାନେ
ଯେତେବେଳେ ନାଚୁଥିଲେ ତୈଜସ୍ ମଂଚରେ
ଗୋଟିଏ ମୁହୂର୍ତ୍ତ
ବିନ୍ଦୁଏ ସମୁଦ୍ର ଯେମିତି
ଧ୍ୟାନମଗ୍ନ ଶାମୁକା ଭିତରେ

ମୁକ୍ତା ହୋଇ ମେଘୁଆ ଗୀତରେ
ସମୁଦ୍ରକୁ ପ୍ରଶ୍ନକରେ "ତୁମ ଢେଉମାନେ ବେଳାରେ କଚାଡ଼ି ହୋଇ
କାହାକୁ ଖୋଜନ୍ତି ?
ସେତେବେଳେ ସମୟର ହୃଦୟ ସ୍ପନ୍ଦନ
ହେବାପାଇଁ ତରଳ କୋଣାର୍କ
ସଂଗୀତରେ ଝୁଲି ଝୁଲି ସ୍ୱପ୍ନ ଦେଖେ,
ସମୟର କାରୁକାର୍ଯ୍ୟ ମର୍ଦ୍ଦଳରେ ବାଜେ
ଭିନ୍ନ ଭିନ୍ନ ଅନେକ ତାଳରେ ।
ଜୀବନ ବି ଚାହେଁ
ମଣିଷ ଦେହ ଭିତରେ ଚାଖିବାକୁ ଅମୃତର ସ୍ୱାଦୁ ।
ଅଂଗବୀଣା ସେତେବେଳେ ଆଂଗିକର ମୂର୍ତ୍ତିତ ମୂର୍ଚ୍ଛନା,
ସ୍ୱରତନ୍ତ୍ରୀ ବାଚିକରେ ଛନ୍ଦର କାକଳୀ,
ଆଭୂଷଣ ଆହାର୍ଯ୍ୟରେ ଗ୍ରହ-ଚନ୍ଦ୍ର-ତାରା,
ସ୍ୱାତୀକର ଏଇ ପିଣ୍ଡ ସମଗ୍ର ବ୍ରହ୍ମାଣ୍ଡ,
'ସ୍ୱଭାବ'ର ଜଗତରୁ ଉଡ଼ିଯାଇ 'ବିଭାବ' ଜଗତେ
ମଣିଷର ଦେହ ହୁଏ ଅପ୍ସରା ବା ଦେବୀ
ସ୍ୱର୍ଗଲୋକ ସେ ପାରିଲେ ମର୍ତ୍ତ୍ୟଲୋକ ଅପୂର୍ବ ମାହାରୀ
ଭୂଲୋକେ ଯେ ତୁଳସୀ ଚଉଁରା
ମୂଳେ ଜଳୁଥିବା ଏକ ପ୍ରଦୀପର ଲୀଳାୟିତ ଶିଖା ।
ଗରୁଡ଼ ସ୍ତମ୍ଭ ମୂଳରେ ଆଜିବି ଅନେକ
ଶିଖା ଜଳେ କିନ୍ତୁ ହୋଇ ଜୁହାରର କ୍ଷୀଣ ମୁଖବନ୍ଧ ।
ଦେଉଳ ଜୁହାର ଛଡ଼ା ଅନ୍ୟ କିଛି ଭାଷା ବୁଝେ ନାହିଁ
ଦେହ ବି ନଇଁବା ଛଡ଼ା ଅନ୍ୟ କିଛି ଭଂଗୀ ଜାଣେ ନାହିଁ ।
କାହିଁ ଆଜି ସେଇ ଦେହ ?
ଯିଏ ଆସି ଶିଖା ପରି ସଳଖି ଚାହିଁବ
ଦିଅଁଙ୍କୁ ଓ ଲୀଳାୟିତ ଭଂଗୀରେ କହିବ
"ମୁଁ ତୁମକୁ ବାହା ହେଲି,
ଆସ ଏବେ ଅବତରି ମୋ ସାଙ୍ଗରେ ନାଚିବାକୁ ମହରଲୋକରେ",

ଏଣେ ଗୋଟେ ଲୁଣିଆ ଓ ଧୂଆଁଳିଆ ଅରଣା ମହିଁଷି
କୋଣାର୍କରେ ଲୀଳାୟିତ ଭଂଗୀ ଦେହଙ୍କର
ମୁହଁ, ସ୍ତନ ସର୍ବାଙ୍ଗ ଶରୀର
ଚାଟି ଚାଟି ବିକଳ କଲାଣି
କେହି ନାହିଁ ସାହା ହେବା ପାଇଁ ।
ସେମାନଙ୍କ ବିଜ୍ଞାପନ କିନ୍ତୁ
ପାନଦୋକାନଠୁଁ ରାଷ୍ଟ୍ରପତି ଭବନ ପର୍ଯ୍ୟନ୍ତ
ଶ୍ରାବଣର ଉଆଁସ ରାତିରେ
ସେମାନଙ୍କ ଆକ୍ ଛଳ ଚଳ
ଏବଂ ଯଦି କାହାରି ଆଖିରୁ
ଅମାନିଆ ଲୁହ ଝରିପଡ଼େ
ପାଖ ମୂର୍ତ୍ତି ଲୁହ ତା'ର ପୋଛିଦେଇ କହେ,
"କାହିଁକି କାନ୍ଦୁଛୁ ?
ଏବେ ବି ତୁ ବୁଝିନାହୁଁ : ସ୍ୱଭାବତଃ ମଣିଷ ବେପାରୀ ?
"କିନ୍ତୁ ଯେଉଁମାନେ ଆମ ରାଣ ଖାଇ
ଦର୍ଶକଙ୍କ ଆଖିପାଇଁ ମହାଯଜ୍ଞ ମଂଚରେ କରନ୍ତି:
ସେମାନେ ବି... ?
ମ୍ଲାନହସେ ପାଖ ମୂର୍ତ୍ତି କିଛି କହେ ନାହିଁ ।
ସେ ସ୍ମୃତିରେ ସାତତାଳ ଲୁହ
ଭଉଁରୀରେ ଘୂରୁଥାଏ ଅସହାୟ ହୋଇ ।

ଦିଲ୍ଲୀ



# ଧର୍ମପଦର ଆତ୍ମହତ୍ୟା

ରମାକାନ୍ତ ରଥ

ମଗ୍ନ କର ଏ ଚନ୍ଦ୍ରକୁ,
ମଗ୍ନ କର ତାକୁ କିଛି କର୍ଦ୍ଦମାକ୍ତ ପାଣିର ପାତ୍ରରେ
ଛିନ୍ନ କର ପ୍ରତି ତାରା କକ୍ଷ କୋଳୁଁ, ଅସ୍ୱୀକାର କର ଏ ରାତ୍ରିକୁ ।
ବର୍ତ୍ତମାନ ତମେ ଯାହା ଅନୁଭବ କର ତା କେବଳ
ଦୁଷ୍ଟ ଏକ ତାନ୍ତ୍ରିକର ଗୁଣି ଆଉ ଗାରିଡ଼ିର ଖେଳ ।

ଏ ରାତିରେ
ମତେ ବି ଆସନ୍ତା ତୋଳି ବଇଁଶୀରେ ଆଶାବରୀ ରାଗ ।
ଏ ରାତିରେ
ମନେ ବି ଆସନ୍ତା ଗୋଳି ଲୁହସାଥେ ପ୍ରେମର ଗଜଲ ।
ମତେ ବି ଆସନ୍ତା ଦେଖି ସ୍ୱପ୍ନ, ବୁଣି ଆଶାର ମସିଣା ।

ପରିଶେଷେ ଦେଖିବାକୁ ସେ ଆଶାର ନିର୍ଦ୍ଦୟ ମରଣ ।
ହୁଏତ ସେଥିପାଇଁ ମୁଁ କରୁନି ଆକାଶର କୁସୁମ ଚୟନ ।
ହୁଏତ ସେଥିପାଇଁ ନିଜେ ଜଳି ନିଆଁ ମୁଁ ଲିଭାଏ
ଯେଉଁ ନିଆଁ ଆମ ରକ୍ତେ ଜନନୀର ଭୁଲ୍ ରଖିଥାଏ ।

ମୁଁ ଯିବିକି ଯେଉଁଠାରେ ଲକ୍ଷ ଲକ୍ଷ ଫୁଲ ଫୁଟିଥାଏ ?
ମୋତେ ନୁହେଁ ମତେ ତମେ ବିଦାୟ ଦିଅ ଗୋ,
ବାଉଁଶ ବଣରୁ ଭାଙ୍ଗି ନୂଆ ନୂଆ ବାଉଁଶ କେତେଟା
କୋକେଇ ସଜାଡ଼ି ଆଉ ମତେ ରଖି ପ୍ରାର୍ଥନା ଗାଅ ଗୋ ।

ମୁଁ ଦେଖୁଚି
ମୋ ଆଖି ଆଗରେ ସେଇ ନର୍ତ୍ତକୀର ଚାତିର ଉପରେ
ଦୀର୍ଘକାୟ ଛାଇ ଏକ, କାହାର ସେ ଛାଇ ?
ମୋର ? ଅବା ମୋର କେଉଁ ଅବଜ୍ଞାତ ପୂର୍ବପୁରୁଷର ?
କାହାର ସେ ଛାଇ ? ଚଳନ୍ତ ଆଜିର ଅବା ମୃତ କେଉଁ ବିଗତ କାଲିର ?
ସୃଷ୍ଟିର ? ବା ଧ୍ୱଂସ ପରେ ଧୂଳିସାତ୍ ସୃଷ୍ଟିର ବାଲିର ?
କାହାର ସେ ଛାଇ ? ଯାହା ହେଉ, ଏତିକି ମୁଁ ଜାଣେ,
ମୁଁ ନୁହଇ ଭିନ୍ନ ଏଇ ଅଶରୀରୀ ପ୍ରେତର ଗହଣେ ।

ଗୋଟିଏ ବାକ୍ୟର ସିଏ କର୍ତ୍ତା, ଆଉ କ୍ରିୟାପଦ ମୁହିଁ ।
ସେ ଏକ ବିଫଳ ସ୍ୱପ୍ନ, ସ୍ୱପ୍ନାନ୍ତିକ ଦୀର୍ଘଶ୍ୱାସ ମୁହିଁ ।
ସେ ଏକ ଚେତନା ଯା'ର ରୂପ ଏଇ ଶିଳାର ନର୍ତ୍ତକୀ ।
ମୁଁ ଏକ ଚେତନା ଯାହା ବସ୍ତୁ ହୋଇ ଘେନିଚି ଜୀବନ,
ସେଇ ଦଧିନଉତିରେ । ଆମେ ଦୁହେଁ ଏକ ଓ ଅଭିନ୍ନ ।

ଏବଂ ସେଇଥିପାଇଁ ମୁଁ ଯାଉନି ଯେଉଁଠାରେ ଲୋଟିଯାଏ ହେନା ଅସୁମାରୀ,
ମୁଁ ଗାଉନି ଗଜଲ୍ ବା ତୋଲୁ ନାହିଁ ରାଗ ଆଶାବରୀ ।
ଶୋଇ ଶୋଇ ବୁଣୁନି ମୁଁ ଆଶା ଆଉ ସ୍ୱପ୍ନର ମସିଣା
ଯେଉଁଥିରେ ନିଦଗଲେ ଭୁଲିହୁଏ ନିରାନନ୍ଦ ଜୀବନର ସକଳ ଯନ୍ତ୍ରଣା ।

ସୂର୍ଯ୍ୟର ନିଃଶ୍ୱାସେ ଆଜି ଦଗ୍ଧ ହେଉ ସ୍ୱପ୍ନର ସେବତୀ ।
ଏ ଚନ୍ଦ୍ରର ଲୋତକରେ ସିକ୍ତ ହେଉ ସବୁଜର ଭ୍ରୂଣ ।
ଏ ବାୟୁର କ୍ରନ୍ଦନରେ ମୁଖରିତ ହେଉ ଏ ଆକାଶ ।
ମୁଁ କାନ୍ଦୁଚି ତମ ପାଇଁ, ଆହା ମୋର ଆହତ ପ୍ରାକ୍ତନ !

ତମର ନର୍ତ୍ତକୀ ପରି ମୋର ଏଇ ଚରମ ପ୍ରସ୍ତର,
ଦୁଃଖାନ୍ତକ ନାଟକର ମାତ୍ର ସିନା ପୃଷ୍ଠା ଦୁଇଗୋଟି ।
କାହିଁ ? କାହିଁ ବନ୍ଧୁ, ଚେତନାର ଆସୁଥିବା ଚିରକାଳ ପାଇଁ
ସଫଳ ସ୍ୱାତନ୍ତ୍ର୍ୟ ଆଉ ମୃତ୍ୟୁହୀନ ପ୍ରଶସ୍ତ ଜୀବନ ?
କାହିଁ ?

ଝର ଝର ବହିଯାଏ ମିନିଟ୍ ଓ ସେକେଣ୍ଡର ସୁଅ ।
ବିଫଳ ଆମର ଚେଷ୍ଟା ନେଇ ମାତ୍ର କେତୋଟି ମୁହୂର୍ତ୍ତ
ଗଢ଼ିବାକୁ ଏହିପରି କିଛି ଏକ, ଯାହାର ତଫାତ୍
ପରବର୍ତ୍ତୀ ଦର୍ଶକକୁ ବିସ୍ମିତ ଓ ମୁଗ୍ଧ କରିପାରେ ।
ଆମର ସପନ ଖାଲି ଜୀଇଁ ରହେ ଆମରି ଭିତରେ ।
ଆମରି ମୃତ୍ୟୁରେ ଘଟେ ଚିରକାଳ ଅବସାନ ତା'ର ।
ଗୋ ନର୍ତ୍ତକୀ, ତମେ କହ କେତେ କାଳ ରଖିଚ ଭରସା
ଜୀବିତ ନ ହେଲେ ସୁଦ୍ଧା ଜୀବନର ହେବ ନାମାନ୍ତର ?

ସେଥିପାଇଁ
ଏ ଚନ୍ଦ୍ରକୁ ମୁକ୍ତି ଦେଲି; ବୁଡୁ ସିଏ ପଶ୍ଚିମ ଦିଗନ୍ତେ ।
ତାରାଗଣେ ମୁକ୍ତି ଦେଲି, ଗୋଟି ଗୋଟି ଲୁଚିଯିବା ପାଇଁ
ସକାଳର କବରରେ ସାଙ୍ଗେ ନେଇ ପୂର୍ଣ୍ଣମୀର ସ୍ମୃତି ।
କୋଟି କୋଟି ପୂର୍ଣ୍ଣମୀ ଓ ଅମାବାସ୍ୟା କାଲି ସକାଳରେ
ଏକାକାର ହେବେ । ସାର ହେବ ନିର୍ଦ୍ଦୟ ବିସ୍ମୃତି ।

ସେଥିପାଇଁ
ବାଦ୍‌ଶାହୀ ଇନାମକୁ ପାଦେ ଫିଙ୍ଗି ଆତ୍ମହତ୍ୟା କଲି ।
ଚେତନା ଓ ଚେତନାର ଦୁଃଖ — ଏଇ ଦି'ଛକି ରାସ୍ତାରେ
ପଙ୍ଗୁ ହୋଇ ଆତ୍ମହତ୍ୟା କଲି । ମୋର ସାକ୍ଷୀ କେହି ନାହିଁ ।



# ଧର୍ମପଦ : ନିର୍ଭୁଲ୍ ଠିକଣା

ମନୋଜ ଦାସ

ଏତେବେଳେ ଆକାଶରେ ନକ୍ଷତ୍ରର ସ୍ନିଗ୍ଧ ସମାବେଶ
ସାମୁଦ୍ରିକ ଦିଗନ୍ତରେ ତରଙ୍ଗିତ ପ୍ରଚ୍ଛନ୍ନ ଉଲ୍ଲାସ,
ଏବଂ କୁହେଳି-ମଗ୍ନ ଏ ନିର୍ଜନ ମନ୍ଦିର ଶିଖର
ମୋତେ କିଆଁ କରେ ବାରମ୍ବାର –
ସଜ୍ଞାନେ ଧ୍ୟାନସ୍ଥ,
ଏକାଗ୍ର ମୋ ସତ୍ତା ଆଜି, ସ୍ୱଭାବତଃ ଯାହା ଅବିନ୍ୟସ୍ତ ।
ଅନୁଭବ କରେ ମୋର ତନୁ ମନ ପ୍ରାଣ,
ଅନିର୍ବଚନୀୟ ଏକ ତୀବ୍ର ଆକର୍ଷଣ ।

କାହା ପାଇଁ ? କେଉଁ ଲକ୍ଷ୍ୟ ମୋର ଅଭିପ୍ରେତ ?
ଉତ୍ତର ଅଜ୍ଞାତ ।
ଚିହ୍ନି ମୁଁ ନ ଥିଲି ଯେବେ କିଏ ମୋର ତାତ
ଚିହ୍ନିବାର ଆକର୍ଷଣେ ଚିତ୍ତ ମୋର ଥିଲା ଉଦ୍‌ବେଳିତ,
ପାଠକରି ପଞ୍ଜୀଭୂତ ପୋଥି ପରେ ପୋଥି,
ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ତତ୍ତ୍ୱ ଅସରନ୍ତି,
ପାଇଥିଲି ଯେତିକି ବା ପିତୃ-ପରିଚୟ
ତାହା ଥିଲା ଚିହ୍ନିବାର ପ୍ରଥମ ପର୍ଯ୍ୟାୟ ।

ତା'ପରେ ଭେଟିଛି ମୁହିଁ ଜଣେ ପରେ ଜଣେ
ଦୂରାଗତ ପଥଚାରୀଗଣେ,
ସମୁଦ୍ର ତଟର ବାର୍ତ୍ତା, ବାର୍ତ୍ତା ଚମତ୍କାର

ଅପୂର୍ବ ଉତ୍ଥାନମୁଖୀ ଅର୍କ ମନ୍ଦିରର,
ସେମାନେ ପରଶିଛନ୍ତି; ଆବେଗ-କମ୍ପିତ,
ସେ ବାର୍ତ୍ତା କରିଛି ମୋତେ ଅତି ଉଦ୍‌ବେଳିତ ।
ଅଭିନବ ପ୍ରକଳ୍ପ ସେ, ଯହିଁ ଅଶ୍ୱ ସପ୍ତ,
ପାଷାଣତ୍ୱ ଅତିକ୍ରମି ଉଚ୍ଛଳ ଜୀବନ୍ତ,
ପୂର୍ବାଶାର ଦ୍ୟୁତି ଯହିଁ ମନ୍ଦିର ଗର୍ଭରେ,
ଅପୂର୍ବ ପୁଲକ ସୃଜେ ପ୍ରସ୍ତରେ ପ୍ରସ୍ତରେ,
ପ୍ରତ୍ୟହ ପ୍ରଭାତେ ଯହିଁ ଉଦୟ-ଭାସ୍କର,
ନିଜ ପ୍ରତିବିମ୍ବେ ନିଜେ ପ୍ରଫୁଲ୍ଲ ଅପାର
ଯେଉଁ ପ୍ରତିଷ୍ଠାନ ଏକ ପ୍ରତୀକ ମହାନ
ଅସୀମକୁ ସସୀମର ନମ୍ର ଆବାହନ,
ଅମାପ, ଅପରିସୀମ, ଉଦ୍ଦାମ, ପ୍ରଚଣ୍ଡ
ଜୀବନର ଯାଦୁ ଯେଉଁ ଦେଦିପ୍ୟ ମାର୍ତ୍ତଣ୍ଡ,
ଅତୀତ ଓ ବର୍ତ୍ତମାନ ତଥା ଭବିଷ୍ୟତ
ନିୟନ୍ତ୍ରଣ କରିଥାଏ ଯା'ର ଉଦୟାସ୍ତ,
ବହ୍ନିମାନ ଏକଚକ୍ର, ଅତନ୍ଦ୍ର ଦେବତା
ଯା'ର ସ୍ପର୍ଶେ ବିଦୂରିତ ତମିସ୍ର, ଜଡ଼ତା,
ଏ ମାଟିରେ ତା' ପ୍ରତିଭୂ କରି ସଂସ୍ଥାପନ
ସ୍ୱର୍ଗ ସହ ପୃଥିବୀର ମାର୍ମିକ ବନ୍ଧନ
ଦୃଢ଼ କରିବାହିଁ ଯେଉଁ କର୍ମର ପ୍ରେରଣା,
ତା' ପୁରୋଧା ପିତା ମୋର, ବିଶୁ ମହାରଣା ।

ଏକଦା ନିଶାର୍ଦ୍ଧେ ମୋତେ ସ୍ୱପ୍ନ ଏକ ଦେଲା ଚମକାଇ
ସୁଦୂର ସମୁଦ୍ର ତଟେ ପିତା ମୋର ଚିନ୍ତିତ, ସନ୍ଦେହୀ,
ଯେ ପୁତ୍ର ଭୂମିଷ୍ଠ ହେବା ମାତ୍ରେ ତାଙ୍କୁ ମିଳିଲା ସମ୍ମାନ
ବାରଶହ ଭାସ୍କର ଓ ସ୍ଥପତିଙ୍କ ମୁଖ୍ୟର ଆସନ,
ସେ ପୁତ୍ର ହେବ ତ ତାଙ୍କ ସୁଯୋଗ୍ୟ ଦାୟାଦ ?
ତାଙ୍କ ଅବଧାନ ବିନା ହେବ ବିଷାରଦ ?

ଏକଲବ୍ୟ ସମ ମୁହିଁ କରିଥିଲି ପିତାଙ୍କୁ ବରଣ,
ଗୁରୁରୂପେ; କରୁଥିଲି ପୋଥି ଅଧ୍ୟୟନ,
ଦେଖୁଥିଲି ତାଙ୍କ ସୃଷ୍ଟ ମୋ ଗ୍ରାମର ସୁରମ୍ୟ ମନ୍ଦିର
ଅନୁସରି ତତ୍ତ୍ୱରାଶି ଗଢୁଥିଲି କେତେ ବାଲିଘର ।
ସେ ସ୍ୱପ୍ନର ସ୍ମୃତି ମୋତେ କରିଥିଲା ଅଥୟ, ବ୍ୟଥିତ
ଅତଏବ କୋଣାର୍କର ଦ୍ୱାରଦେଶେ ହେଲି ଉପନୀତ ।
ଦ୍ୱାଦଶ ବରଷ ବ୍ୟାପୀ ପ୍ରସ୍ତ ପରେ ପ୍ରସ୍ତ
ସେ ବିଶାଳ ମନ୍ଦିରର କଳେବର ଗଠନରେ ବ୍ୟସ୍ତ
ଶୀର୍ଷକ-ସ୍ଥାପନ କଳା ପିତା ମୋର ହେବାରେ ବିସ୍ମୃତ,
କିବା ଆଚମ୍ୱିତ !

ଉପଲବ୍ଧି କଲି ମୁହିଁ, ମୋ ସ୍ୱପ୍ନର ପ୍ରଚ୍ଛନ୍ନ କାରଣ,
ଏ ସଙ୍କଟେ ଦୈବଦୃଷ୍ଟ ମୋର ଅବଦାନ ।
ମୋ ପରିବେଶିତ ତତ୍ତ୍ୱେ ସମସ୍ୟାର ହେଲା ସମାଧାନ,
ଆନନ୍ଦ ଉଲ୍ଲାସେ ଆଜି ମୁଖରିତ ମନ୍ଦିର ପ୍ରାଙ୍ଗଣ ।

ଦ୍ୱାଦଶ ବରଷ ବ୍ୟାପୀ ସାଧନାର ଅନ୍ତେ,
ବାରଶହ ଶିଳ୍ପୀ ଯେବେ ନିମଜ୍ଜିତ ପୁଲକର ସ୍ରୋତେ,
ମୁଁ ଏକାକୀ ଜ୍ୟୋତ୍ସ୍ନାପ୍ଲୁତ ଶିଖର ଆରୋହି
ନିଜକୁ ମୁଁ ଦେଇଛି ହଜାଇ,
ଅନିର୍ବଚନୀୟ ଏକ ଧ୍ୟାନ-ତନ୍ଦ୍ରା ବଶେ,
ଏକାନ୍ତେ, ନିଃଶେଷେ ।

ମନେହୁଏ ଏ ସମୁଦ୍ର ତଥା ତା'ର ବିପୁଳ ପ୍ରଶାନ୍ତି,
ମୋ ତନୁ-ମନର ଏକ ସ୍ନିଗ୍ଧ ପରିବ୍ୟାପ୍ତି,
ଏତେବେଳେ ମନେହୁଏ ଏ ନକ୍ଷତ୍ରଗଣ,
ମୋ ପ୍ରାଣର ନାନାବିଧ ଅଜସ୍ର ସ୍ପନ୍ଦନ ।
ମନେହୁଏ ଏ ଆକାଶ ନିସ୍ତବ୍ଧ ଅସୀମ
ଆଉ କିଛି ନୁହେଁ, ମୋର ଚେତନାର
ଭିନ୍ନ ଏକ ନାମ ।

ଚାହୁଁ ଚାହୁଁ ରାତି ହୁଏ ଗତ–
ସହସ୍ର କୁଟୀର ବ୍ୟାପୀ ନିମ୍ନଦେଶେ ସଭିଏଁ ସୁଷୁପ୍ତ ।
ପୂର୍ବାଶାରେ ସ୍ୱର୍ଣ୍ଣପ୍ରଭ ସୂର୍ଯ୍ୟର ସଙ୍କେତ,
ସେ ଅବା ମୋହରି ଆତ୍ମା, ମୋ ସମ୍ମୁଖେ
ଉଦୟ-ଉଦ୍ୟତ ।
ଏତେବେଳେ ମନେହୁଏ ତାହା ସହ ହୋଇ ଏକୀଭୂତ
ଏ ମନ୍ଦିର ଗର୍ଭଗୃହେ ସଂଗୋପନେ ହେବି ଆବିର୍ଭୂତ ।
ମନ୍ଦିରକୁ ଘେରି,
ଉଦ୍ଦାମ ଉତ୍ତାଳ ଏହି ଅସଂଖ୍ୟ ଲହରୀ–
ମୃଦୁ ମୃଦୁ ହିଲ୍ଲୋଳରେ କହୁଛନ୍ତି ସେମାନଙ୍କୁ ଜଣା,
ସୂର୍ଯ୍ୟାଲୋକେ ମୋର ଯାହା ନିର୍ଭୁଲ ଠିକଣା ।
ମୋର ପରିଚୟ ନୁହେଁ ଧର୍ମପଦ, ମହାରଣା-ସୂତ,
ମୁଁ ଏକ ଓଁକାର ଧ୍ୱନି, ଅଜାତ, ଅଶ୍ରୁତ ।



କୋଣାର୍କର ଅବଲୁପ୍ତ ମୁଖ୍ୟ ମନ୍ଦିରର ଶିଖର ସ୍ଥାପନ ଅନ୍ତେ ଧର୍ମପଦର ନିରୁଦ୍ଦେଶକୁ ଭିତ୍ତିକରି ଯେଉଁ କିଂବଦନ୍ତି ପ୍ରଚଳିତ, ତାହା ଏକ ସାଧାରଣ କୈଫିୟତ୍ ମାତ୍ର । ଧର୍ମପଦ ଏକ କ୍ଷଣଜନ୍ମା ବିଭୂତି । ସେଭଳି ସତ୍ତାସମୂହର ଜନ୍ମ ଓ ବିଲୟର ହେତୁ ଭିନ୍ନ ସ୍ତରର ପ୍ରେରଣା-ପ୍ରସୂତ ।

# ଲାଲ୍ ପାଗୋଡ଼ାର୍ ପ୍ରେତ

ରବି ସିଂ

।ଏକ।

ଏ ପାପୀ ଜାତିର
ମୁଁ ଏକା ପୁଣ୍ୟବାନ୍
ହେଲେ ବି ତ୍ୟକ୍ତ
ମୁଁ ପରିତ୍ୟକ୍ତ
ଏ ମାଟିର ସଂତାନ୍ ।

ଯେ ହେତୁ ଦେଖିଛି
ମୁହିଁ ମୋ ଜାତିର
ଭାଲେ ବାରୁଦର ଟୀକା,
ସେ ହେତୁ ହୃଦୟ
ଟେକିଛି ଆଜି ଏ
ରକ୍ତ-ରୁଦ୍ର-ଶିଖା...
ସେ ହେତୁ ଦୁଃଖେ
ଏଇ କବିତାର ଲେଖା ।

ମୁଁ ଶୁଣିଛି ସେହି
ବାଲୁତ-ବିଧିର
କ୍ଷୁବ୍‌ଧ-ଅଧୀର ଗାଥା,
ମୁଁ ଦେଖିଛି ତା'ର
କଅଁଳ ବୁକୁରେ
ଜଳିଥିବା କେତେ ଚିତା !

ସେ ଚିତା ଜଳୁଛି ଏବେ...
ଯେ ଯିବ ଦେଖିବ
ଚନ୍ଦ୍ରଭାଗାର
ସିନ୍ଧୁ-କିନାରେ ତେବେ ।
ଯେଉଁଠାରେ କେବେ
ବାରଶ' ନିହଣ
ଦିନେ ଉଠିଥିଲା ହସି,
ଯେଉଁଠାରେ କେବେ
ବାରଶ' ବିଧାତା
ଯାପିଥିଲେ କେତେ
ଶ୍ରମ-ଘର୍ମିଳ-ନିଶି...
ଅ-ମଳିନ ହସ ହସି ।

ଶିଳ୍ପକଳାର
ସବୁ କୌଶଳ
ଯହିଁ ହୋଇଥିଲା ସ୍ତବ୍ଧ,
ନିଷ୍ଫଳତାରେ
ଯହିଁ ଶୁଭିଥିଲା
ଶିଳା ଖସିବାର ଶବ୍ଦ;
ମହାଶୂନ୍ୟର ତୀରୁ...
ଅଭ୍ରଂଲିହ
ସୂର୍ଯ୍ୟରଥର ଶିରୁ ।

ଦୁର୍ଜ୍ଜୟ ତେବେ
ରହିଯିବ ହାୟ
ପ୍ରସ୍ତରେ ଗଢ଼ା
ସୂର୍ଯ୍ୟ ରଥର ଚୂଡ଼ା,
ଭୀମକାୟ ଏକ
ବିସ୍ମୟ ଆସି
ସବୁରି ମନରେ
ଯେବେ ହୋଇଥିଲା ଛିଡ଼ା;

ଶୀତ-ଶୈତ୍ୟରେ
ବରଫ-ବଜ୍ର ସମ,
ଯେବେ ଆସିଥିଲା
ରାଜାର ଆଦେଶ
ମୁଣ୍ଡି ନ ମରି
କୋଣାରକ ଯେବେ
ହୋଇବନି ଶେଷ,
ସରିବନି ଯେବେ କାମ;
ବାରଶ' ବିଧିର
ଶିରଚ୍ଛେଦ କରି
ହସିବ ହସିବ ଯମ ।

ମହା-ମରଣର
ସେହି ଭୀତି ତଳେ
ଆଶା-ସଞ୍ଚାର କରି,
ହସି ହସି ହସି
ପ୍ରତିଭାର ଶଶୀ
ଯେବେଳେ ଉଠିଲା
ଆକାଶ ବତାସ ଚିରି...
ଟେକିଲା ଉର୍ଦ୍ଧେ
ଐନ୍ଦ୍ରଜାଲିକ ହାତ,
କାଉଁରୀ-ପରଶେ
ମୁଣ୍ଡି ମରିଲା
ଅଚଳ ସୂର୍ଯ୍ୟରଥ ।



(ସଂପାଦିତ ଅଂଶ)

# କୋଣାର୍କ

ଜଗନ୍ନାଥପ୍ରସାଦ ଦାସ

ଏଠାରେ ପର୍ଯ୍ୟଟକ ହିଁ ସମ୍ରାଟ
ଗାଇଡ୍ ଏଠାରେ ଇତିହାସକାର
ପ୍ରତ୍ନତାତ୍ତ୍ୱିକମାନେ ଏଠାରେ ସ୍ଥପତି
ଆଲବମ୍‌ରେ ନିର୍ଦ୍ଧାରିତ ଶିଳ୍ପଶାସ୍ତ୍ର
କାରିଗରୀ ସବୁ କ୍ୟାମେରାରେ ନିହିତ

ପ୍ରାଚୀନ ଗୌରବ ପଡ଼ି ରହିଥାଏ
ଖାଲି ବସ୍ ଭିତରେ ବିନା ଜଗୁଆଳ
ପୋଷ୍ଟକାର୍ଡରେ ବିକ୍ରିହୁଏ ଚାରୁକଳା
ଐତିହ୍ୟ ଝୁଲୁଥାଏ ରାସ୍ତା ପାଖ ଦୋକାନରେ
ପରମ୍ପରା ପୋତି ହୋଇଯାଏ
ପିକ୍‌ନିକର ବାଲିମିଶା ଆବର୍ଜନାରେ

ପବନର ଈର୍ଷାନ୍ୱିତ ଆକ୍ରୋଶରେ
ସ୍ଥାପତ୍ୟ ଖଣ୍ଡିତ ହୋଇଯାଏ
ଯେପରି ଶାମ୍ବର ଅଭିଶପ୍ତ ଦେହ
ଉପରୁ ପଥର ଖସିପଡ଼େ
ସ୍ୱାଭିମାନର ଅସହିଷ୍ଣୁ ଦାବିର ଦାୟରେ
ସମୁଦ୍ରକୁ ଡେଇଁପଡୁଥିବା ବାଳକ ଭଳି
ପାନ୍ଥଶାଳାମାନ ଚତ୍ୱରକୁ ଘେରିଯାନ୍ତି
କଳାପାହାଡ଼ର ପଲଟଣ ହୋଇ

ବାରବର୍ଷର ତପସ୍ୟା ବ୍ୟର୍ଥ ଯାଏ
ବୁଢ଼ା ଜଙ୍ଗଲରେ ହଜିଯାଏ ବଂଶାବଳୀ
କିମ୍ବଦନ୍ତୀ ଜାହାଜମାନଙ୍କୁ ଡାକେ
ସମୁଦ୍ର ଭିତରୁ ବାହାରି ସାକ୍ଷ୍ୟ ଦେବା ପାଇଁ
ଧୂ ଧୂ ବାଲିରେ ତା'ର ଜବାବ ନ ଥାଏ
ଝାଉଁ ଗଛ ବିଦ୍ରୂପର ସର୍ବଜ୍ଞ ହସ ହସେ

ଶେଷ ବସ୍ ଚାଲିଯିବା ପରେ
ପୁଣି ସମୟର ରାଜତ୍ୱ ଆରମ୍ଭ ହୁଏ
କୋଣାର୍କ ମୁଣ୍ଡଟେକି ଠିଆ ହୁଏ
ଉତ୍ତୁଙ୍ଗ କଳାର ଦିବ୍ୟ ହିମାଚଳ ଭଳି
ନିଜର କୃଷ୍ଣବର୍ଣ୍ଣ (ଭବ୍ୟତାରେ)
ଆକାଶକୁ ସ୍ପର୍ଦ୍ଧା କରି
ଭୂ ଭାଗକୁ ପାଦ ତଳେ ରଖି

ଆଉ ସବୁ ଶବ୍ଦ ଲିଭିଯାଏ
ସମୟର ସହର୍ଷ ହ୍ରେଷାରେ
ଚକ ତଳେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ
ସାମାନ୍ୟ ସଫଳତା ଓ ତୁଚ୍ଛ କୃତିତ୍ୱ
ପୁଣି ଏକ ସାଧାରଣ ସକାଳ ପର୍ଯ୍ୟନ୍ତ
ଶାଶ୍ୱତ ଶିଳ୍ପର ସମଗ୍ର ସତ୍ତାକୁ
ଅଲୌକିକ ସାରଥି ଉଡ଼ାଇ ନିଏ
ମହାକାଳର ଦୈବୀ ଅନ୍ତରୀକ୍ଷକୁ ।



# ଭଙ୍ଗା ମନ୍ଦିର

ସୀତାକାନ୍ତ ମହାପାତ୍ର

ଅପ୍‌ସରା ନାଭିରେ
ନିଶବ୍‌ଦରେ
ରାତିସାରା ତାରା ଓ କାକର ଝରେ ।।

ମନ୍ଦିରର ପୋଖରୀ ତୁଠରେ
ଅପରିଚ୍ଛନ୍ନ ଦୋସିଆଁ ତାଳିପକା
ଇତିହାସ ପରଂପରା
କଚାହୁଏ ବିଦ୍ୟାଦାତା ଗଣେଶଙ୍କ ପ୍ରଶସ୍ତ ପିଠିରେ ।।

ଅନ୍ଧ ଦେବତାଙ୍କ ପରି ନିଜ ଖିଆଲରେ
ବେଳେ ବେଳେ ଦମ୍‌କାଏ ହାଓ୍ବାପରି
ଦୁଇ ଚାରି ବାଦୁଡ଼ି ଉଡ଼ିଯାନ୍ତି
ଅଂଧାର ଅଭ୍ୟଂତରରୁ
ଅନିଶ୍ଚିତ ଭବିଷ୍ୟତ ଆଡ଼େ
ଉଦାସୀନ ଆକାଶର ଦାଢ଼େ ।।

ଦୀର୍ଘ ଆଉ ଅସରନ୍ତି ଅପରାହ୍ଣ ସରିଆସେ
ଦୂରରେ ଶଗଡ଼ ଗାଡ଼ି କେଁ କଟ
ମନେହୁଏ ସମୟ ଅଟକିଯିବ ଆଉ ଟିକକରେ
ଅରମା ଗହୀରି ବିଲ
ଅପନ୍ତରା ଆଶାହୀନ ସଂଜ ଅଂଧାରରେ ।।

କାହାକୁ କିଏ ଡାକୁଛି
ସରାଗରେ, ଆକାଂକ୍ଷାରେ, ଲୋଭରେ, ଦୁଃଖରେ
(ଏ ଜନ୍ମରେ, ଆର ଜନମରେ)
ପାଣିର ଓସାର ଆଉ ଉଜ୍ୱଳ ମୁହଁରେ ହସ
ଅକସ୍ମାତ ଆଶାର ଇଙ୍ଗିତ ହୋଇ
ମନ୍ଦିରର ଛାଇ  ଆଉ ଉଇଁ ଆସୁଥିବା ଜହ୍ନ
ଉଭୟଙ୍କୁ ସ୍ନେହରେ ଓଟାରେ ।।

ଅପେକ୍ଷାରେ ଦିନ ସରେ ।
ହାଇ ମାରି ଉଠିଯିବା ଆଗୁଁ
କେହିହେଲେ ଆସନ୍ତେନି ଜଣେ ଆର୍ତ୍ତିଭକ୍ତ
କୁଷ୍ଠୀ ଭିକାରୀଟି ନିଜ ମନକୁ ପଚାରେ ।।



# କୋଣାର୍କ : କିଛି ଭୟ, କିଛି ଅଭିମାନ

ଜୟନ୍ତ ମହାପାତ୍ର

॥ ୧ ॥

ଝାଉଁ ବଣରେ ଆଜି କୋଉ ହଜିଥିବା ସ୍ମୃତି
ଝାଉଁ ବଣରେ ଆଜି କୋଉ ଅଭିଶପ୍ତ ପବନ
ମୁଖଶାଳାର ପଞ୍ଜରା ଦେଖି ଦୟାରେ ଆଜି
ଶିଉଳି ତା'ର ସବୁଜ ଶାଢ଼ି ଦିଏ ଢାଙ୍କି ॥

॥ ୨ ॥

ଏଇ କ'ଣ ସେଇ କୋଣାର୍କ
ହଜିଯାଇଚି ଯିଏ ଆଜି
ପିକ୍‌ନିକ୍ କରୁଥିବା ମଣିଷଙ୍କ ଗହଳରେ ?

ସେଇ କୋଣାର୍କ
ଆଜି ନିଏ ପରା
ରଙ୍ଗିନ୍ ଫଟୋ ଖଣ୍ଡରେ ମୋର
ଅ-ପୂର୍ଣ୍ଣ ସ୍ୱପ୍ନର ପ୍ରତିଶୋଧ ?

॥ ୩ ॥

ଏକା ଲାଗେ ମତେ ଆଜି ବହୁତ ଏକା
ହଁ ଭୟ ହୁଏ
କାଳେ ସେ ଅତୀତର ସ୍ୱପ୍ନରେ ମଣିଷ ମିଶିଯିବ ପରା !
ଜହ୍ନ ଉଠେ
ପୁଣି କେତେବେଳ ବୁଡ଼ିଯାଏ
କାହାର ବା ଦୁନିଆ କଥା ମନେପଡ଼େ ?

ଦୁଇ ହାତ ମୋର ପଛଆଡ଼େ ଜାବୁଡ଼ି ଧରି ମୁଁ ଚାଲିଥାଏ
ଚାରିଆଡ଼େ ଅନାଏ ଦୂରକୁ ଦେଖେ
ଭଙ୍ଗା ମନ୍ଦିରର ମନର ସେ ପାରିକୁ
ଆଉ ମୋ ନିଜର ଓଜନିଆ ମନ
ମୋ ଆଗରେ
ବରଷାଦିନିଆ ଜଙ୍ଗଲର ମୟୂରପୁଚ୍ଛ ଖୋଲିଦିଏ—
ଆଜି ଭାବେ
ଅଛି କି କୌଣସି ପଥ ସେ ପଥରଙ୍କ ଭିତରେ ?

ଏକା ଲାଗେ ମତେ ବହୁତ ଏକା
ଭୟ ହୁଏ ଦୁନିଆଟା ହଠାତ୍ ବଦଳିଗଲା ଭଳି
ଭୟ ହୁଏ ସେ ଅନ୍ଧାରୁଆ ଆଖିକୁ ମୋର
ସମୟର ସେ ଅନ୍ଧାରୁଆ ଦେହରେ ମୋର
ଭୟ ହୁଏ ଯୁବତୀର ସେ ପଥରର ହାତକୁ
ଦେଉଳର ଭଙ୍ଗା ପଶ୍ଚିମ କାନ୍ଥରେ
ଯୁଗ ଯୁଗ ଧରି କେବଳ ତା'ରି ନିଜ ହାତରେ
ଆପଣା ନଗ୍ନ ସ୍ତନର ସ୍ପର୍ଶ ଯିଏ ଅନୁଭବ କରୁଥାଏ
ଆଉ ଏକା ଲାଗେ ମତେ ବହୁତ ଏକା
ତା'ରି ସ୍ୱପ୍ନରେ ବି
ଦୁନିଆକୁ ଜିତୁଥିବା ସେଇ ଚାହାଣିକୁ ଦେଖି ।।

।। ୪ ।।

ଆଜି ପୁଣି ଦେଖେ
ତୁମର ସେଇ ଭଗ୍ନ ଦେହର ଭୟ
ତାତ୍ତ୍ୱିକ, ସ୍ଥିର—
ଆଉ ମୋ ନିଜର ସାନ ଭୟଟି
ଦେଖୁଥାଏ ଯିଏ ସର୍ବଦା
ମଣିଷ ଜୀବନର କେବଳ ପ୍ରଥମ ଓ ଶେଷ ଦିନ

ଚିହ୍ନି ହୁଏନା କିଛି
ରାଜମୁକୁଟ ଅବା ସୂର୍ଯ୍ୟଙ୍କ ତେଜ
କୋଳାହଳ କିମ୍ବା ଉଜ୍ଜ୍ୱଳତା
ଓ ପଥରମାନଙ୍କରେ ତୁମର
ଏଇ ଜାତିର ଲମ୍ବିଥିବା ଅସରନ୍ତି ଅପରାହ୍ଣ
ଚିହ୍ନି ହୁଏନା ମଧ୍ୟ
ମୋ ଦୃଷ୍ଟିରୁ କ୍ଲାନ୍ତ ଅଭିମାନ
ଯେଉଁଠି ଥାଏ ମୁଁ ଏକା ଏକା
ନିଜ ହାଡ଼ମାନଙ୍କ ସହିତ
ଶିକ୍ଷା ଖାଇସାରିଥାଏ ଯେଉଁଠି
ରକ୍ତମାଂସର ପୂରା ଶାସନ ।।

।। ୫ ।।

ପୁଣି ସେଇ ଭୟ ଭିତରେ ମୋର
"ଇସ୍, କ'ଣ ହେଇଚି ଏ ସବୁ!"
ଶୁଣାଯାଏ କଥା ସେମାନଙ୍କର ।
ସକାଳ ସୂର୍ଯ୍ୟର ସେ ଆଲୁଅରେ ବି
କେତେ କଳା ଭରି ଥାଏ ପଥର ହୃଦୟ ଭିତରେ !

କେବଳ ତୁମେ, ଆଉ ସୂର୍ଯ୍ୟାଲୋକ
ଆଉ ସେ ତେର ଚଉଦ ବର୍ଷର ପୁଅଝିଅ ଦୁଇଟି
ମୁରୁକି ହସୁଥିବା ମିଥୁନ ମୂର୍ତ୍ତିଙ୍କ ସାମନାରେ
ଛିଡ଼ା ହେଇ ମନେ ମନେ କହୁଥାନ୍ତି
"ଆଉ ଟିକେ ଭଲା ବଡ଼ ହେଇଥାନ୍ତୁ ଆମେ !"

ଆଉ ସେତେବେଳ
ସନ୍ଧ୍ୟାବେଳର ସୂର୍ଯ୍ୟ
ପିଲାଦିନଟାକୁ ମୋଡ଼ି ମକଚି
ଚାରିକଡ଼ରେ ଥିବା ଝାଉଁ ବଣକୁ ଫିଙ୍ଗି ଦିଏ ।।

॥ ୬ ॥

ବାସ୍ତବତାର ଘେର ଭିତରେ
ଲାଗେ ସବୁ ଅବାସ୍ତବ ପରା ।
ବହୁ ଦୂରରୁ ଭାସି ଆସୁଥିବା
କୌଣସି ଅଜଣା ବାସନା ପରି
ପବନର ଲୋଟଣି ଶରୀରରେ
ଶହ ଶହ ଅଚିହ୍ନା ବଢ଼େଇଙ୍କ ନାଁ
ରାଜା ପ୍ରଜାଙ୍କ ବୈଷମ୍ୟ
ବାପ ପୁଅର ସମ୍ପର୍କ
ଦୂର ଗାଁ ଗଣ୍ଡାରେ ଏକାକୀ ରହିଥିବା
ସ୍ତ୍ରୀମାନଙ୍କ ଯନ୍ତଣାର ସୂର୍ଯ୍ୟଙ୍କ ଶବାରି ।

ଥାଏ ପ୍ରତ୍ୟେକ ପଥରର ଗୁହ୍ଵତାରେ
ଖୋଲା ଝରକା ଗୋଟିଏ ଗୋଟିଏ
ସ୍ୱପ୍ନମାନେ ନିଃଶ୍ୱାସ ନେଉଥାନ୍ତି ଯେଉଁଠି
ଢାଙ୍କିଦେଇ ଯନ୍ତ୍ରଣାକୁ ସକାଳର କୁହୁଡ଼ିରେ ॥



# ଶିବେଇ ସାଂତରା-୨

ରାଜେନ୍ଦ୍ର କିଶୋର ପଂଡା

କଂଚା ବୟସ ତ, ପୁଣି ପହିଲା ଥର
କାଂଗାଳ
ସିଧା ସରପଟ ହାମୁଡ଼େଇ ସଜ ହୁଅଂତେ
ବୁଢ଼ୀ ବୋଇଲା – ପୁଅ !
ତବତ ଜାଉ କ'ଣ ଏମିତି ଖାଆଂତି ?



# ସଂସ୍କରଣ : କୋଣାର୍କର

ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଅବଶେଷେ ସୁମମାପ୍ତ ହେଲା ଦିନେ
ରାଜକୀୟ ଏ କାବ୍ୟ ରଚନା
ଉଡ଼ିଲା କେତନ ଉଚ୍ଚେ ମୋ ଶିଖର ଦେଶେ
ବାଜିଲା ବାଦିତ୍ର ବହୁ
ଘଣ୍ଟ, ଘଣ୍ଟା, ବେଣୁ, ବୀଣା, ତୂରୀ ଓ ମର୍ଦ୍ଦଳ
କେତେ ଧୂପ-ଦୀପ ପୁଣି ମନ୍ତ୍ର ଉଚ୍ଚାରଣେ
ଅପୂର୍ବ ପ୍ରତିମା ହେଲେ ସଂସ୍ଥାପିତ
ଗର୍ଭଗୃହେ ସିଂହାସନପରେ ।
ନିୟୋଜିତ ହେଲେ ପୁରୋହିତ, ନିଯୋଗମଣ୍ଡଳୀ
ଏହାପରେ ଯାନିଯାତ୍ରା, ଭୋଗରାଗ, ଉତ୍ସବର ଘଟା
ସମବେତ ହେଲେ ଭକ୍ତ, ଉପାସକଗଣ
ମୋତେ ପ୍ରଦକ୍ଷିଣ କରି ଆରମ୍ଭିଲେ କ୍ଷେତ୍ର ପରିକ୍ରମା
ମୋ ପ୍ରତିମା ନେଇ କଲେ ରଥଯାତ୍ରା ।
ଆସିଲେ ବଣିକ ଦଳ ସଜାଇଲେ ବିପଣୀ ସୁନ୍ଦର
ହେଲି ଧନ୍ୟା, ମନୋରମା, ଅତି ଅନୁପମା
ସ୍ୱପ୍ନହେଲା ଚରିତାର୍ଥ ମୋର ।
କିନ୍ତୁ ହାୟ କିଏ ଜାଣିଥିଲା ?
ମୋତେ ଚାହିଁ ନଥରୁ କରୁଣ ନୟନେ
ରାଜା ଦିନେ ଘେନିଲେ ବିଦାୟ ।

ଏହାପରେ ହେଲି ମୁହିଁ ହତପ୍ରଭ
ଦୀପ୍ତି ମୋର ଦିନୁ ଦିନୁ ହେଲା ବିମଳିନ
ମ୍ଳାନ ହେଲା ଅଧର ରକ୍ତିମା
ନ ବୁଝିଲେ କେହି ମୋ କଷଣ
ନ ବୁଝିଲେ—
ଯତନେ ପାଳିବା କେତେ ଆବଶ୍ୟକ ଜନ୍ମଦେବା ଠାରୁ
ଗଢ଼ିବାରୁ କେତେବଡ଼ ଅତୁଟ ରଖିବା ।
ଅସମର୍ଥ ହେଲେ ଯେବେ ରକ୍ଷକ ମଣ୍ଡଳୀ
କ୍ଷୁଣ୍ଣହେଲା ସମ୍ପଦ ମୋହର
ଥରଥର ହେଲା ମୋର ଅଙ୍ଗ
ପୁଣି ମୁଁ ଥରିଲି ଭୟେ ପ୍ରକୃତିର ତୀବ୍ର ଅଟ୍ଟହାସ୍ୟେ
କେହି ଯା'ର ପ୍ରତିରୋଧ ନ ପାରିଲେ କରି
କିଏ ବା କରିବ ? କାହାନ୍ତି ସେ ଲୋକ ?
ଚାହିଁଲି ମୁଁ ଚଉପାଶେ, ଶୂନ୍ୟ ଏ ବାଲୁକା ଶଯ୍ୟା
କେବଳ ଦୂରରୁ ଚାହିଁ, ଅସହାୟ ଦଳେ ଭୀରୁ
ଦେଖୁଛନ୍ତି ମୋର ଦୁର୍ଦ୍ଦଶାକୁ, ଜରାଜୀର୍ଣ୍ଣ ମ୍ଳାନ ତନୁଶ୍ରୀକୁ ।
ଏମାନେ ତ ଭୋଗକ୍ଳାନ୍ତ, ଅବସନ୍ନ
ଏମାନଙ୍କ ଶକ୍ତି କାହିଁ
କରିବାକୁ ସଯତନେ ସୁରକ୍ଷା ପ୍ରଦାନ ?
ମୋତେ ଅବା ମୋ ସୁହୃଦଗଣେ
ସେମାନେ ବୁଝିବେ କାହୁଁ ତ୍ୟାଗର ମହିମା
ସେ'କି କେବେ ତ୍ୟାଗ କରିପାରେ
ଧନ, ମନ, ଅବା ତା'ର ପ୍ରାଣ
ସ୍ୱଚ୍ଛ ମାତ୍ର ସମ୍ବଳ ଯାହାର
ସଦା ନିୟୋଜିତ ଯିଏ ଆତ୍ମରକ୍ଷଣରେ ?

ଏଣୁ ଆଜି ଦୀନ ବେଶେ ଏ ବିଜନ ସିକତାରେ
ଢାଳେ ମୁହିଁ ମୌନ ଦୀର୍ଘଶ୍ୱାସ
ବିସର୍ଜିଣ ସବୁ ଆଶା ହେବା ପାଇଁ ପୁଣି ଶ୍ରୀମଣ୍ଡିତ ।
ଜାଣେ ଆଉ ନ ଫେରିବ
ଯଉବନ ହଜିଯାଏ ଯଦି
ଶୁକ୍ଳକେଶ ହେବନି କୃଷ୍ଣାଭ
ଏଣୁ ଊର୍ଦ୍ଧ୍ୱେ ହସ୍ତ ଉତ୍ତୋଳିଣ
ମୁଁ ଜଣାଏ—
ହେ ଦେବତା ! ଲୋଡ଼ନା ମୁଁ କୃତ୍ରିମତା,
ଯଦି ଥାଏ ପୁନର୍ଜନ୍ମ
ମୋତେ ମିଳୁ ସେଇ ଅନୁଗ୍ରହ ।

(ଶେଷାବତରଣ)



# କୋଣାର୍କ

କମଳାକାନ୍ତ ଲେଙ୍କା

ଯେବେ ଚନ୍ଦ୍ରଭାଗା ଯାଅ
ଶୀତ ବର୍ଷା ଖରା ବା ନିଜ ଇଚ୍ଛାରେ
ମନ ବଳୁଚି ଯେତେବେଳେ
ପଥର ମୂର୍ତ୍ତିମାନଙ୍କ ସାଥିରେ
ଟିକେ ରଙ୍ଗରସ ଜମିଲେ ହେଲା !
ଝାଉଁଳି ପଡ଼ିଥିବା ଫିକା
ରଙ୍ଗକୁ ନେଇ
ତେଣିକି ଇତିହାସ ଚିକ୍‌କଣ
ହଉ ବା ଅଲଣ୍ଡୁ ପରି
ଝଲକାଏ ଆଲୁଅ
କି ରତୁ କି ରତୁହୀନତାର ନାଚଗୀତ
କି ଶାମୁକେ ଗେଣ୍ଡାଏ ରସ ହଉ
ସଞ୍ଜସଞ୍ଜିଆ ପବନ ସାଥିରେ
ହାତ ଆଉଁଶା ଭାବ ନେଇ
ସମୁଦ୍ର ସହ କଥା ହବାଙ୍କୁ
ମୌନତା । ନିହଣ ହାତୁଡ଼ି ପରି
ପ୍ରତି ଠୁକ୍ ଠୁକ୍‌ରେ
ପଥର ହେଇ ଯିବାଙ୍କୁ
ଜୀବନର କାରିଗରି । ଯଉଁ
ବୁଢ଼ା କାରିଗରମାନେ ଏଯାବତ୍

ନିଶ ବାଡ଼ି ଛାଡ଼ି, ଘର ସଂସାର ଭୁଲି
କେବଳ ଗୋଟିଏ ଅଝଟ
ଏକଜିଦିଆ
ପିଲା ସାଥିରେ ବାଡ଼ି ଧରନ୍ତି,
ଅଡ଼ି ବସନ୍ତି — ଜାଣ,
ଉଣ୍ଣଖିଆ ଇତିହାସର ପୃଷ୍ଠା ଭିତରୁ
ସେଇମାନେଇ ଅକ୍ଷର ଭଳି
ପଥର ଖୋଳନ୍ତି । ଆଉ
ଅଜର ଅମର ହବା କଥା
ମନେ ପଡ଼ିଲା ବେଳକୁ ସମୁଦ୍ର
ଆମ କାନ ଧରି ଉଠ୍‌ବସ୍ କରୁଥାଏ ।
ନର୍ତ୍ତକୀମାନଙ୍କ କିରି କିରି ହସ ସାଥିରେ
ଝାଉଁବଣ କାନ୍ଦୁଥାଏ ତ କାନ୍ଦୁଥାଏ ।



# କୋଣାର୍କରେ : ଏଠି ସବୁ ମିଛ

ଡ. ପ୍ରସନ୍ନ କୁମାର ମିଶ୍ର

ଏଠି ସବୁ ମିଛ
ଶିବେଇ ସାଂତରାର ଅବୁଝାପଣ ମିଛ
ବିଶୁ ମହାରଣାର ପିତୃତ୍ୱ ମିଛ
ବାରଶ' ବଢ଼େଇଙ୍କ କାନ୍ଦଣା ମିଛ
ରାଜାର ଧମକ ମିଛ
ଦଧିନଉତି ମିଛ
ତୁମେ ମିଛ
ମୁଁ ମିଛ ।

ଏଠି ସବୁ ମିଛ
ସୂର୍ଯ୍ୟର ଲୋହିତପଣ ମିଛ
ସମୁଦ୍ର ମାଡ଼ି ଆସିବା ମିଛ
ଆକାଶ ଭାଙ୍ଗି ପଡ଼ିବା ମିଛ
ମୁଁ ପୋତି ହୋଇପଡ଼ିବା ମିଛ
ତୁମେ ନୃତ୍ୟ କରିବା ମିଛ ।
ଖରା ମିଛ
ତରା ମିଛ
ତୁମେ ମିଛ
ମୁଁ ମିଛ ।

ଏଠି ସବୁ ମିଛ
ପୂନେଇଁ ଜହ୍ନର ଗୋଲ୍ ମୁହଁ ମିଛ
ସାଧବାଣୀର ବୋଇତବନ୍ଦାଣ ମିଛ
ତୁମର ସ୍ତନଭାର ମିଛ
ମୋର ପୁରୁଷକାର ମିଛ
ନାଗ ମିଛ
ନାଗୁଣୀ ମିଛ
ତୁମେ ମିଛ
ମୁଁ ମିଛ ।

ଏଠି ସବୁ ମିଛ
ପ୍ରସ୍ତରିତ ଯୋନିସହସ୍ର ମିଛ
ଅନାବୃତ ସ୍ତନସହସ୍ର ମିଛ
ବିକମ୍ପିତ ନିତମ୍ବସହସ୍ର ମିଛ
ଆମର ଦାମ୍ପତ୍ୟ ମିଛ
ତୁମର ରମଣୀତ୍ୱ ମିଛ
ଜିହ୍ୱା ମିଛ
ଓଷ୍ଠ ମିଛ ।
ତୁମେ ମିଛ
ମୁଁ ମିଛ ।

ଏଠି ସବୁ ମିଛ
ସାଧକର ତପସ୍ୟା ମିଛ
ନର୍ତ୍ତକୀର ଘୁଙ୍ଗୁର ମିଛ
ରାଣୀର ବ୍ରତ ମିଛ
ରାଜାର ବୀରତ୍ୱ ମିଛ
ମୋର ଜ୍ଞାନ ମିଛ
ତୁମର ପ୍ରେମ ମିଛ
ତୁମେ ମିଛ
ମୁଁ ମିଛ ।

ଏଠି ସବୁ ମିଛ
ପ୍ରସ୍ଫୁଟିତ ଐଶ୍ୱର୍ଯ୍ୟ ମିଛ
ହାତୀଙ୍କ ସ୍ୱଦେଶପ୍ରେମ ମିଛ
ଅଶ୍ୱଙ୍କ ଦେଶଭକ୍ତି ମିଛ
ଆମର ଉଲ୍ଲାସ ମିଛ
ତୁମର ଅନୁରକ୍ତି ମିଛ
ଏ ଭଗ୍ନ ମନ୍ଦିରଟା ମିଛ ।

ତୁମର ଆଖି ମିଛ
ମୋର ଭାବନା ମିଛ ।

ତୁମେ ମିଛ
ମୁଁ ମିଛ ॥



# କୋଣାର୍କ

ହରପ୍ରସାଦ ଦାସ

ତମେ ଅନେକ କିଛି ଦେଖିଚ
                    ଖାଲି ଦେଖିନ, ଦେଖି ଦେଖି
ଆଖି ହୋଇଯାଇଚ ସମୟର ।
ମଣିପଦ୍ମେ ହୁଁ କହି
ତମର କେଶର ଉପରେ ଉଡ଼ିଯାଇଥିବା ଭୃଙ୍ଗ ଏବେ
ମଣିଷ ହୋଇ ଜନ୍ମ ହୋଇଚି କୋଉଠି, ତମେ
ରହିଯାଇଚ ଯୋଉଠି ସେଇଠି ଆଖି ସମୟର ।
ସେଇଦିନଠୁ ଆଉ ଫୁଲ ଫୁଟିନି ପୃଥିବୀରେ
ଆଉ କେହି ସାହସ ବି କରିନି ବେଶୀ ଖୁସିରେ
ମାରିବା ପାଇଁ,
                    ଆମେ ମୋଟାମୋଟି
                    ସୁଖରେ ଅଛୁ
ହସିକାନ୍ଦି, ମନେରଖି ଭୁଲିଯାଇ ଯାବତୀୟ
ଦନ୍ତକଥାକୁ ।
                    ଶିଉଳି ଲାଗି ପଥର ହୋଇଯାଇଚି
ଶ୍ୟାମଳ, ତାଆରି ଉପରେ ବସି ମନକୁମନ
ଭାବୁଚି ଅନେକ ଦିନ ପରେ
ଘରକୁ ଫେରୁଥିବା ଗୋଟେ ଲୋକ-
                    ଡେରି ହୋଇନି ତ ?
                    ଚିହ୍ନିବେ ତ ସମସ୍ତେ ?

ତମେ ଧୀରେ ଧୀରେ ରୂପ ନେଉଚ ଗୋଟେ
ବିବଦମାନ ଅଧିକାରର
ଯାହାକୁ ନେଇ ଏତେ କନ୍ଦଳ
ଯେଉଁଥିପାଇଁ ସୁଖ ପାଇଲା ନାହିଁ କୋଉ ଗୋଟିଏ ବି କୋଳ
ଯାହା ପଛରେ ଧାଇଁ ଦଉଡ଼ି ବେଳ ସଇଲା
ଯାହାର ମୂକ ହେବାରେ ହିଁ ଥିଲା ପରଯୁଗର ସ୍ଥାପତ୍ୟ ପାଇଁ
ଗୋଟେ ସୁଯୋଗ-
ସେଇ ସୁଯୋଗରେ ତିଆରି ହେଲା କୋଣାର୍କ ।



# ଧର୍ମପଦ ବିଲୁପ୍ତ ଇଚ୍ଛାର

ନିତ୍ୟାନନ୍ଦ ପତି

ଛାତିରୁ ନିଗାଡ଼ି ରକ୍ତ
ତିଆରିଲି ବାଲିରେ କୋଣାର୍କ,
ପାଷାଣରେ କାବ୍ୟ ଲେଖି
ଅନ୍ଧାରରେ ଲୁଚିଗଲି ଭୀରୁ ଧର୍ମପଦ

ଚାଡ଼ିଗଲି ସମୟକୁ କ୍ଷୟ ଶିଳା ସତର୍କ ସ୍ନାୟୁରେ,
ନିର୍ଜ୍ଜନତା ସାଥୀ ହୋଇ ଶୁଣାଇବ ଇତିହାସ
ତୋ ମହୁଁରେ ହସ ଦେଖି,
ରାଜ ତରବାରୀ ଯେବେ ନଇଁଗଲା
ତୋ ପାଦ ଧୂଳିରେ ।

ଆଜି କିନ୍ତୁ ବ୍ୟବଧାନ ଶହ ଶହ ମାଇଲ
ମମତାର ଚନ୍ଦ୍ରଭାଗା କେବେଠୁ ଗଲାଣି ଶୁଖି
ଲିଭିଲାଣି ଝାଉଁବଣେ ସଙ୍ଗୀତ ଲହରୀ;
ପଳ ପଳ ମାଂସ ତୋର କ୍ଷୟହୁଏ ସଭ୍ୟତାର ବାଲୁଚରେ,
ମୁଁ ଅଥର୍ବ ବଂଶଧର
ଉତପ୍ତ ମଧ୍ୟାହ୍ନ ବାଟ ନିରଂକୁଶ ସତର୍କ ପ୍ରହରୀ ।

ଦିନରେ କବାଟ କିଳି ଆଇନାରେ ମୁହଁ ଦେଖେ
ଭୁଲିଯାଏ କେବେଠୁଁ ଗଲାଣି ନଇ ବାଟ ଭାଙ୍ଗି
କେମିତି ବା ସେଦିନ ମୁଁ
ପାଗଳ ପିଲାଟେ ପରି ଚାଲିଗଲି

ଭଂଗା ଭଂଗା ଗୀତ ଗାଇ,
ହାତପାତି ତୋଳିନେଲି ସହସ୍ର ଶିଳ୍ପୀର ଅଶ୍ରୁ
ସକାଳୁ ତୁ ସେ ହାତର
କଳାମୟ ଅମୃତ ସାମଗ୍ରୀ ।

ମୁଁ ଆଜି ସହସ୍ର ବିମୁଗ୍ଧ ଚକ୍ଷୁ
ଏଇ ତୋର ବାଲି ଅଗଣାରେ,
ମୁଁ କିବା ପ୍ରଥମ ସ୍ପର୍ଶ
ପ୍ରଭାତର ନୂତନ ସୂର୍ଯ୍ୟରେ;
ମୁଁ କିବା ବିମୂର୍ତ୍ତ ରୂପ କାଳର କଣ୍ଢେଇ
ତୋ ବଂଧ୍ୟା ନର୍ତ୍ତକୀ କୋଳେ
ଅସହାୟ ଅଜଣା କହ୍ନେଇ ।

ମୁକ୍ତିପାଇ ତୋ ସ୍ମୃତିରୁ ଥରଟେ ଯାଆନ୍ତି ଖୋଜି ଇତିହାସ
ଯେଉଁମାନେ ଆମରି ସମ୍ପର୍କ କାଟି
ପୋଡ଼ିଦେଲେ ସୂକ୍ଷ୍ମହାତ, ପ୍ରୀତିମନ
ପାଷାଣର କାବ୍ୟ ଓ ସଂଗୀତ;
ସେମାନେ କି ସାରାଦିନ ଅକ୍ଷୟ ତୂଣୀର ଶର
ପୁଞ୍ଜିପତି ସଭ୍ୟତାର ସୌଦାଗର,
ଗାରଟିଏ କାଟିବାକୁ ସୂକ୍ଷ୍ମ ଚିତ୍ରଗୁପ୍ତ ।

ମୁଁ କେମିତି ଚାଲିଗଲି
ଛାଡ଼ିଦେଇ ମୋ ବଗିଚା ଫୁଲଗଛ,
ଦରକଷା, ଲାଭଖୋର, ବେଇମାନୀ ମଣିଷ ହାତରେ;
ବିଶ୍ୱାସ କିପରି ହେବ
ମୋ ଜାତିର ସୂତ୍ରଧର ତୋ ପାଇଁ ରକ୍ଷାକରି
ସ୍ୱାମୀ, ପୁତ୍ର, ସଖା, ସହୋଦର;
ତୁ ଯଦି ଅମ୍ଳାନ ପିଣ୍ଡ
ତୋ ଭିତରେ ମାନବତା ସତେ ନିରାକାର ?

ମୁଠେ ମୁଠେ ବାଲିଧରି ନୀରବରେ ଖୋଜିହୁଏ
କିଛି ଗୋଟେ ହଜାଇଲା ପରି,
ନିଦରୁ ଉଠି ମୁଁ ଦେଖେ ପଙ୍ଗୁ ସନ୍ନ୍ୟାସିନୀ;
ପଛ କରି ଠିଆହୁଏ ଝାଉଁବଣେ ପ୍ରତ୍ୟୂଷରେ
ଭୁଲ ପାଇଁ ସାମୁଦ୍ରିକ ଉଚ୍ଛ୍ୱାସ କାହାଣୀ ।

ତୁଇ ମୋର କଣ୍ଠଲଗ୍ନା ସ୍ମୃତିକନ୍ୟା,
ପ୍ରୀତିର କଣ୍ଢେଇ,
ପଲପଲ ମାଂସ ଯେବେ ତୋ ଦେହରୁ ଝରିପଡ଼େ
ମୋ ବାଲିରେ, ମୋ ଦେହରେ, ମୋ ପ୍ରାଣରେ
ବଜ୍ରାଘାତ ଯାତନା କି ନିରାଶ୍ରୟ ପଥିକର
ଅବା କେବେ ଶୂନ୍ୟକ୍ଷେତେ ଉଜୁଡ଼ା ସାନାଇ ।

ଚାହିଁଥିବି ସମୟକୁ, ଆକାଶକୁ, ମଣିଷକୁ
ଚଂଦ୍ରଭାଗା ସୁପ୍ତ ବାଲୁକାକୁ;
କେବେ କେଉଁ ଧର୍ମପଦ ହାତଧରି
ଗେହ୍ଲାକରି କହୁଥିବ,
ମୁଁ ତୋର ଅଶ୍ଳୀଳ ଶ୍ରଦ୍ଧା, ଅବାଧ ସନ୍ତାନ,
ନୀରବ ବିପ୍ଳବ ପୁଣି, କାଳର ଆହ୍ୱାନ
ଇତିହାସ ନାୟକ ମୁଁ ପଳାତକ ଭୀରୁ ସମାଜର
ଶ୍ରୁବରେ ଆହୁତି ମୁଁ କି ଜଳନ୍ତା ନିଆଁର ?
ଅସ୍ମିତିରେ ସ୍ଥିତି ମୋର
କେବେ ମୁଁ ବିଦଗ୍ଧ ଦୃଷ୍ଟି
ଶିଳାକନ୍ୟା ମୁଦ୍ରିତ ଚକ୍ଷୁର ।

ବୁଲୁଥିବି ଖୋଜି ଖୋଜି
ଆର୍ଯ୍ୟାବର୍ତ୍ତ ପ୍ରତ୍ୟେକ ଧୂଳୀରେ,
ଶୁଣିବକି ସମଧର୍ମା ସହକର୍ମୀ ଶୁଦ୍ଧ ଅବତାର !
ଧର୍ମପଦ କ୍ଳାଂତହୋଇ ଦୁଃଖକୁ ସଂଗାତ କରେ

ଶୋଇ ପଡ଼େ ରାଜଧାନୀ କୋଠା ଛାଇ,
ଖାଦାନ ଓ କ୍ଷେତର ମଝିରେ
କୋଣାର୍କ ତିଆରି କରେ ପାଞ୍ଚବର୍ଷ ପାଇଁ
ନିଜକୁ ଭସାଇ ଦିଏ
ଅସହାୟ ପତ୍ର ପରି ଦୂରଗାମୀ
ନଈର ଛାତିରେ,
କୂଳେ ଠିଆ ସହସ୍ର ଶିଳ୍ପୀର ଛାଇ
ଅହଂକାର ଲେଖେ ଇସ୍ତାହାର ।



# କଳିଙ୍ଗ ଶିଳ୍ପୀ

ହରିଶଙ୍କର ବଡ଼ପଣ୍ଡା

କୋଣାର୍କର ଅଙ୍ଗନରେ ଧ୍ରୁପଦର ଗୁଞ୍ଜରଣ
ନୃତ୍ୟାଙ୍ଗନାର ପାଦରେ ନୂପୁର ନିକ୍ୱଣ
ଜୁଡ଼ାରେ ମଲ୍ଲିମାଳ
କାନରେ ଝୁମୁକା
ଗ୍ରୀବାରେ ସହସ୍ର ପଦ୍ମର ସ୍ୱର୍ଣ୍ଣମେଖଳା
ମୁହଁରେ ଚୈତାଳିର ଚନ୍ଦ୍ରହାସ
ହାତରେ କାଚକେନ୍ଦୁର ଦର୍ପଣ

କଳିଙ୍ଗଶିଳ୍ପୀ !
ଏବେ ତ ପୂର୍ଣ୍ଣ କରିଦିଅ ତୁଳିକାର ଅଙ୍କନ
ତରଙ୍ଗର ଆବାହନୀରେ ମଦମତ୍ତ ହେଉ ସମୁଦ୍ର
କଦମ୍ବ ଡାଳରେ ଫୁଟି ଉଠୁ, କାଦମ୍ବରୀର ସୁବାସ
ବାହୁ ପ୍ରସାରି ଦେଉ ନିର୍ବାକ୍ ଝାଉଁବଣ
ସ୍ତମ୍ଭୀଭୂତ ହେଉ
ଆକାଶ, ପାତାଳ, ଭୂତଳ ! !

କଳିଙ୍ଗଶିଳ୍ପୀ !
ତୁମ ପରି କିଏ ଶୁଣିଛି ପାଷାଣର ଡାକ ?
ତୁମ ପରି କିଏ ଦେଖୁଛି
ପାଷାଣର ମୂର୍ତ୍ତିରେ ପେମାଞ୍ଜନର ଝଲକ ?
ଇତିହାସର ମୂକ ସାକ୍ଷୀ କୋଣାର୍କର ବକ୍ଷରେ
ତୁମ ପରି କିଏ ଲେଖୁଛି ପାଷାଣର କାବ୍ୟ ?

ଯାହା ଏତେ ସଂଗୋପିତ
ଏତେ ସମାର୍ଜିତ
ଏତେ ସାବଲୀଳ
ଲହୁଲୁହର ନିହାଣରେ
କିଏ କୁନ୍ଦିଛି ଅପ୍ସରାର ପ୍ରାଣ
ଯାହା ସ୍ୱୟଂ ଇତିହାସ ଚିରକାଳ ।

ତୀର୍ଥରାଜ ଚନ୍ଦ୍ରଭାଗା ଏବେ ଡାକୁଛି ଶୁଣୁଛ ?
ପୁଣ୍ୟତୋୟା ସାଗରର ତରଙ୍ଗ ଏବେ ଡାକୁଛି, ଶୁଣୁଛ ?
ସହସ୍ର କାବ୍ୟର ମୂକାସାକ୍ଷୀ କୋଣାର୍କ
ଏବେ ଡାକୁଛି, ଶୁଣୁଛ ?
ଏ ସବୁ ଆବାହନୀରେ
ତୁମେ ହିଁ ତ ସର୍ବମୟ
ତୁମେ ହିଁ ତ ନିହାଣସିଦ୍ଧ ଶିଳ୍ପୀ ସମ୍ରାଟ
ଯିଏ ବିନା ଶିରପାରେ
ସୃଜିପାରେ ଅଗଣିତ ସାମ୍ରାଜ୍ୟ
ଅପରୂପ ନାଟମନ୍ଦିର
ଅଦ୍‌ଭୁତ ସିଂହାସନ
ଯାହାର ଗୋପନ ଇଙ୍ଗିତରେ
ଗୁଞ୍ଜରି ପାରେ ନୃତ୍ୟଶାଳାରୁ ତ୍ରିତାଳ
କାଦମ୍ବରୀର ପୂର୍ଣ୍ଣପ୍ରାଣ
ମଦମତ୍ତ, ବିରାଟ, ବିଶାଳ !
ଏବଂ
ଅମାପ କାଳସାଗରର ତରଙ୍ଗରେ
ଏମିତି ଭାସିଯିବା ବେଳେ
ଫେରି ଆସିପାରେ
ପୁନଶ୍ଚ ଏ କଳିଙ୍ଗ ସାମ୍ରାଜ୍ୟକୁ
ଧ୍ରୁପଦର ସମଗାନ ପାଇଁ
ତ୍ରିତାଳର ସମାପନ ପାଇଁ
ଇମନ୍ କଲ୍ୟାଣର ସମାର୍ଜନ ପାଇଁ ! !



# କୋଣାର୍କ କନ୍ୟା

ଚୈତନ୍ୟ ପ୍ରସାଦ ସେଠୀ

ହୁଏ ତ ତୁମର ସେଇ କମ୍ର ନମ୍ର ଆନତ ଆଖିର
ପତା ତଳେ ଝରୁଥିବା ଅସରନ୍ତି ସ୍ୱପ୍ନର ସୁରଭି
ତଥାପି ବି ଚାହିଁଥିବ, ଡାକୁଥିବ ମୋ ପରି କେତେଙ୍କୁ
ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଆମ ଏଇ ଉତ୍କଳ ମାଟିରେ
ସୁଷମା ଓ ସୌନ୍ଦର୍ଯ୍ୟର ଆଲୋକିତ ଆଦିମ ଭୋକରେ ।

ତୁମ ମଦାଳସା ତନୁ ତଳିପାର ସାବଲୀଳ ଛଇ
ଭୋକ ବି ଭୁଲାଇ ଦିଏ ଏ ଯୁଗର ବଡ଼ କବି
ମଜ୍ଜିବାକୁ ବାହାନା ନ ମାନି
କାର୍ଲମାର୍କସ୍ ଡାକିଯାଏ ଏ ସମୁଦ୍ର ବେଳାରେ ମିଳାଇ
ପାଦଯାଏ ଆପେ ଆସେ ଏଠିସେଠି ଅଲକ୍ଷ୍ୟରେ ଥମି
ତମର ଯଦି ବା କେବେ ସାମନା ହୁଏ–
ହେ ଅନିନ୍ଦ୍ୟ ପାଷାଣର କୋଣାର୍କ ରମଣୀ
ନାଗକନ୍ୟା ରୂପ ତୁମ ଦେହେ ମନେ ଭରିଦିଏ
ଫ୍ରୟେଡୀୟ ଆଦିମ ପିପାସା
ସରଳ ସୌନ୍ଦର୍ଯ୍ୟ ଭୁକ୍ ଆଖିତଳେ ଭାସିଯାଏ
ଛବି କେତେ, ଦେହ ସହ ଅନ୍ୟ ସ୍ନିଗ୍ଧ ତନୁମାନ ମିଶିବାର ଛବି
କିଏ ସେ ନିଲଠାପଣେ ଅନାବନା ଫୁଲଟିଏ ଆହା
ତବ ପାଦତଳେ ଥୋଇ ଚାଲିଯାଏ–
କଥା କେତେ ମନେ ମନେ ଭାବି ॥

ହଂସ ମିଥୁନର ରାଗେ ଗଢ଼ା ତୁମ ରତି ସୁଖ ରୂପ
ଅପ୍ରାପ୍ତ ବୟସ୍କ କେତେ ବାଳକ ବାଳିକା,
ସଂସାରୀ ବା ଯୋଗୀ ମନେ ଟାଣି ଆଣେ

ଉର୍ବଶୀର ଲାସ୍ୟ ଇନ୍ଦ୍ରଧନୁ
ସୂର୍ଯ୍ୟଠୁଁ ଉତ୍ତପ୍ତ ହୁଏ ଦେହ ମନ ଚେତନା ଚୈତନ୍ୟ
ଲିଭେନି ସେ ମୁହୂର୍ତ୍ତର ଆନନ୍ଦ ଟିକକ
ଦୂରନ୍ତ ସେ ପର୍ଯ୍ୟଟକ ମନୁ ।।

କାଳଜୟୀ ଯୌବନର ତବ ସୁଶୃଙ୍ଗାର-ମତ୍ତା ତନୁ
ଅଥବା ଅଭିସାରିକା ଠାଣି ତୁମ ପଡ଼ିଲେ ଆଖିରେ
ଐକାନ୍ତିକ ଶିହରଣ ତନୁ ମନେ ଖେଳାଏ ବିଜୁଳି
ଉଦ୍‌ବୃତ ଛାତିର ଶୋଭା କ୍ଷୀଣ କଟୀ ମେଖଳାର ଠାଣି
ସ୍ୱପ୍ନର ନୀ ନା ମିନାର ତୋଳିଦିଏ—
ସବୁ ବୟସର ମନ କିଣି ।।

ଅପେକ୍ଷମାଣା-ରମଣୀ ଅପେକ୍ଷାର ଅନ୍ତ ତୁମ ନାହିଁ
ସେ ଦୃଶ୍ୟ ଦେଖିଲେ ମନେପଡ଼ିଯାଏ
ମୋ ପ୍ରିୟାର ଅପେକ୍ଷା ରାଗିଣୀ
ମନ ଉଡ଼େ ଆକାଶରେ ବାଟ ଘାଟ ସବୁ ହୁଏ ବଣା
ଆଶ୍ଚର୍ଯ୍ୟ, ଆଶ୍ଚର୍ଯ୍ୟ ସତେ ହେ କୋଣାର୍କ ପାଷାଣ ରମଣୀ
ନୃତ୍ୟରତା ନର୍ତ୍ତକୀର ମୁଦ୍ରାତଳେ...
ନା ନା ଭାବ ଉତ୍ତାଳ ରତଙ୍ଗ
ଉଲ୍ଲୋଳିତ ସମୁଦ୍ରର ଛାୟାଛବି ଭରିଦିଏ ଚିତ୍ତେ
ବାଦ୍ୟରତା ସୁଶୀଳାର ସୁସଂଚିତ ସୁଠାମ ଶରୀର
କାବ୍ୟ କବିତାର ରସ ବାଣ୍ଟିଦିଏ
ସ୍ୱର୍ଗୁଁ ତୋଳି ସତତ ଏ ମର୍ତ୍ତ୍ୟେ ।

x x x

କାମିନୀ କାଞ୍ଚନ ମୋହ—ଏଗୁଣ୍ଠିର ଏପାଖ ସେପାଖ
ନିରେଖି ପୂଜାର ଥାଳି ଭକ୍ତିଭରେ ଧରି ଯିଏ ଯିବ ସେ ମନ୍ଦିରେ
ଦେବତାର ଆଶୀର୍ବାଦ ଆଲୋକିତ ଜୀବନର ରାହା
ତା ଲାଗି ଯିବକି ଫିଟି... ?
ହେ ପାଷାଣୀ କହିଦିଅ ବାରେ ।।



# ଧର୍ମପଦ

ବିପିନ୍ ନାୟକ

ଏବେ ମୁଁ ଅଟକି ଯାଇଛି
ମଦାଳସା, ମେନକା
ନଟୀ ନାଗରୀ ଘେରା
ମୁଖଶାଳାରେ ।

ଦେହ ପଥର ଦେଉଳ
ଗୌଣଦେବତାମାନଙ୍କ ପଥର
ଗର୍ଭଗୃହ
ଅଧିଷ୍ଠିତ ଈଶ୍ୱର ବି
ଏଠି ଅଦୃଶ୍ୟ ।

କାହାର ନା କାହାର ଦାୟରେ
ବାର ବରଷର ବାଳୁତ ପୁଅଟେ ମୁଁ
ଡେଇଁ ପଡ଼ନ୍ତି ଯେ,
ଏଠି ମନ୍ଦିର ତ ନାହିଁ
ମୁଣ୍ଡି ମାରିବାକୁ
ଆଉ ସମୁଦ୍ର
ପଦ୍ମ ପରି ଘୁଞ୍ଚିଯାଉଛି
ଦୂରକୁ ଦୂରକୁ ॥



# କୋଣାର୍କ

ପ୍ରସନ୍ନ କୁମାର ପାଢଶାଣୀ

ଆକାଶର ନୀଳ କୋଣରେ ଅନନ୍ତ ଅର୍କ
ଦୂରନ୍ତ ସମୁଦ୍ରର ନିଃଶ୍ୱାସରେ ଜୀବନର ଡଙ୍ଗାବାହି
ତୋଳୁଥିବା ସମୟର ଚାନ୍ଦୁଆରେ ତାରାର କୋଟିକମ
ସବୁଜ ଘାସର କୋରଡ଼ରେ କାକରର ମୋତି
ଫୁଲର କେଶର ଫାଡ଼ି ପରାଗର ମୁରଜରେ ଅଙ୍କିତ ଚଉଁରା
ସଞ୍ଜର ବନ ତଳେ ନୀରବ ପତ୍ରର ସ୍ପନ୍ଦନରେ
କମ୍ପିତ ଓଢ଼ଣାର ଖାଳେଇରେ ଡିବିରିର ଧୂଆଁ ।

ମନେ ପଡ଼େ ଦୂରଗାଁ ବଧୂର ଅସଂଭବ କାତର ଆତ୍ମାର ପ୍ରତୀକ୍ଷା
ରାତ୍ରି ପରେ ଦିନ ଗଙ୍ଗଶିଉଳିର ଘାସପରି ଫୁଲରେ ବିଲୀନ
ମା'ର ଏକାନ୍ତ କୁନାଳ ହାତେ ତୋଳିଥିଲା
ପାପୁଲିରେ ଶୈଶବର ଛୋଟିଆ ଦର୍ପଣ
ଚିରା ପକେଟରେ ତା'ର ଭରିଥିଲା ବାଡ଼ିଆଳ ବରକୋଳି
କୁକୁରର ଜିଭରେ ଥୋପି ଥୋପି ଲାଳ
ଚୁମୁଥିଲା ଶରଧାବାଲିର କୋଠରୀ ।

ନିହାତି ଏକେଲା ଏକ ନିର୍ଜ୍ଜନ ଉଦାସ
ଶୂନ୍ୟତାରେ କାଠହଣା ଚଢ଼େଇର ନାଲିଥଣ୍ଟ
ଗଛର କଲିଜା କୋରି ଖାଇବାର ଶବ୍ଦ
ଶୁଣେ ନାହିଁ ଅରଣ୍ୟର କାନ
ଶିଳ୍ପୀର ନିହାଣରେ ଖୋଲି ହୋଇଯାଏ

ପଥରର ଆତ୍ମାର ଆଟମ୍
ପଛକୁ ଫେରିପାରେ ନାହିଁ ଶିଳ୍ପୀର କପାଳ
ସମୁଦ୍ର ପବନ୍‌ର ପାପୁଲିରେ କୁଞ୍ଚିତ କେଶ
ବାରବର୍ଷ ହେଲା କାହାର ପିତା ଦେଖିନାହିଁ ନିଜ ମୁହଁ
ରୂପସୀର ଆଖିର ଲୁହ କରୁଣ କ୍ରନ୍ଦନରେ
ସେ ତୋଳିଛି ରକ୍ତରେ ବିବେକର ନିହାଣରେ
ପ୍ରଣୟର କଳା ଆଉ ଚାତୁରୀର କୋଣାର୍କ ।

ବେଳାଭୂମିଧାରେ ନାଲିକଙ୍କଡ଼ା କୁନିର ପାଦ
ତିଆରେ ଫେଣର ଗାତରେ
ଢେଉର କାୟାକଳ୍ପ ଶାମୁକା ଆଖିରେ
ତିଆରେ ମୋତିର ମହଲ
ଶଙ୍ଖର ଶବ୍ଦରେ ରୁଣୁଝୁଣୁ ନିକ୍ୱଣର ଧ୍ୱନି
ନିର୍ଜ୍ଜନ ପଠାରେ ରାତିର କଠଉ ଉଠାଏ ସୂର୍ଯ୍ୟଙ୍କୁ
ଜୀବନ ମନ୍ଦିର ଅଗଣାରେ ଖୋଲି ଦେଇ ନିଃଶ୍ୱାସର ଚାବି
ଅଳିନ୍ଦର ପଲଙ୍କରେ ଶୋଇଯାଏ ଆୟୁଷର ନାଡ଼ରେ
କାଳର ନାଦ ଭୂଲୋକ ଚିରି କାହାର ହାତରେ
ରେଖାସବୁ କଟିଯାଏ ପାଚିଲା କିଆରିରୁ ନଡ଼ାଭଳି ଗାଈର ଦାନ୍ତରେ
ପଥରର ଟେଳାସବୁରୁ ଶୁଭେ ନିହାଣରେ ଶିଳ୍ପୀର ରକ୍ତ
ଶିଳ୍ପୀର ରକ୍ତରେ ସମୁଦ୍ରର ଲବଣ ବୋଲି ହୋଇଯାଏ
ପଥରରେ ସୂର୍ଯ୍ୟର ସପ୍ତମ ଅଶ୍ୱର ଖୁରାତଳେ
ଚାପିଦିଏ ମେଘ
ଦୁଃଖ ସବୁ ଚାପି ହୋଇଯାଏ କାରୁକଳାର ଅପୂର୍ବ କମରେ
ପଥରର ନୀଳପତା ତୋଳି ଶିଳ୍ପୀ ଦେଖେ ପ୍ରଣୟିନୀ ଡୋଳା
ତାରୁଣ୍ୟର କବାଟରେ କରାଘାତ କରେ ଜରା
ଯୌବନର ପଣତକୁ ଚିରି ବୟସଟା ସାପଭଳି କାତିଛାଡ଼ି ଘୁସୁରେ
ଜହ୍ନଟା ମେଘର ଗୁହାରୁ
ଅନ୍ଧାରର ନୀରବ ଗୁମ୍ଫାରୁ ।

ମୂଳିଆଣି ପିଠିରେ ଝାଳର ରଚନା ଲେଖି
ଖରା ଝାଉଁଳିଯାଏ ନାଭିତଳେ
ଭୋକର ଉଦାସ ଧୂଆଁରେ ଅଭାବର କଳା ଆଟିକା ତଳେ
ବୋଳି ଦେଇ ଦୀନତାର ପତାତଳେ ଦୁଃଖର କଜ୍ଜଳ
ସକାଳ ଡୋଳାରେ କେତେ ରାତିର ତପସ୍ୟା
ପବନର ପରଦାରେ ଚିରିଯାଏ ଆଲୋକର ମୁହଁ
କେତେ ଅଦୃଶ୍ୟ ଆତ୍ମାର ମଣ୍ଡପରେ
ନାଚିଯାଏ ସନାତନ ମନ
ଅଙ୍କିତ କରିଛି ସେ ଯୁଗଯୁଗଧରି ସୂରୁଯ ଭଳି
କେଉଁଠାରେ ତା'ର ଜନ୍ମ କେଉଁଠାରେ ସେ ଅକ୍ଷୟ ବ୍ରହ୍ମ
ହୋଇପାରେ ନାହିଁ ଲୀନ
ନିମର ଦାରୁରେ ଜଗନ୍ନାଥର କଙ୍କାଳ ।
ଏମିତି ପାହୁ ତ ଥିବ ରାତି ଚିରଦିନ
ଛୁଉଁଥିବ ସୂରୁଯର ଅନନ୍ତ କିରଣ
ଟୋପା ଟୋପା କାକରରେ ଝାଳେଇଲା ଭଳି
ପଥରର ଲୋମକୂପ ସମୟର ବାଲୁକାରେ
ଏମିତି ବି ବତାସର ହାତ ଖୁବ୍ ଧୀରେ ଚାପୁଥିବ ଝାଉଁବଣ କଟି
ଉଡୁଥିବ ମୟୂର ପୁଚ୍ଛରେ ବୋଳି ଫୁଲର ରସ
ଦୂବର ପାଦରେ ବୋଳି ଭିଜା ଖରାର ଅଳତାରେ
ହଜୁଥିବ ବାଲିର କିଙ୍କିଣି
ଚିରଦିନ ମନର ମାର୍ବଲରେ
ଚିନ୍ତାର ତଳନଈ ବହୁଥିବ ଅବ୍ୟକ୍ତ ଚେତନାର ଚଟାଣରେ
ଖୋଲିଦେଇ ହୃଦର ଅରଣ୍ୟ
ନିଃଶ୍ୱାସର କରୁଣ ନାଦ ଉଠୁଥିବ ପିଙ୍ଗଳା ନାଡ଼ିରେ
ଛାପିଦେଇ ଖୁବ୍ ଧୀରେ ଟିପ
ଇଡ଼ାର ପୁଡ଼ାରେ
ସମୟର ବଙ୍କୁ ନାଡ଼ି ଦେଇ

କ୍ଷୟ ହେଉଥିବ ବ୍ରହ୍ମ
ଅଦୃଶ୍ୟ ମଥାର ସହସ୍ର କୋରକରେ
ଜୀବନର ବାସ୍ନା ନେସି ହୋଇ ରୁନ୍ଧିଥିବ
ସାଧନାର ମୁହଁ ।

କାଚତଳେ ଫଟୋର ରଙ୍ଗୀନ ଗାରରୁ ଝରୁଥିବ
ନିହାଣରୁ କଳାର ବିଭୂତି
ହାହାକାର କରି ଉଠୁଥିବ ତୂଳୀରେ
ଜୀବନର ଛବି ।
କରେଇରେ ପିଠାର ପିଠିରେ ଚେଇଁ
ଆଙ୍କୁଥିବ ସ୍ୱାଦର ପିତି ପାତି
ଲେଉଟାଇ ଗରମ ଚିଆଁର ଲାଳ
ପାଉଥିବ ସମୁଦ୍ରର କରେଇରେ ସକାଳର ପିଠା
ମେଘର ଚିଆଁରେ ଭାଜି ହେଉଥିବ
ସୂର୍ଯ୍ୟର ଆରିସା
ମନେ ପଡୁଥିବ ରକ୍ତର କୋମଳ ଉଷା
ପାରିଦେଇ ଜଳରେ କମଳ ପତ୍ରର ସବୁଜ ବେଣୀ
ଛୁଇଁପାରେ ନାହିଁ ଫୁଲର ପାଖୁଡ଼ା
ଜଳର ନରମ ଦେହ ଛୁଇଁପାରେ ନାହିଁ
ଶୀତଳ ଜହ୍ନର ଝରଣା
ବୋଲି ହୋଇଯାଏ ଚକୋରର ତଳିପାରେ କାକରର ତାଳୁ
ଉଦାସୀ କୋଣାର୍କ : ପ୍ରକୃତିର ଫେଣାରେ ମହୁଭଳି
ସଞ୍ଚିତ ଅମୃତର ଅମର-କଳା
ଭାଜିଯାଇ ପାରିନାହିଁ ଫୁଲର କେଶର ଭଳି
ଅକ୍ଷୟ ଗୁହାରେ ପ୍ରଣୟର ହଜିଲା ନୂପୁର ।



# ମଧ୍ୟବୟସ୍କର୍ କୋଣାର୍କ

ସନତ୍‌ଦାସ ପଟ୍ଟନାୟକ

ସୂର୍ଯ୍ୟୋଦୟ ପରେ ହିଁ ଭଲ ଲାଗେ
କୋଣାର୍କ ଦର୍ଶନ । ମଧ୍ୟବୟସ୍କ
ଭୁଲିଯାଏ ଖରାବେଳର ହତବାକ୍
ଖଣ୍ଡା ପଥର ଚଟାଣରେ
ଚୂନ ଚୂନ ହୋଇ ଭାଙ୍ଗିଯାଏ କେମିତି
ଅଭିସାରିକାର ନିତମ୍ବରେ ବା'
ନିଜ ରୂପ ଦର୍ପଣରେ ପରାଜିତ
ନାୟିକାର ସ୍ତନ ଯୁଗଳରେ

ଘରକଥା ମନେ ପଡ଼ିଲେଇ ଅଡୁଆ–
ସମୁଦ୍ରକୂଳରୁ ଉଡ଼ି ଆସୁଥିବା ଚଢ଼େଇ
ହତାଶ ନୁହେଁ–ଅସହାୟ ନର୍ତ୍ତକୀର
ଚିବୁକରେ ନିଜର ଭିଜା ଚଞ୍ଚୁରେ
ଆଙ୍କି ଦେଉଛି ଚୁମ୍ବନ ପରେ ଚୁମ୍ବନ–
ଘରେ ସ୍ତ୍ରୀ ଖାଇ ନ ଥିବେ ବା' ପିଲାମାନେ
ଅପେକ୍ଷା କରିଥିବେ, ବାପା ଫେରିଲେ
କୋଣାର୍କ ଉପରେ କେତେ ଗପ କହିବେ–

ଏଠି ସଂସାରର କୁରୁକ୍ଷେତ୍ର ନାହିଁ,
ଏଠି କେବଳ ପ୍ରେମ, ପ୍ରୀତିର ସ୍ୱାଧୀନତା
ପୁଣ୍ୟର ମୃଦଙ୍ଗରେ ବାଜୁଥିବା ଚିରନ୍ତନ

ତାଳରେ ନର୍ତ୍ତକୀର ଚଳ ଚଞ୍ଚଳ
ରୂପର ଖାଣ୍ଡବ ବନରେ ଅଶେଷ ଭାବପ୍ରବଣତା
ଜୀବନକୁ ଆଲୋଡ଼ିତ କରେ, ମାତାଲ କରେ ।
ଘରେ ଅଥଚ ମଶାରୀ ଭିତରେ ସ୍ତ୍ରୀଙ୍କର
ଅଧା ରାଗ, ଅଧା ଅଭିମାନ, ଅଧା ପ୍ରେମ, ଅଧା ଘୃଣାର
ସଙ୍କୁଚିତ ପୃଥିବୀ ଫାଙ୍କରେ ଜୀବନ
କେମିତି ବୀତସ୍ପୃହ ।।

ମଧ୍ୟବୟସ୍କର ବିଚାର ସଂସାରଠାରୁ
ଦୂରରେ କୋଣାର୍କର ନିଭୃତ ପ୍ରେମରେ ପଡ଼ିବା
କଣ ସନ୍ନ୍ୟାସ ନୁହେଁ, ଚିର
ହାସ୍ୟମୟୀ ପାଷାଣୀ କନ୍ୟାର
ଚିର-ଯୌବନ ହିଁ ଈଶ୍ୱର ସୃଷ୍ଟିର
ଏକମାତ୍ର ପ୍ରତିଛବି ।

ଅଥଚ ପେଁକାଳି ପରି ବାରମ୍ବାର
ସ୍ୱର ବଦଳୁଥିବା ମଧ୍ୟବୟସ୍କ ଜଣେ ମଣିଷ,
ଦାର୍ଶନିକ, ସେ ଜନ୍ମ ମୃତ୍ୟୁ ସମ୍ପର୍କରେ
ଗବେଷଣା କରନ୍ତି ।।



# କୋଣାର୍କ

ଶତ୍ରୁଘ୍ନ ପାଣ୍ଡବ

ଠିଆ ହୋଇଛି ଯେଉଁଠି
ତା' ସ୍ଥାପତ୍ୟର ସିଂହଦ୍ୱାର
ନା କଙ୍କାଳର ତୋରଣ ?

ଜାଣିପାରୁନ
ତୁମ ମୁହଁ ରଙ୍ଗା ପଡ଼ିଛି ଯୋଉ
ଲାଲିମାରେ - ତା' ଉଦୟ ସୂର୍ଯ୍ୟର
ଆଭା କି ଅସ୍ତ ସୂର୍ଯ୍ୟର କିରଣ ?

ସେ କିରଣରେ ତୁମକୁ ଦୃଶ୍ୟହେବା କଥା
: କ'ଣ ?
ଯେ ନିହାଣ ଧରିଥିବା ହାତମାନ
ଖଞ୍ଜୁଛନ୍ତି ପଥରର କଙ୍କାଳରେ
ରକ୍ତମାଂସ ଓ ଲାବଣ୍ୟ ।

ଏ ଠକ୍‌ଠକ୍ ଆୱାଜ ତେବେ ନିହାଣର ?
ଏ ଆୱାଜ ବି ହୋଇପାରେ
ଘୋଡ଼ାଟାପୁର ? ସୂର୍ଯ୍ୟର ? ସମୟର ?
: ହଁ... ହୋଇପାରେ
ଏଠାରେ ତୁମେ ପ୍ରଶ୍ନ ତୁମେ ଇ ଉତ୍ତର ।

ଅନାଘ୍ରାତ ରହିପାରେନା ତ ଏ ସୁଗୋଲ ନିତମ୍ବ
ଲହୁଣୀ ପ୍ରାୟ ଚିକ୍‌କଣ ଏ ଚମ କୁଟିକମ

ପଦ୍ମ କୋରକ ପ୍ରାୟ ଏ ସ୍ତନଚୂଡ଼ା-
ହେଉ ସୁନ୍ଦରୀ ପ୍ରସ୍ତର ନଟୀର
ହେଉ ବିଲୋଳ ଦୃଷ୍ଟିରେ କୋଣାର୍କକୁ
ବିଲୋକୁଥିବା ସୁନ୍ଦରୀ ସୁନୟନାର ।
: ନା... ରହିପାରେନା
ଏଠାରେ ତୁମେ ପ୍ରଶ୍ନ ତୁମେ ଇ ଉତ୍ତର ।

ପ୍ରଶ୍ନ ଓ ଉତ୍ତରସବୁକୁ ଉଡ଼ାଇନିଏ ପବନ
ବାଲି ପନ୍ତାରରେ ଝାଉଁବଣରେ
ତା'ର ନାନାବାୟା ସନ୍‌ସନ୍ ।

ସୂର୍ଯ୍ୟୋଦୟ ଦେଖିବ ବୋଲି
କଥାଥିଲା ଚନ୍ଦ୍ରଭାଗାରେ
ଦେଖୁନ ଦେଖ
ସୂର୍ଯ୍ୟରଶ୍ମିକୁ ଚନ୍ଦନ ପରି ମାଖିବା
କଥାଥିଲା କପାଳରେ
ମାଖୁନା ମାଖ ।

ଅଥଚ ତୁମେ କାହିଁକି ଖୋଜିବସୁଛ
କୋଉଠି ବସିଥିଲେ ଏଠି ପ୍ରାର୍ଥନାରେ
କୁଷ୍ଟଗ୍ରସ୍ତ ଶାମ୍ବ-
କୋଉଠି ପୋତିହୋଇପଡ଼ିଛି ବାଲିରେ
ଚନ୍ଦ୍ରଭାଗା-
କେତେ ଦୂର ଯାଇଚି ଘୁଂଚି
ଏଠାରୁ ସମୁଦ୍ର ?

ଦେଖ ଏ ପଥର ବି ଅଚାନକ ପାଲଟିଯିବ
ତୁମ ଲାଗି ସ୍ୱଚ୍ଛ ଦର୍ପଣ
ଯେଉଁଠି ତୁମେ ଆବିଷ୍କାର କରିବ ଅକସ୍ମାତ
ବିଂଶତି ସୁନ୍ଦରୀ ସୁନୟନାର ଘଂଚ ଗଭାରେ

ବେଶ୍ କେତୋଟି ପାଚିଲା ବାଳ
ଆଖି ତଳେ ଗାଢ଼ କଳାଦାଗ
ଆବଚ୍ଛା ବି ଦଶିବ ତୁମ ପ୍ରତିବିମ୍ବ ।

ବାଲିପନ୍ତାରରେ ଝାଉଁବଣରେ
ପବନର ନାନାବାୟା ସନ୍‌ସନ୍
ଠକ୍‌ଠକ୍ ଆୱାଜ ଯଦି ଶୁଭିଯାଉଚି
ତ ତେର ଶ୍ରବଣ
ପଚାରନା ଜମା ଯେ
ଏ ଆୱାଜ ଭାଙ୍ଗିବାର କି ଗଢ଼ିବାର
ନିହାଣର ବା ଆଉ କାହାର
ଏଠାରେ
କୋଣାର୍କରେ ।



# ଶିଳ୍ପୀ

କାନନବାଳା ତ୍ରିପାଠୀ

ଜୀବନର ତିକ୍ତତା, ଜଡ଼ତାକୁ ଦୂରେଇ
ଶିଳାପରେ ଯାହା ତୁମେ ଯାଇଅଛ ଝରେଇ
ମୁଗ୍‌ଧା ଧରଣୀ ଚାହେଁ ତାହାର ସେ ଆନନେ
ବିରାଟ ସୃଷ୍ଟିପରେ ତବ ସେହି ସର୍ଜନେ ।

ଜୀର୍ଣ୍ଣ ଉଟଜେ ତବ ଯାଉଥିଲ ଦିବସ,
ନିହାଣ କାର୍ଯ୍ୟପରେ ଲାଗୁଥିଲା ଅବଶ,
ମରମରେ ଝରୁଥିଲା କଳ୍ପନାଶୀକର,
ପ୍ରସ୍ତର ଉପଚାର ଥିଲା ତବ ନିକର ।

ବୁକୁର ରକ୍ତଦାନେ ଉର୍ବଶୀ ରୂପସୀ,
ଆଙ୍କିଛି ଶିଳାପରେ ନର୍ତ୍ତକୀ, ତାପସୀ
ବିକଶିତ ଉତ୍ପଳ, ମାନମୟୀ ବଧୂ ହେ
ପ୍ରଣୟିନୀ, ବିରହିଣୀ, ପଲ୍ଲବ ମଧୁ ହେ ।

କୋଣାରକ ବନ୍ଦାଏ ତୁମ ପଦକମଳ,
ଝଙ୍କୃତ କର ବାଣୀ ସୁନ୍ଦର, ବିମଳ;
ତୁମେ ପରା ଅଟ ଦେବ ଶିଳ୍ପର ମୁରବି
ଜାଗ ତୁମେ, ଜାଗିଉଠୁ ଏ ଦେଶର ସୁରଭି ।

କରିଦିଅ ଛିନ୍ନ-ଯେତେ ବାଧା ବନ୍ଧ
ତବଲାଗି ଫୁଟିଉଠୁ ଏ ଦେଶର ଛନ୍ଦ;
ତାମ୍ବୁଳ-ମୁଖେ ତବ ଫୁଟୁ ଥରେ ହାସ୍ୟ
ଖେଳିଯାଉ ଚଉଦିଗେ ସୁବିମଳ ଲାସ୍ୟ ।

ତୁମରେ ଭୁଲିଛି ଜାତି, ତୁମରି ସେ ଆନନେ
ଖେଳୁନାହିଁ ତବ ଯଶ, ତା ମରମ କାନନେ
କିନ୍ତୁ ହେ ଦେବ ! ମୁଁ ଗୋ ତୁମ ଗୁଣ ପୂଜାରୀ,
ଗାଇବି ମୁଁ ତମ ଗୀତି ଜୀବନ ମୋ ଉଜାଡ଼ି ।



# ଧରମାର ଚିଠି

ରତ୍ନାକର ଚଇନି

ସର ଲୋ !
ସ୍ନେହ ପ୍ରେମ ଭରି ନିରିଜନେ ବସି
ଲେଖୁଚି ଏଇ ପତର,
ରାଗ କରିବୁନି ଏତେ ଦିନ ଧରି
ଦେଇନି ବୋଲି ଖବର
ମନେପଡ଼େ ମୋର ଛୁରୀଅନା ମଲ୍ଲୀ
ବକୁଳ ଶୋଭିତ କୁଂଜ,
ବିରହିଣୀ ପରା ବ୍ୟଥିତ ଅନ୍ତରେ
କାନ୍ଦୁଥିବୁ କେତେ ସଂଜ ।
ଗାଉଥିବୁ କେତେ ହୃଦୟ ଫଟାଇ
ଝାଉଥିବୁ କେତେ ଲୁହ,
ନିରିଡ଼ୁଡେ ଥିଲେ ମୋ ଦେଶ ବିହଙ୍ଗ
ଜଣାନ୍ତି ଆସି ତୋ କୋହ ।
ଭୁଲ ବୁଝିବୁନି ଶିଙ୍ଗୀକି ତୋହର
ଗୋ ଅଭିମାନିନୀ ରାଧା,
ଏ ଜାତିର କାମ ଏ ଦେଶର ନାମ
କହ କି କରିବି ଅଧା ।
ପିତା କକା ଯେତେ ଥିଲେ ମୋ ସଂଗତେ
ଛାଡ଼ି ଚାଲିଗଲେ ଏକା,
ଶିଙ୍ଗୀ ମୁହିଁ ପରା ଉକୁଳ ରାଇଜେ
ମନେ ମୋର ନାହିଁ ଦକା ।

ପ୍ରଭାତେ ଦିନେ ମୁଁ ମହୋଦଧି ଜଳେ
ମାରିଥିଲି ଏକ ଡିଆଁ,
କହି ପାରିବିନି କି ଦୋଷ ଦେଖିଲେ
ଛାଡ଼ିଗଲେ ମୋତେ କିଆଁ ।
ଆସିଥିଲି ଏକା ଯିବି ଚାଲି ଏକା
ହସିଖେଳି ନାହିଁ ଖେଦ,
ଦୁନିଆ ହାଟର ହାଟୁଆ ମୁଁ ପରା
ମନେନାହିଁ ଅବସାଦ ।
ତରପଣ ସାରି ସୂରୁଜ ଦେବଙ୍କୁ
କଲି ଯେବେ ନମସ୍କାର,
ଚମକି ପଡ଼ିଲି ଆଗରେ ଦେଖିଲି
ଭାଙ୍ଗିଚି ମୋ ଧୂଳି-ଘର ।
ନିଜ ହାତେ ଯାକୁ ଥାପିଥିଲି ମୁହିଁ
ଖେଳୁଥିଲି ମନ ଭରି,
ହସୁଥିଲି ହସ ନାଚୁଥିଲି କା'ରେ
ଡାକୁଥିଲି ହାତ ଠାରି ।
ମୋ ପ୍ରିୟ ଦେଉଳ ସିକତାର କୋଳ
ଆଦରି ନେଇଚି ସତେ,
କିଏ ନିଷ୍ଠୁର କଲା ଛାରଖାର
ଦୟା ଆସିଲାନି ଚିତ୍ତେ ?
ଅଭିମାନୀ ଶିଳ୍ପୀ ନିହାଣ ଧରିଚି
ଉହାଡ଼େ ରଚୁଚି କଳା,
ସାଗର ବେଳାରୁ ଶାମୁକା ସାଉଁଟେ
ହୋଇବ ଦେଉଳ ତୋଳା ।
ଭାଙ୍ଗି ପଡ଼ିଚି ଯା ଅତୀତ ଗୌରବ
ହଜିଚି ଯା କାଳ ଗର୍ଭେ,
ଶପଥ ନେଇଚି ଗଢ଼ିବି ସେସବୁ
ବସିଚି ତେଣୁ ମୁଁ ଦଂଭେ ।

ତୋର ଗୀତ ସିନା ମୁଗ୍ଧ କରିଥିଲା
ବକୂଳ-କୁଂଜ-କାନନେ,
ସାଗର ସଙ୍ଗୀତ ବିଭୋର କରୁଚି
ନିଶିଥେ ମୋତେ ବିଜନେ ।
ସମୀର ମଧୁର ପ୍ରେମ ଜରଜର
ହୋଇ ସ୍ପର୍ଶ କରେ ଗାତ୍ର,
ଦିଗଙ୍ଗନା ଗଣ ରାତ୍ରେ ନୃତ୍ୟ ତାଳେ
ଗାଇ ମୋହୁଥାନ୍ତି ଚିତ୍ତ ।
ଉଷା ଆସି ହସି ଲୋଟି ପଡ଼େ କେବେ
ଅରୁଣ ତରୁଣ ସୂର୍ଯ୍ୟ,
କର୍ମକ୍ଲାନ୍ତ ହୋଇ ବାହୁଡ଼େ ସଦନେ
ସାରି ଦିବସର କାର୍ଯ୍ୟ
ବାହୁଡୁନି ମୁହିଁ ଭାବୁ ଅଛି ବସି
କରମ ତ ନିନ୍ଦିବାକୁ,
କାହାନ୍ତି ଦେଶର 'ଉକ୍ରଳ-କେଶରୀ'
କିଏ ଅଛି ଜଗିବାକୁ ।
କେତେ ସରି ଆଜି ଏ ଜାତିର ଶିରୀ
ବିଲୟ ଭଜିବ ସିନା,
ଆଉ କିଏ ଦେଶ ଶିଳ୍ପୀର ଉଡ଼ିବ
ବିଦେଶେ ବିଜୟ ବାନା ।
ଭଲେ ଛନ୍ତିଟିକି ଆମ ଜାତିଭାଇ
ବାରଶ ବଢ଼େଇ ପୁଅ,
ଏ ଜାତି ଦେଉଳ ମାଟିରେ ମିଶୁଚି
ଭାଙ୍ଗୁନି କାହାରି ମୋହ ?
ସ୍ୱପ୍ନେ ହଜି ମଜି ରହିଛନ୍ତି ଟିକି
ମୋ ଦେଶ ଓଡ଼ିଆ ଭାଇ,
ଯଶରଙ୍କ ନୃପ ହାରିଛନ୍ତି ତାପ
ଗଙ୍ଗା ଗୋଦାବରୀ ଜୟୀ ।

ଲକ୍ଷେ ରାଜାର ଯେ ମଉଡ଼ମଣି ସେ
ମୁକୁଟ କି ଗଲା ଖସି,
ଏ ଦେଶ ପାଇକ ବିଜୟ ପ୍ରତୀକ
ହାତେ ନାହିଁ କିବା ଅସି ?
କାଳ-କୀଟ-ଦ୍ରଷ୍ଟ ଗୌରବ ସ୍ମାରକ
ହୋଇଚି କି ଭୂଲୁଣ୍ଠିତ,
ଏ ଦେଶ ସଂପଦ ଅତୀତ ବିଭବ
ହୋଇଚି ବା ଅପହୃତ ?
ସୁଜଳା ସୁଫଳା ଉତ୍କଳ ଜନନୀ
କରୁଣା କି ଊଣା କଲା,
ଶୁଖାଇ ଦେଇଚି ଜଳଧାରା ଅବା
ମୁଦିଚି ଶସ୍ୟର ଖଳା ।
ଯେ ଜାତି ବୋଇତ ଖେଦି ବୁଲୁଥିଲା
ସାତ ସମୁଦର ବକ୍ଷେ,
ସେ ଜାତି କି ଆଜି ନୀରବ ଦର୍ଶକ
ସୁନେଲି ସପନ ଦେଖେ ।
ପ୍ରଗତି ପ୍ରଦୀପ ଆଲୋକ ପ୍ରତୀକ
ଦେଇ ଆତ୍ମ ପରିଚୟ,
ନୀରବେ ଶୁଏ କି ତା' ତଳ ଅନ୍ଧାରେ
ଭାଙ୍ଗିବନି ନିଦ ହାୟ !
ଲେଖିବୁ ଲୋ ସର କି ଥିଲା ଏ ଦେଶ
କି ହୋଇଚି ଆଜି ଦଶା;
ଏ ଜାତି ସନ୍ତକ, ସ୍ମୃତି କୋଣାରକ
ତେଜିବ କି ତା'ର ଆଶା ।
ସଭ୍ୟତାର ଅସ୍ତ୍ର ପାରିବ କି ଟାଣି
ଏ ଜାତି-ରଥ କୋଣାର୍କ,
ଚନ୍ଦ୍ରଭାଗା ବାଲି ଶେଯେ ଅବା ପଡ଼ି
ରହିବ ଏ ଜାତି ଟେକ ।

ସତ କହୁଚି ଲୋ ଅଳସ ବିଳାସ
ଜାତି ନ ତେଜିବ ଯଦି,
କହ କାହିଁପାଇଁ ଫେରିବି ତୋ ପାଖେ
ଭାବି ନେତ୍ର ହୁଏ ମୁଦି ।
ଦେଖିଥିଲା ଯିଏ ଏ ଜାତି ବୈଭବ
ଶୁଣିଥିଲା ଯଶ ଗାନ,
କି ସଂପଦ ସୁଅ କି ସୁଖ ତୁ କହ
ଦେଖି ମଜାଇବ ମନ ।
ପ୍ରେମ ନୀରଧାର ହୃଦୟୁ ମୋହର
ଶୁଖିବ କାନ୍ଦିବ ପ୍ରାଣ,
ବକୁଳ ବିପିନେ ଆକୁଳେ ବିଜନେ
କ୍ରନ୍ଦନ ତୋ ସାର ଧନ ।
କହିବୁ ମୋ କଥା ଚିହ୍ନା ସାଙ୍ଗ ସାଥୀ
ଯେ ଥିବେ ଯେଉଁଠି ରହି,
ଦେଶର ଜାତିର ଏ ଘୋର ଦୁର୍ଦ୍ଦଶା
ପାରୁନି ମୁଁ ଆଉ ସହି ।
ମୋ ରାଣ ଖାଆନି ଲେଖିବୁ ପତର
ବ୍ୟଥିତ ହୃଦୟ ପାଇଁ,
ଲୁହ ଢାଳିବୁନି ମୋ ପାଇଁ ଆଉ ତୁ
ଇତି ତୋ ଧରମା ଭାଇ ।



# ମଧ୍ୟାହ୍ନ : ଚନ୍ଦ୍ରଭାଗା

ହରପ୍ରସାଦ ପରିଚ୍ଛା ପଟ୍ଟନାୟକ

ବର୍ଷାପରି ଏତେ ଖରା ଯେ
ତମ ସତ୍ତ୍ୱେ ତାତି ଯାଉଛି ତମ ଭୂମି
ନିଜକୁ ନିଶ୍ଚିହ୍ନ କରିବା ଇଚ୍ଛାରେ ଦେହ
ତାତି ଯାଉଛି ଏ ଝାଉଁବଣର ଧରା ।

ତମର ଗର୍ଜନ ଏତେ ଯେ
ମୃତ୍ୟୁ ଜାଲରେ ଛଟପଟ ଆତ୍ମାର ଡାକ
ଆଚ୍ଛାଦିତ କରିଦେଉଛି ଦେହ ଆଉ ମନ ।

ନଦୀ ଯେପରି ଧ୍ୟାନସ୍ଥ ତମରି କୋଳରେ
ମୁଁ ସେପରି ଆଜି ସବୁ ବନ୍ଧନରୁ ଖସି
ଧରା ଦେଇଛି ତମ ଆଞ୍ଜୁଳାରେ ।

ତମେ ତ ଆମ ପରି ହସି ପାର
ସମୟର ତୀକ୍ଷ୍ଣ ଛୁରୀରେ ସଂକୁଚିତ କରିପାର
ଦୀର୍ଘ ଇତିହାସର କଥାକୁ
ତମେ ଅପ୍ରତେ ନ କର ଆମକୁ
ଆମ ପରି ତମର ଆଉ ଡର କାହାକୁ ?

କି ଉପମାରେ ଆଉ ବର୍ଣ୍ଣିବି ତମର ରୂପ
ତମେ ଅଜର ଅମର ପୂର୍ଣ୍ଣ ବ୍ରହ୍ମଙ୍କର
ତମେ ସ୍ଥିର ଇତିହାସ ଆମ ହସ କାନ୍ଦର ।

ହେ ମୋର ନିଦ୍ରିତ ଭାଗ୍ୟର ପୁରୁଣା ଅତିଥି
ତମ ନୀଳତ୍ୱରେ ହଜିଅଛି ଦୁଃଖଙ୍କର ଅସରନ୍ତି ତିଥି ।

ଏଇ ବିସ୍ତୀର୍ଣ୍ଣ ନୀଳ ପାରାବାରେ
ନିଜ କଳଙ୍କର ଛାଇକୁ ଜଗିବା ଛଡ଼ା
ମୁଁ ଛାର ଆଉ କ'ଣ କରିପାରେ !
ପ୍ରତିଥର ପହଞ୍ଚିଲା ପରେ ଦେଖେ
ବାପାଙ୍କର, ବୋଉର ଚଳମାନ ଜଳଛବି
ତମରି ଦେହରେ ।

# ଧର୍ମପଦ

ଗାୟତ୍ରୀବାଳା ପଣ୍ଡା

ସତ କୁହ, ତତେ କ'ଣ ଦିଶୁଚି ତୋର ମୁହଁ ।
ପ୍ରତିବିମ୍ବିତ ହୋଇପାରୁଚି ହୃଦୟ ତୋର
ମଣିଷ ମନରେ ।

ସତ କହିଲେ ତୁ କ'ଣ ତୋ ନିଜର ପ୍ରତିଫଳନ
ସମୟର ହରେକ ପାହାଚରେ ।

ତୁ କ'ଣ ଜାଣିନୁ, ଯୋଉଠି ଯୋଉଠି ପଡ଼ିଚି
ତୋର ଛାଇ, ସେଠି କେମିତି ମାଡ଼ିଯାଇଚି
ଅରାଏ ଖଣ୍ଡେ ପୋଡ଼ା ଘା'ର ଛାଇ ! କୋଣାର୍କର ।
ତୁ କ'ଣ ଥମ୍‌ହୋଇ ରହିଯାଇନୁ
କୋଣାର୍କର ମୁଖଶାଳାରେ ସେଇଦିନଠୁ ।
ତୋପାଇଁ କ'ଣ ଗୁମୁରି ଗୁମୁରି କାଂଦିନି ତୋର ବାପା
ରାତିଅଧରେ,
ସମସ୍ତେ ଘୁଂଗୁଡ଼ିମାରିବା ପରେ
ନିନ୍ଦିନି ତା'ର ଭାଗ୍ୟ,
ବାରଶ ବଢ଼େଇପାଖରେ ମାନିଯାଇନି ହାର୍ ।

ତୋର ସିନା ଦୁଃଖ ନାହିଁ ତୁ ଜାଣିପାରିନୁ ବୋଲି
ଯେ ଏବେ କେତେ କ'ଣ ଅଘଟନ ଘଟିଯାଉଚି
ଝାଉଁବଣର ଶୂନ୍ୟତାରେ ।
ମଝିରେ ମଝିରେ କେତେ ଅସହାୟ ହୋଇପଡୁଚି କୋଣାର୍କ
ବୁଲେଇଦଉଚି ମୁହଁ, ଲୁହ ନିଗିଡ଼ିଆସିବା ବେଳେ ।
ସେ ସାକ୍ଷୀ ହୋଇପାରୁନି,
ସତ କହିପାରୁନି
କହିପାରୁନି ସିଏ ସ୍ଥାପତ୍ୟ ନୁହଁ, ସ୍ଥବିର ନୁହଁ
ସତସତିକା ସାକ୍ଷୀଟିଏ ସବୁରି ଅପରାଧର ।
ସ୍ଥିତଧୀ ସିଏ ।

ତୁ ଜାଣିପାରିନୁ ବୋଲି ଦୁଃଖ ନାହିଁ ତୋର
ଯେ ତୋର ସ୍ୱପ୍ନସବୁ ଆଉ ସ୍ୱପ୍ନହୋଇ ରହିନାହିଁ
ରଜାଂକର ସ୍ତମ୍ଭ ଓ ସ୍ୱାକ୍ଷର ସବୁ ଭାଂଗିଗଲାଣି ଝଡ଼ପବନରେ
କେବଳ ଇତିହାସଟିକୁ ବାଦ୍‌ଦେଲେ ଗର୍ବକଲାପରି
ଆଉ କିଛି ବି ରହିପାରିନି କୋଣାର୍କ ପାଖରେ ।
'ବାରଶ ବଢ଼େଇରେ ଦାୟ'ର ଡାକରା ବି କ୍ରମେ
ଅସ୍ପଷ୍ଟ ହୋଇଆସିଲାଣି
ପୃଥିବୀର ପ୍ରଗତି ପାଖରେ
ବଢୁଥିବା ଭୋକ ସାମ୍‌ନାରେ ।

ତୁ କ'ଣ ଜାଣିନୁ
ତଥାପି ଛିଡ଼ାରହିଚି ମୁଁ
ଖରାକୁ ମୁହଁ କରି, ଦର୍ପଣ ଧରି
ଏଇଠି ତୋର ବୃତାଂତ ସ୍ୱାକ୍ଷର ପାଖରେ
କାଳେ ତୋର ଛାଇଟିକୁ ଦେଖିପାରିବି ମୁଁ
ମୋର ନଷ୍ଟହୋଇ ଆସୁଥିବା ଜଳକା ବର୍ତ୍ତମାନରେ
କହିପାରିବି : ଦେଖ, ଦେଖ କେଡ଼େ ଛୋଟ ପିଲାଟିଏ
ଜୀବନକୁ ପାଣିଛଡ଼େଇ ମିଶିଯାଇଚି
ସମୁଦ୍ରସହ ସମୁଦ୍ର ହୋଇ ଚନ୍ଦ୍ରଭାଗାରେ ।
ଯାହାର ମହାତାକାଂକ୍ଷାର ବାସ୍ନା
ଖେଳିବୁଲୁଚି ଏବେ ପବନରେ ।
ଯାହାର କୌତୂହଳ ଝଟକୁଚି
କୋଣାର୍କର ଦୀପ୍ତ ଆଖିଡ଼ୋଳାରେ ।

ସମୟର ଉଲ୍ଲାସପାଇଁ
ନଟୀମାନଙ୍କର ନୀରବ ହୋଇ
ବର୍ଷବର୍ଷ ଧରି
ବଂଚିରହିବାରେ ।



# ପାଷାଣ କାବ୍ୟ

ସୌଭାଗ୍ୟବନ୍ତ ମହାରଣା

କଳା ମୁଗୁନି ପଥରର ବିପୁଳତା ଭିତରେ
ଓଡ଼ିଶୀମୁଦ୍ରାରେ ଆଖି ମାରୁଥିବା ନୃତ୍ୟାଙ୍ଗନା
ଅକସ୍ମାତ୍ କବିତା ପାଲଟିଯାଏ
ପ୍ରେମିଳ ପରିବ୍ରାଜକ ଆଖିରେ ।
ଝାଉଁବଣର ଝନତ୍କାରରେ
ଚମକିପଡ଼େ ବାଲିଘରର କୋମଳ ଛାଇ
ଜହ୍ନରାତିର ଚୁମା ଖାଇବାକୁ
ସମୁଦ୍ରର ସହରରେ ନିଜକୁ ହଜେଇ ।

ସ୍ମୃତି, ସ୍ୱପ୍ନ ସହବାସର ନକ୍ସା ଆଙ୍କିବାକୁ
କୋଣାର୍କରେ ରୂପ ଓ ରସର ବେଭାର ।
କାରୁକାର୍ଯ୍ୟରେ ବିଭୋର ପରିବ୍ରାଜକର
ସ୍ୱପ୍ନଭଙ୍ଗ ଦିନ ଦି'ପହରେ ।
ସନ୍ନ୍ୟାସୀଟେ ହଠାତ୍ ଶୃଙ୍ଗାରିଚେତ୍ ବନିଯାଏ
କୋମଳତା ଓ କମନୀୟତା ବଗିଚା ଭିତରେ
ନିଜକୁ ଖୋଜୁଖୋଜୁ ଅମୃତ ବେଳାରେ ।
ଇତିହାସର କ୍ଷୟିଷ୍ଣୁ ମୁଖଶାଳାର
କଳା ମୁଗୁନି ପଥରର କାରୁକାର୍ଯ୍ୟ କଥାକହେ
କଳାକାର ଓ କଳାପ୍ରେମୀ ଚିହ୍ନିବାକୁ ଆଉଥରେ ।

ନୀରବତା ଶିହରି ଉଠେ
ଘାସଫୁଲର ସ୍ୱପ୍ନଭଳି
ଭଙ୍ଗା ଦେଉଳର ଦୁର୍ଦ୍ଦଶାରେ
ବିଶୁ ମହାରଣାକୁ ଆଉଥରେ ଖୋଜିବାକୁ
ଚନ୍ଦ୍ରଭାଗାର ଚାନ୍ଦିନୀ ରାତିରେ ।

ସେ ପାଷାଣ କାବ୍ୟର ପ୍ରତିଟି ସର୍ଗରେ
ରୋମାଣ୍ଟିକ୍ ଅବବୋଧର ଅଲିଭା ଅକ୍ଷର ।
ପୂନେଇଁର ଜୁଆରରେ ସମୁଦ୍ର ସାରା
ନୀଳ ଜ୍ୟୋତ୍ସ୍ନାର ବେହରଣ ।
ଚିକ୍ ଚିକ୍ ବାଲିଶେଯରେ
ଶଂଖ ଓ ଶାମୁକା ଖୋଜେ ବ୍ୟସ୍ତ ହୋଇ
କଅଁଳିଆ ସୂର୍ଯ୍ୟର ପାର୍ବଣ ।

ପ୍ରିୟ ପରିବ୍ରାଜକ, ହେଇ ଦେଖ ସ୍ଥାପତ୍ୟର
ସଂଭାରରେ
ଅସଜଡ଼ା ଅନ୍ଧାରର ଆତ୍ମଲିପି ପଢ଼ିବାକୁ
ଅର୍କକ୍ଷେତ୍ରେ ଅମାବାସ୍ୟାର ନିରାସକ୍ତ ଅଭିଷେକ ।
ଦିଗ୍‌ବଳୟର ସବାଶେଷ ବିନ୍ଦୁରେ
କ୍ଳାନ୍ତଶ୍ରାନ୍ତ ବାରଶହ ବଢ଼େଇର ନଷ୍ଟଭାଗ୍ୟ
ବଦଳିଯାଏ ରାତିକ ଭିତରେ
ଗୋଟେ ନାବାଳକର ଠୁକ୍ ଠୁକ୍ ଶବ୍ଦର
ସରଳ ନିରୀହ ଯାଦୁରେ
ପ୍ରିୟ ପ୍ରତିଧ୍ୱନିର ଅନ୍ତରାଳରେ ।



# କୋଣାର୍କ

ହାଁଶ ବେନହୁର

ପୁରୁଷଟିଏ ନାରୀଟିଏ
କୋଣାର୍କ ଯାଇଥିଲେ
ଢେର୍ ବୁଲିଲେ, ମୂର୍ତ୍ତି ଦେଖିଲେ
ରାତିହେଲାରୁ ହାଲୋଳହେଇ ପଡ଼ିଲା ଆଲୁଅ
ଚାରିକଡୁ ନିଅନବତୀରୁ
ସେଇଠୁ ଫେରିଲେ ସେମାନେ ।

ଫେରିବା ବାଟରେ ଦୁଇଜଣଙ୍କ ଦେହରେ
ସବାର୍ ହୋଇଥାଏ କୋଣାର୍କ ।

ସେମାନେ ଘରକୁ ଫେରିଲେ
ନାରୀଟି ଦେହରେ ହାତ ପକେଇଲାବେଳେ
ପୁରୁଷଟି ଦେଖୁଥାଏ କୋଣାର୍କକୁ
ନୂଆ ଉଚ୍ଛାଟରେ ଡେଉଁଥାଏ ସେ ।
ନାରୀଟି ଅଥଚ
କାକୁସ୍ଥ ହୋଇ ଆଖି ବୁଜି ଦେଇଥାଏ ।
ଆଲୋକିତ କୋଣାର୍କ ସେତେବେଳୁ
ନାଚୁଚି ତା' ଆଖିରେ ।
ଫୁଙ୍ଗୁଳା ଦେହରେ ଚରୁଚି
ଦିନପରି ଅଜସ୍ର ଆଲୁଅ ।

ଶୁଣ !
କୋଣାର୍କମାନଙ୍କୁ
ନିଅନ୍ ଆଲୁଅରେ ନଚାଅନାହିଁ
ନଚେତ୍ ସବୁନାରୀଙ୍କୁ ଏମିତି
କାକୁସ୍ଥ ରହିବାକୁ ପଡ଼ିବ ସବୁଦିନେ ।



# କୋଣାର୍କ ସୁନ୍ଦରୀ

ବସନ୍ତ ମୁଦୁଲି

ତୁମେ ଆସିଲେ
ସୁବାସିତ ହୋଇଯାଏ ଆକାଶ
ଗୋଡ଼ି, ମାଟି, ପାଣି ଓ ପବନ ଗହଗହ ବାସେ,
ଫୁଲିଉଠେ ନିଥର ମୁହୂର୍ତ୍ତ ।
ଠିକ୍‌ଠାକ୍ ହୋଇଯାଏ କଳକବ୍‌ଜା
ଭଙ୍ଗାଇଟା ଯୋଡ଼ିହୋଇ ଗଢ଼ିଉଠେ ପୂର୍ଣ୍ଣାଙ୍ଗ ଦେଉଳ
ଯା' ଭିତରେ ରହିଯା'ନ୍ତି
କୋଟି କୋଟି ଚନ୍ଦ୍ର, ସୂର୍ଯ୍ୟ, ଚଉଦ ବ୍ରହ୍ମାଣ୍ଡ ।

ଗବାକ୍ଷ ଫାଙ୍କରେ ଅନେଇଲେ
ଦେଖାଯାଏ ଶୋକାର୍ତ୍ତ ରାସ୍ତାଟି
ଯେଉଁଠି ହଜିଯାଇଛି ମୋର ଦୁଇପାଦ :
ଆଗକୁ ଚାହିଁଲେ ଦିଶେ
ବିକଳାଂଗ ଇତିହାସ, ଶୀର୍ଣ୍ଣ ସରହଦ
ଯେଉଁଠି ଗଢ଼ିଛି କେତେ ବାଲିଘର
ଲେଖିଛି ଆପଣା ନାମ, ହୃଦର ଅତର
କିନ୍ତୁ ହାୟ;
ସମୁଦ୍ର ନେଇଛି ପୋଛି କାମୁକପଣରେ
ଗଢ଼ିଦେଇ ଅସହାୟ ଶବ୍ଦଂକ କବର ।

କିଛିଦିନ ଶାନ୍ତହେଲି
ଉତ୍କଣ୍ଠାରେ ଝରିଗଲା ବିନ୍ଦୁବିନ୍ଦୁ ଝାଳ
ଝାଳରୁ ସମୁଦ୍ର ହେଲା
ଯାହା ମୋର ସୃଷ୍ଟ ଏବଂ ମୋର କାଳ,
ଶ୍ରାବଣର ଯନ୍ତ୍ରଣାରୁ ମୁକ୍ତିଲଭି
ଖୋଜିଲି ମୁଁ ବସନ୍ତର କୋଳ
ତୋଫା ଛନ୍ଦ, ପରିତ୍ୟକ୍ତ ସଂଗୀତର ସ୍ୱର
ସେ ଲହର ସର୍ପ ହେଲା
ଚାହୁଁ ଚାହୁଁ ଛୁଇଁଗଲା କୂଳ
ସୂର୍ଯ୍ୟୋଦୟେ ମୁଁ ହସିଲି ଦେଖି ତୁମ ଅବିନ୍ୟସ୍ତ ପାଦଚିହ୍ନ
ବିନ୍ଧାଣିର କମ୍ର ଭାସ୍କର୍ଯ୍ୟରେ;
ସଂଜହେଲେ ମୁଁ କାନ୍ଦିଲି ପବନର ତୀକ୍ଷ୍ଣ ଗଂଜଣାରେ ।

ଆଲୋକ ଲିଭେଇଦେଲା ତୁମ ଛବି, ପଳିତ ଚିତ୍ର
ଅବକ୍ଷୟ ସ୍ମୃତି ଓ ରୂପର ବୈଚିତ୍ର୍ୟ
ଯାହାର ପୁନରାବୃତ୍ତି ଘଟେ ନିତି
ପରା ଶବ୍ଦ, ମୋ ହୃଦ କନ୍ଦରେ
ଇତିହାସ ଜୀର୍ଣ୍ଣପୃଷ୍ଠା, ସଂସ୍କୃତି ଗର୍ଭରେ
ବିଜଡ଼ିତ ଘଟଣାର ଅସହାୟତାରେ ।

ତୋହରି ବିମୂର୍ତ୍ତ ସତ୍ତା
ମୁଗ୍‌ଧକରେ ଚେତନାର ସ୍ତରେ ସ୍ତରେ
ସ୍ନିଗ୍‌ଧକରେ ତରୁ ବୀଥିକାରେ
ଅଜସ୍ର ଚୁମାରେ ଆଂକିଦିଏ ବିକଳାଂଗ ଧରିତ୍ରୀର ଦେହ
ପ୍ରତିଦିନ ପ୍ରତିନିୟତରେ
ତୋ ଛାୟାରେ ଭରିଯାଏ ମୋ ରକ୍ତ ହୃଦୟ ।

କଲମରେ କାଳି ଭରି ଉଠେ
ଅବସନ୍ନ ଅବୟବରୁଁ ତନ୍ଦ୍ରାଳସ ତୁଟେ
ପଦ୍ମପତ୍ରେ ଢଳଢ଼ଳ ତୋ ପ୍ରଶାନ୍ତ ମୂର୍ତ୍ତି
ଦେଇଯାଏ ଶକ୍ତି ଓ ସାମର୍ଥ୍ୟ
ଭାଷା କୋଟିକମ ଏବଂ ଉଜ୍ଜ୍ୱଳତା
ନିରବଧି ଶାନ୍ତିର ବାର୍ତ୍ତା ଶୁଣେଇ
ଦେଇଯାଉ ବଂଚିବାର ଇଚ୍ଛା, ଜାଗିବାର ଅଦମ୍ୟ ପିପାଶା ।

ତେଣୁ ତୋତେ ଭଲପାଏ ମଶାଣିରେ ହଜିବା ପର୍ଯ୍ୟନ୍ତ
ଯନ୍ତ୍ରଣାରେ ଜନ୍ତି ହୋଇ
ତୋ କୋଳରେ ଶୋଇବା ପର୍ଯ୍ୟନ୍ତ ।



# କୋଣାର୍କ

ଗିରିଜା କୁମାର ବଳିଆରସିଂହ

କେହି କେବେ ଦେଖିଚ କି କାଂଦିପାରେ କେମିତି ସମୟ
ନଈତଟେ କେମିତି ଭୁଲେ ନାଚୁ ନାଚୁ ତରଂଗର ତାଳ ?
ମୂର୍ତ୍ତିମତୀ ମାୟାମାନେ ବୋଲି ହୋଇ ବିଚ୍ଛିନ୍ନ ବିଗ୍ରହ
କେମିତି କାଟଂତି କାଳ — ଦେଖିଚ କି ? କୋଣାର୍କକୁ ଚାଲ !

ଶବ୍ଦସବୁ ସ୍ତବ୍ଧ ଏଠି — ଚାପା ତଳେ ପଥରଚକର
ଧ୍ୱଂସର ଧକ୍କାରେ ପୁଣି ଦିନସବୁ ଦୁର୍ଘଟଣାଗ୍ରସ୍ତ...
ରାତି ଆସି ବାଂତି କରେ କଳାରକ୍ତ ପ୍ରହର ପ୍ରହର
ମିଥୁନମୁଦ୍ରାରେ ଜମେ ଧୂଳିମଳି ପରସ୍ତ ପରସ୍ତ !

ସବୁସତ୍ତ୍ୱେ ସ୍ୱପ୍ନ ଏଠି ଆଜି ମଧ ଖୁଜୁବୁଜୁ ହୁଏ
ଆଜି ମଧ ଓଦା ହୁଏ ଅଳତାରେ ଘାସର ଏ ଘୁମ...
ହେ ଫଗୁଣ, ଲେପିଯାଅ ମୌନାବତୀ ମୁହେଁ
ଆସ ମୋ' ଚଇତିଚଂପା, ସଜଳ ଏ ସ୍ମୃତିଟିକୁ ଚୁମ !

ଚାହିଁରୁହ ଚଂଦ୍ରଭାଗା ! କାଂଦନା ମୋ' କରୁଣ କୋଣାର୍କ !
ପ୍ରେମ ଥିଲା । ପ୍ରେମ ଅଛି । ପ୍ରେମ ଥିବ ଯାବତ ଚଂଦ୍ରାର୍କ ।।



# ଚନ୍ଦ୍ରଭାଗା : ମୁହଁ ଫେରାଅ

ଜୟକୃଷ୍ଣ ବାରିକ

ତେବେ କଣ କଳ୍ପନା କରିଥିଲି
ଯେ ଏଠିକୁ ଆସିବା ପରେ
ତମେ ଇମିତି ଲୁଚିଯିବ ଧୀରେ ଧୀରେ ସବୁଦିନ ପାଇଁ !
ବହୁକାଳ ପରେ କୌତୁହଳ ଘେରିଛି କୋଣାର୍କର
ଭଗ୍ନାବଶେଷ ।

ଏବେତ ବଦଳି ଯାଇଛି ସମୟ,
ଅନେକ ଗଭୀର କଥା ଫୁଟି ଉଠୁଛି ତମ ଆଖିରେ
ସକାଳର ଫୁଲ ପରି
ପିପାସିତ ସମୟର ଅବିଶ୍ୱାସ୍ୟ କଙ୍କାଳ ଉପରେ ଛିଡ଼ା ହେଇ
ଅନେଇ ରହିଛ ଧର୍ମପଦ ଆଡ଼େ,
ନିଷ୍କପଟ, ନିରୀହ ପିଲାଟି ପାଇଁ ତମର ସତେ କେତେ
ବ୍ୟାକୁଳତା !

ଆଜିଠାରୁ କେତେ ଶହ ବର୍ଷ ପୂର୍ବେ
ଅଜସ୍ର କୋଳାହଳରେ ମୁଖରିତ ତମ ତୀରଦେଶ,
ଭୋରବେଳାର ଝିଲିମିଲି ସୂର୍ଯ୍ୟକିରଣରେ ଅଭିଭୂତ
ନିକଟବର୍ତ୍ତୀ ପଲ୍ଲୀ,
ଗ୍ରାମ୍ୟ ବଧୂଗଣ ଦଳବାନ୍ଧି ସ୍ନାନ କରୁଥିବା ବେଳେ
ତମ ଆଖିରେ କେତେ ସବୁଜ ବିସ୍ମୟ !
ସେଦିନ ତମର ମନେ ଥିବ

ଚୁପ୍‌ଚାପ ଏକୁଟିଆ ଛିଡ଼ାହେଇ ଅନୁଭବ କରୁଥିଲ
କୋଳାହଳର ସ୍ନିଗ୍ଧତା,
ନିଷ୍ପଲକ ଦୃଷ୍ଟିରେ ଦେଖୁଥିଲ ନିଜର ଶସ୍ୟପ୍ରସୂ ଶରୀର,
ଅର୍କପୂଜାସନ୍ଧ୍ୟେ ବିଭୋର ନରେଶ କିମିତି ନେଇ ଆସୁଥିଲେ
ସୃଷ୍ଟିର ଦେବତାଙ୍କୁ ଅନ୍ତରୀକ୍ଷରୁ !

ବହୁବର୍ଷ ପରେ ତମକୁ ଦେଖିଲି ପୁଣି
ପୁରୁଣା ଆଲମିରା ଭିତରେ,
ରାଧାନାଥଙ୍କ 'ଚନ୍ଦ୍ରଭାଗା'ର ଧୂଳି ମଳିନ ଚେହେରା,
ମୂଳରୁ ଶେଷ ଯାଏ ତମେ ହିଁ ବ୍ୟାପୀଚ
ଅଗଣିତ ଆଲୋକିତ ପଂକ୍ତି ରୂପେ,
ମହମବତୀର ଶିଖା ପରି ଉଜ୍ଜ୍ୱଳ ହେଇ ଉଠିଲା
ତମ ଦିହ ଭିତରେ ଅଶ୍ରୁସିକ୍ତ ନିହତ ସମୟ,
ଏବେ କଣ ଫେରିଲ କି ତମେ ?
ମନେ ହୁଏ ଏଇଠି ରହିଛି ଏଇଠି ବି ନାହିଁ ଯିମିତି
ମୋ ଛାଇ,
ବେଳେ ବେଳେ ଦୂରଦର୍ଶନରେ ମନ୍ଦିରର କ୍ରମକ୍ଷୟଶୀଳ
ଚେହେରା ଦେଖୁ ଦେଖୁ
ଅନ୍ଧକାରାଚ୍ଛନ୍ନ କାଳସିନ୍ଧୁ ଭିତରୁ ଶୁଣାଯାଏ
ଆର୍ତ୍ତନାଦ-ଟିଏ,
ସତେ ଯିମିତି ଚେଷ୍ଟା କରୁଛ ଥରକୁ ଥର ନିଜକୁ ପାଇବାକୁ,
ଏତେ କାଳ ଧରି ଅଗୋଚର ହେବାପରେ
ତମେ କଣ ସତେ ଦେଖା ଦେବ ଠିକ୍ ଏଇ ଜାଗାରେ
ପୃଥିବୀଠାରୁ ଅଧିକ ସତ୍ୟ ହେଇ ?
ଚନ୍ଦ୍ରଭାଗା, ଏବେ ମୁହଁ ଫେରାଅ ।



# କୋଣାର୍କ

ଡ. ମନ୍ମଥ ନାଥ ଦାସ

ହେ କୋଣାର୍କ, ସତତ ବରେଣ୍ୟା !
ନୁହଁ ତୁମେ, ବିଗତ ଯୌବନା,
ଶାଶ୍ୱତ ଯୌବନା ତୁମେ, ଦେବଶିଳ୍ପୀ କନ୍ୟା,
ନୁହଁ ତୁମେ, ମୌନଦୁଃଖେ ସୈକତ ଶୟନା,
ସମୟ ସିକତା ପରେ, ତୁମେ ଧ୍ୟାନମଗ୍ନା ।

ଅଗାଧ ସୌନ୍ଦର୍ଯ୍ୟରାଶି ଧରି ତୁମ ଅଙ୍ଗେ,
ବିକିରଣ କରି ରୂପ ରେଖା,
ଆକର୍ଷିତ କରୁଅଛ ମନୁଷ୍ୟର ପ୍ରାଣ
ଉପଭୋଗ କରିବାକୁ ଅପରୂପ ଶୋଭା,
ଧାବମାନ ଜନରାଶି, ଦେଶ ଦେଶାନ୍ତରୁ କରୁଥାନ୍ତି ତୁମର ବନ୍ଦନା,
ବିମୋହିତ ବିଶ୍ୱବାସୀ ତୁମର ପ୍ରାଙ୍ଗଣେ
ଦେଖି ତୁମ ରୂପ ମଧ୍ୟେ ଅମର ସାଧନା ।

ନିତ୍ୟ ଲସ୍ୟମୟୀ ତୁମେ, ଲୀଳାୟିତ ଭାବଭଙ୍ଗୀ ପୂର୍ଣ୍ଣା,
ଚିରହାସ୍ୟମୟୀ, ସବର୍ଣ୍ଣା, ସଂପୂର୍ଣ୍ଣା,
କାଳଜୟୀ ତୁମ ରୂପ, କଳାର ଆଧାର
ଶିଳ୍ପୀର ସ୍ୱପନ ତୁମେ, କବିତା କବିର ।

ତୁମ ଅଙ୍ଗେ ବିରାଜିତା ପାଷାଣୀ ନର୍ତ୍ତକୀ,
ଜୀବନ୍ତ ରୂପସୀ ରୂପେ, ଦେଶେ ଦେଶେ କରିଥାନ୍ତି ନୃତ୍ୟ,
ପାଷାଣୀ ବାଦିକାଗଣ, ନାରୀ ରୂପେ ବିଚରନ୍ତି ଆଜି ଚାରିଦିଗ,

## ୧୯୬ କବିତା  କୋଣାର୍କ

ଧରାବକ୍ଷେ ତୁମେ ଆଜି ନିଜ ନାମେ ଧନ୍ୟା,
ହେ କୋଣାର୍କ, ହେ ଶାଶ୍ୱତୀ, ବିଶ୍ୱ ବନ୍ଦନୀୟା ।

ଦେଖୁଥିଲେ ଦିନେ ତୁମ ରୂପ
ଦିଗ୍‌ବିଜୟୀ ରାଜା ନରସିଂହ,
ଶତ୍ରୁ ଜିଣି ବିଜୟ ଗର୍ବରେ
ଗଢ଼ିଥିଲେ ଯେଉଁ କୀର୍ତ୍ତିସ୍ତମ୍ଭ,
ଯା ଗାତ୍ରରେ ଉତ୍କଳୀୟ ଶିଳ୍ପୀ
ରଚିଥିଲେ ଭାବୋଚ୍ଛ୍ୱାସ ଭାଷା,
ଯେ ଭାଷାରେ ମିଶିଥିଲା
ସ୍ୱରଗ ଓ ସଂସାରର ଅନନ୍ୟ ବାରତା ।

ଭାସ୍କର୍ଯ୍ୟ ପ୍ରାଚୁର୍ଯ୍ୟ ମଧ୍ୟେ ଉତ୍କଳ ଭାସ୍କର,
କରିଥିଲେ ରୂପ ଉତ୍କିରଣ,
କଠିନ ପାଷାଣ ଭେଦି ଆବିର୍ଭୂତ ହେଲେ ଯହିଁ
ନରନାରୀ, ପଶୁପକ୍ଷୀ, ଦେବଦେବୀଗଣ ।

ପୂଜିଥିଲେ ରାଜା ନରସିଂହ
ସୂର୍ଯ୍ୟଙ୍କ ମୂରତି
ଚକିତେ ଦେଖଇ ବିଶ୍ୱ
ଆଜି ସେ କୀରତି ।

ପୂର୍ବଭାଗେ, ଉଦିତ ଭାସ୍କର ମୂର୍ତ୍ତି
ସ୍ମିତହାସ୍ୟେ ଚାହିଁରହି କରନ୍ତି ସ୍ୱାଗତ

ନୂତନ ଦିବସ ସହ,
ନବାଲୋକ ଆସେ ଯେବେ ଭେଦି ପୂର୍ବାକାଶ,



# ଦଂଶିତା ଚନ୍ଦ୍ରଭାଗା

ସଦାଶିବ ଦାଶ

ତୁମେ ! ସେଠି ଲାଲମନ୍ଦାରର ବାଳୁତ ସୂର୍ଯ୍ୟକୁ...
ଦେଖିଛ କି ପ୍ରେମିକ ବ୍ରାହ୍ମଣ ରୂପରେ ?
ଦେଖିଛ ତା ଜହ୍ନି ଫୁଲିଆ ଜହ୍ନର ଛନଛନିଆ ହସ !
କୁଆଡ଼େ ପାଗଳ ପରି ସବୁଦିନେ
ଦୌଡୁଥାଏ ବାଲୁକା ଉପରେ ।

ଆଗେ ଆଗେ ଦୂରେଇ ଯାଉଥାଏ
ଚନ୍ଦ୍ରଭାଗାର ସାଗରୀକାବେଶ ।
ଖରାରେ ଉଷୁମ ଦେହ, ଜ୍ୟୋସ୍ନାର ବା ରୁପେଲୀ ଯନ୍ତଣା ।
ହାୟ ମୋର ଦଂଶିତା ଚନ୍ଦ୍ରଭାଗା;
ତୁମକୁ କିଏ କ'ଣ କେବେ ଦେଖିଛି ନା ପାଇଛି ?

ଚାରିଆଡ଼େ ଟହଟହ ବାଲିର ମୁରୁଯ,
ଝାଉଁବଣ ବଇଁଶୀର ନାଦ ।
ସତେ ପରା ସାଗର ଓ ମର୍ତ୍ତ୍ୟ ମଧ୍ୟେ
ନିର୍ବାକ ସମ୍ବନ୍ଧ ! ଶବ୍ଦ : ଶବ୍ଦଭେଦ !

ସନ୍‌ମୋହୀକା ଆତ୍ମଲୀନା ଚନ୍ଦ୍ରଭାଗା ମୋର !
ତୋ ଲୁହରେ ଯୁଗାନ୍ତର
ପୁତ୍ର ଶୋକ ବିଶ୍ୱକର୍ମାଙ୍କର
ଚାରିଆଡ଼େ ସମୁଦ୍ରର ଧବଳ ଫୁତ୍କାର ।

ତୁ ବି କ'ଣ ଲହଡ଼ି ଭିଜି ପିଟି ହେଉଥାଉ ?
ସ୍ମୃତିରେ ତୋ ସଙ୍ଗୀତର ମୂର୍ଚ୍ଛନାମାନ ଭାସିଆସେ ।
ଅଦେଖା କୋଇଲିଟି ପରି ସ୍ୱର ତୋର ଦୁଃଖଦ ହୋଇଯାଏ ।
ପଥର ଭିତରେ ଆଂକି ହୋଇଯାଏ ଲାସ୍ୟର କୋଣାର୍କ ।
ତୁ ମୋର ମନେପଡୁ,
ଆଜନ୍ମକ ବ୍ରାହ୍ମଣର ଜାରଜ କ୍ଷୁଧାରେ
ତୁ ଧବଳ ବର୍ଣ୍ଣା ହଂସୀପରି
ତୋ ରତୁର ବୈଧବ୍ୟରଜ୍ଜୁରେ
ବାନ୍ଧି ହୋଇ ଯାଉ ।

ଆକାଶର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ
ରକ୍ତାକ୍ତ ଚକ୍ରବାକ ପରି ଖୋଜୁଥାଏ ତୋର ଆଦିମୂଳ ।
ପ୍ରାଣର ସୁଦୂର୍ବକା ! ଅଜାଣ କେଉଁ କାମନାର–
ସାତତାଳ ନର୍କରେ ଜଳି ଯାଉଥିବା ତୋର ଯୌବନର–
ହସ୍ତାକ୍ଷର ନିମିଳୀତ ହୋଇଯାଏ ।

ଶୁଷ୍କ ବାଲୁକା ବଂଜର ପରି ପଡ଼ିରହି ଥାଉ
ମୋର ପ୍ରାଣର ଚନ୍ଦ୍ରଭାଗା !
ତୋତେ ମୋର ଜୀବନ୍ତ ବର୍ତ୍ତମାନ ଆଶ୍ଳେଷ କରେ ।
ମନେପଡ଼େ ତୋର ଅଶ୍ରୁର ସମ୍ଭାଷଣ !
କେବଳ ତୁ ଯାହା ଉଠିଆସୁ
ସମୁଦ୍ରର ଢେଉ ଢେଉକା ଖେଳ ଭିତରୁ
ଜୀବନର ଲାଲ ଶିଶୁଟିଏ ।
ଅଥବା ଅନ୍ଧାରର ପେଡ଼ି ଭିତରେ;
ଚକା ହୋଇ ଶୋଇ ଥାଉ
ଦାରୁ ହଳଦୀ ରଙ୍ଗର ଜହ୍ନପରି ।



# କୋଣାର୍କ

ବିଘ୍ନରାଜ ପଟେଲ୍

ବାଲୁକା ଶଯ୍ୟାରେ ଆମେ
ସମାଧିସ୍ଥ ପରି ପଡ଼ିଥାଉ
ମନ୍ଦିର ଚୂଡ଼ାରେ ସୂର୍ଯ୍ୟ
ଆଲୋକ ଢାଳିବା ପର୍ଯ୍ୟନ୍ତ ।

ଯେତେବେଳେ ସେ ପରିଧାନ ପାଇଁ ଉଠିଲେ
ମୋ କପାଳରେ ଦେଲେ ଚୁମ୍ବନଟିଏ
ଏବଂ ବାହାରି ଗଲେ ।
କୋଣାର୍କର ନିରୁପାୟ ଧ୍ୱଂସାବଶେଷ ମଧ୍ୟରେ
ମୁଁ ଦେଖିଲି ଏକ ଦମ୍ପତି
ପୂର୍ବରୁ ସନ୍ଧ୍ୟାରେ ଆମେ
ତାଙ୍କୁ ଦେଖିଥିଲୁ ।
ଏବେ ସେମାନେ ପାଲଟିଯାଇଥିଲେ ପଥର ।
ସକାଳର ସୂର୍ଯ୍ୟାଲୋକରେ
ଏବଂ ଏକ ପ୍ରବାଳ ପ୍ରାଚୀରରେ ଝୁଲି ପଡ଼ିଥିଲେ
ଜନଶୂନ୍ୟ ବେଳାଭୂମି ଅତିକ୍ରମ ଇଚ୍ଛାରେ
ଯେଉଁଠି ମତ୍ସ୍ୟ କନ୍ୟାଟିଏ ମରି ପଡ଼ିଥିଲା ॥



# କୋଣାର୍କ ପଥର

ଡା. ବିକ୍ରମ ଦାସ

(କୋଣାର୍କ ମନ୍ଦିରରୁ ବିରାଟ ପଥର ଖସି ଦୁଇଖଣ୍ଡ ହେବା ଉପରେ)

ପଥର ରୂପରେ ଦେବ ଯୁଗ ଯୁଗ ଧରି
କୋଣାର୍କ ସୂର୍ଯ୍ୟ ମନ୍ଦିର ରଖିଲ ଆବୋରି
କେଉଁ ଯନ୍ତ୍ର ବଳେ ତୁମେ ଉପରକୁ ଗଲ
କିଏ ତୁମେ ? ଏତେ ଦିନେ ତଳକୁ ଖସିଲ
ତୁମେ କି ପଥର ? ଜଣେ ସେହି ପୂଜ୍ୟ ଜନୁ
ଯେ ମନ୍ଦିର ଗଢୁଗଢୁ ପାଲଟିଲେ ସ୍ଥାଣୁ
ଟୋଳି ଗଢ଼ି ଯେ ମନ୍ଦିର ପାଲଟି ପ୍ରସ୍ତର
ମନ୍ଦିର ଗାତ୍ରରେ ରହି ହେଲେ ଜାତିସ୍ମର
ହେ ପଥର ! ଦେଖିଥିବ ଧର୍ମପଦେ ପରା
ଦେଖିଥିବ ଶିଳ୍ପୀଜନେ କାର୍ଯ୍ୟେ ଆତ୍ମହରା
ଦେଖିଛ କୃଷକ ସେନା କରବାଳ କରେ
ଦେଖିଛ ସାଧବ ଯାତ୍ରା ମହୋଦଧି ଜଳେ
କୋଣାର୍କର କାରୁକାର୍ଯ୍ୟେ ସ୍ତମ୍ଭୀଭୂତ ନର
ଶତଘାତ ପ୍ରତିଘାତେ ସେ କଳା ଅମର
ଦେଶ ବିଦେଶୁ ଆସନ୍ତି କେତେ ଯେ ଦର୍ଶକ
ତଥାପି ତା ସୁରକ୍ଷଣେ ସର୍କାର ବିମୁଖ
ପ୍ରତ୍ନତତ୍ତ୍ୱ ବିଭାଗର କର୍ମଚାରୀ ଦଳ

ପର୍ଯ୍ୟଟନ ବିଭାଗର ସରକାରୀ କଳ
ସର୍ବେ କି ଅଚଳ ହେଲେ ପାଷାଣର ପରି
ପବିତ୍ର ମନ୍ଦିର ଗାତ୍ରୁ ତୁମେ ପଡ଼ ଟଳି
ଶାସନ କନ୍ଦଳ ଦେଖି ହେଲକି କାତର
ଆତ୍ମାହୁତି ଦେଲ ଆହେ, ମନ୍ଦିର ପଥର
ଓଡ଼ିଆଙ୍କ ଦୁର୍ଦ୍ଦଶା କି ପ୍ରାଣକୁ ବାଧିଲା
ତଳେ ପଡ଼ି ତୁମ ଛାତି ଦୁଇଫାଳ ହେଲା ।



# କୋଣାରକ ବୋଲି ଦେଉଳଟିଏ

ନନ୍ଦ କିଶୋର ସାମଲ

କୋଣାରକ ବୋଲି
ଦେଉଳଟିଏ
ଚୂଳ ମରା ତା'ର
ସରି ନ ଥାଏ ।

ବାରଶ' ବଢ଼େଇ
ବାର ବରଷ
କାମ କଲେ ତୋଳା
ନ ହେଲା ଶେଷ ।

ବାର ବରଷର
ପୁଅ ଧରମା
କୋଣାରକ ଦେଖି
ନ ଥିଲା ଜମା ।

ବାପାଙ୍କୁ ଦେଖିବା
ଆଶାରେ ଆସି
ବାରଶ' ବଢ଼େଇ
ମେଳରେ ପଶି,

କହିଲେ ନ ସରେ
ଧରମା ଖୁସି
ବାରି ବରକୋଳି
ବିକିଲା ବସି ।

ଚୂଳ ମରା ଶେଷ
ନ ହେଲେ କାଲି
ବାରଶ' ବଢ଼େଇ
ପଡ଼ିବେ ଟଳି ।

ଧରମା ମାରିଲା
ଦେଉଳ ଚୂଳି
ଟଳମଳ ହେଲେ
ବଢ଼େଇ କୁଳ ।

ବଢ଼େଇ କୁଳର
ମହତ ପାଇଁ
ଧରମାଟି ଦେଲା
ଜୀବନ ଦେଇ ।

ବିଶୁ ମହାରଣା
ପୁଅ ଧରମା
କୋଣାରକ ଦେଖି
ନ ଥିଲା ଜମା ।



# କୋଣାରକ କଳା – କଳାର କୋଣାର୍କ

ବିନୋଦିନୀ ଦେବୀ

କୋଣାରକ କଳା– କଳାର କୋଣାର୍କ
କୋଟି କବି କଳପନା
ଶିଳ୍ପୀ ହାତର ନିହାଣ ମୁନରେ
ଅଙ୍କା ଯେ ଆଳପନା ॥

ଦେଖିଚ କି ବଂଧୁ ଦେଖିଚ କି
ସୁନାର ଚଂପା ଛୁଆଇଁ ଛୁଆଇଁ
ପାଷାଣୀ କନ୍ୟା ଜିଆଇ ଜିଆଇ
କୋଟୀକମ କରା ସେ ଦିନ ମନର
ମଧୁ ମକରନ୍ଦ ଚାଖିଚ କି
ଦେଖିଚ କି ବଂଧୁ ଦେଖିଚ କି ॥

ଛମ ଛମ ବେଳା ଚନ୍ଦ୍ରଭାଗାର
ଅନେକ ତାରାର ରାତି
ଶିଳାପଦ୍ମର ପାଖୁଡ଼େ ପାଖୁଡ଼େ
ଲେଖାହୁଏ ଯେଉଁ ଗୀତି
ଶୁଣିଚ କି ବଂଧୁ-ଶୁଣିଚ କି... ॥

ରୁମ୍ ଝୁମ୍ ଝୁମ୍ ପାଦର ପାହୁଡ଼
ଝୁମି ଝୁମି ଝୁମେ ସାଗର ଲହର
ନିବିଡ଼ ନୀଳିମା ନୀରବତା ସୁରେ
ନିଶି ଝଂକାର ଶୁଣିଚ କି
ଶୁଣିଚ କି ବଂଧୁ ଦେଖିଚ କି... ॥

■

# କୋଣାରକ କନ୍ୟା

ଘନଶ୍ୟାମ ଧଳ

କୋଣାରକ କନ୍ୟା
କଳିଙ୍ଗର କନ୍ୟା
ସମୟ ସାଗର
ପହଁରି ପହଁରି
ଦିଅଇ ବାରତା,
ଅନନ୍ତ ଯୌବନା
ତୁମେ ଆଜି ଧନ୍ୟା ।
ଘୋଷଣା କରୁଛ
ଓଡ଼ିଆ ଜାତିର
ଶିଳ୍ପ ନିପୁଣତା ।

-୨-

ଯୁଗ ଯୁଗ ଧରି
ଅପେକ୍ଷା କରିଛ
ଭେଟିବ ସପନ କୁମାର
ଶୌର୍ଯ୍ୟ ବୀର୍ଯ୍ୟ ଭରା
ଶାଶ୍ୱତ ଅମର
ଦୁର୍ଦ୍ଧର୍ଷ କଳିଙ୍ଗର ବୀର ।

ଯୁଗ ଯୁଗ ଧରି
ଦେଖିଅଛ ତୁମେ
ମହାର୍ଘ୍ୟ ପରମ ବୈଷ୍ଣବ

କରିଲେ ରାଜୁତି
ଉଠିଲା ଏ ଜାତି
ରାଜା ନରସିଂହ ଦେବ
ରାଜା କପିଳେନ୍ଦ୍ର
ବୀର ପୁରୁଷୋତ୍ତମ
ରାଜ୍ୟ ଗଙ୍ଗାରୁ ଗୋଦାବରୀ
ରାଜା ମୁକୁନ୍ଦଦେବ
ପ୍ରାଣବଳି ଦେଲେ,
ଭାଇଯେ ହୋଇଲା ଭଗାରୀ ।
ପୁଣି ବି ଦେଖିଲ
ଖଣ୍ଡ ବିଖଣ୍ଡିତ
ଓଡ଼ିଆ ରାଇଜ
ସୁର ବି ତା'ର ଜଗନ୍ନାଥ ।
ଉତ୍କଳ ଗୌରବ
ଆମ ମଧୁବାବୁ
ରଖିଲେ ତା'ର ମାନ ମହତ ।
-୩-
ତୁଳି ତଳ୍ପ ଶଯ୍ୟା
ଫୁଲର ପାଖୁଡ଼ା
ବ୍ରହ୍ମଚାରିଣୀ ସେ ସାଧିକା
ଶପଥ ନେଇଛି
ଆଗେଇ ଚାଲିବ
ନ ଆସିଲେ କେହି
ଚାଲିବ ସେ ଯେ ଏକା ଏକା
ଆସିଛି ବତାଶ
ଆସିଛି ମରୁଡ଼ି

ଆସିଛି କେତେ ଯେ ଦୁର୍ଦ୍ଦିନ
ସବୁ ସହିଅଛି
ଦୁଃଖ ଭୋଗିଅଛି
ବଜାୟ ରଖିଛି ସମ୍ମାନ

-୪-

ବଡ଼ଦାଣ୍ଡେ ଯେବେ
ଚାହିଁଦିଅ ଥରେ
ଓଡ଼ିଆ ପୁଅର
କାମନା ବାସନା
ଭୋଗର ଲାଳସା
ହୋଇଯାଏ ବିସ୍ମରଣ ।
ଦେଖିଦେଲେ ଥରେ
ରଥର ଉପରେ
କାଳିଆ କମଳ ଆଖି
ପ୍ରଭୁ ପତିତପାବନ ।

ସାରା ଜଗତର
ଭାଇ ଭାଇ ସେଠି
ସରବେ ତ କୋଳାକୋଳି
ଜାତି ଧରମର
ନ ଥାଏ ବିଚାର
ପ୍ରେମ ପୀୟୁଷର ଗୋଳାଗୋଳି ।
କେହି କାହାଠାରୁ
ନୁହଇ ତ ଭିନ୍ନ
ସରବେ ତ ଏଠି ଏକାକାର
କାଳିଆ ମହିମା
ବିରାଜେ ଏଠାରେ
ଏ ଯେ ଗଉରବ ଓଡ଼ିଆ ଜାତିର ।



# କୋଣାର୍କେ

ବାସୁଦେବ ସାହୁ

ବାଲିସ୍ତୂପ ପରେ କଅଁଳ ଚରଣ ଚାଳି
ପ୍ରଣୟୀ ଲଭକି ରୂପସୀ ତରୁଣୀ ସଖି ?
କଠିନ ପଥର ଗାତ୍ରେ ନିରତ ନାଚି
ଲାସ୍ୟମୟୀ ଗୋ ! ବ୍ୟଥାରେ ଯାଅନି ଥକି

ଚାହିଁ ଚାହିଁ ଶତବର୍ଷ ବିତିଲା ଏଥି
ପରାଣ ଦେବତା ନଇଲେତ ପାଶେ ତା'ର
ଉତାଳ ଯୌବନ ଉଚ୍ଛନ୍ନ ବୀଣା ଧରି
ବ୍ୟସ୍ତ ପଥିକେ ମାର କେତେ ଆଖି ଠାର ।

ଯୁଗ ଯୁଗ ଧରି ସମର ସଜ୍ଜା ଚାଲେ
କାଞ୍ଚି କାବେରୀ ମଗଧର ଅଭିଯାନେ
ଜୀବନ ସଂଗ୍ରାମେ ପରାହତ ସେନାଦଳ
ଜାତି ନାମେ ଖାଲି ରୋଦନ କରୁଛ ବନେ ।

କୁଞ୍ଜଲତାର ଅକ୍ଷୟ ସୁଷମା ଏଥି
ଦୁଷ୍କୃତି ଆମ ସରସ ଏ ମାଟି ପାଣି
ନୀରସ କରଇ ଢାଳି କେତେ ବନ ବିଥି ।
ନୃତ୍ୟ ସଙ୍ଗୀତ ମୁଖର ଏ ବେଳାଭୂମି
ପଥର ବିଦାରି ପରାଣର ସୁଅ ଛୁଟେ
ସବୁଜ ପ୍ରାନ୍ତର ବହଳ କୋମଳ ଶେଯୁଁ
କହ କିଏ ନିତି ପ୍ରାଣର ନିର୍ଯ୍ୟାସ ଲୁଟେ ।

କାମ ବିଜ୍ଞାନର ନିଗୂଢ଼ ତଥ୍ୟ ଶିଖି
ଆମେ କି କରିଛୁଁ ବିମୁଗ୍ଧ ରତି ପୂଜା ?
ସୁସ୍ଥ ସବଳ ନିଶ୍ଚିନ୍ତ ଐକ୍ୟ ପ୍ରାଣେ
ମାତି ଉଠେ ଏଥି ପ୍ରଣୟେ ଅସ୍ମି ମଜ୍ଜା ।
ଏଠାରେ ସମ୍ଭୋଗ ସ୍ୱଚ୍ଛ ସଲିଳ ବହେ
ଐକ୍ୟର ତାନେ ସ୍ୱଭାବ ଜୀବନ ରୀତି
ସମାଜର ବୁକେ ଶୃଙ୍ଖଳ କର୍ମ ଧାରା
ନାହିଁ ଆଳସ୍ୟର ବ୍ୟର୍ଥ ବିଷାଦ ଗୀତି ।
ଆତ୍ମ ଚେତନାର ଗମ୍ଭୀର ନାଦ ଶୁଭେ
ଏକାଗ୍ର ମନର ପ୍ରଖର ସୂର୍ଯ୍ୟ ତାପ
ଘେନିଯା ଚପଳା ଉତ୍ସୁକ ଭ୍ରୁରୁ ଭଙ୍ଗୀ
ନିକ୍ଷେପି ସବୁଠି ଲଭିବୁଲୋ ଅନୁତାପ ।



# କୋଣାର୍କରୁ ଫେରି

ସୁରେନ୍ଦ୍ର ପାଣିଗ୍ରାହୀ

ସାରାଦିନ ଝାଉଁବଣର ଶିର୍‌ଶିର୍
ସମୁଦ୍ର ପବନର ଚୁମା
ଘରବାହୁଡ଼ା ବେଳକୁ ପକେଟ୍‌ରେ
ଗୋଟେ କାଗଜ ପୁଡ଼ିଆରେ
କୋଣାର୍କରୁ ଖସି ପଡ଼ିଥିବା
ଏକ ଭଗ୍ନ ମୂର୍ତ୍ତିର କିଛି ଅବଶେଷ
ଆଉ ଚନ୍ଦ୍ରଭାଗାର ଟିପେ କଙ୍କଡ଼ାଚଲା ବାଲି
କାହାକୁ ଦେବି ସାଇତିବାକୁ
ସ୍ତ୍ରୀକୁ ନା ଝିଅକୁ!
ନା ନିଜେ ସାଇତିବି ତାଲାଦେଇ
ଗଡ୍‌ରେଜ୍‌ରେ, ହେଇପାରେ ଏ କେଉଁ
ମଦାଳସା
ନର୍ତ୍ତକୀର ସ୍ତନ, ଯୋନି/କଟି, ନାଭି କି
ନିତମ୍ବର ଭଗ୍ନାଂଶ
କିମ୍ବା ଅବଶେଷ ଓଠ, ଚିବୁକ, ଚିକୁର
କେଶ କି ଆୟତ ଆଖିର...

ପିଲାମାନେ ଉଣା କଲେ ମନ
ଏକା ଏକା ବୁଲୁଛନ୍ତି ବାପା
ସ୍ତ୍ରୀଙ୍କ ଗୁମାନ, କେଜାଣି କାହା ସାଥିରେ ।

ପୁଣି ଫେରିଚି ଖାଲି ହାତରେ
ସାଥିରେ ଆଣିଚି ଯା' କିଛି
ପାଗଳାମି, ଅଖୋଜା, ଅଲୋଡ଼ା ଭାବନା
ସେଦିନ ସାରାଟା ଘର
ଖାଲି ଖାଁ ଖାଁ, ଶୂନ୍ୟତା
ଏକ୍‌ଲାପଣ...

ସେଦିନ ରାତିରେ
ଝର୍କା ଦେଇ ମୋ ଖଟ ଉପରକୁ
ବିଛୁଯାଇଥିବା ଜହ୍ନ ଆଲୁଅରେ
ଗାଧେଇଲି ମୁଁ, କେତେବେଳେ
ଆଖିଲାଗିଚି ଜାଣିନି, ହଠାତ୍
ଦେଖିଲି ଫିକାଜହ୍ନ ଆଲୁଅରେ
ମୋ ତନ୍ଦ୍ରା ଭାଙ୍ଗିଲା ବେଳକୁ,
କୋଣାର୍କ ସୁନ୍ଦରୀର ସୁଗଠିତ
ସ୍ତନ, କଟି, ନାଭିମୂଳ
ମୋ ପାଖରେ ଶୋଇଥିବା
ମୂର୍ତ୍ତିଟିର ଦେହ ଦିହୁଡ଼ିରେ...

କିଛି ଦିନ ଧରି ମୋ ପତ୍ନୀଙ୍କ
ତକିଆ ତଳେ ଥିଲା ସେଇ
କୋଣାର୍କ ମୂର୍ତ୍ତିଟିର ଭଗ୍ନାବଶେଷ
ଆଉ୍ ପ୍ରତିଦିନ ରାତିର ଗଭୀର ପ୍ରହରରେ
ମୋତେ ନିଃଶେଷିତ କରୁଥିଲା
ସେଇ କୋଣାର୍କ ସୁନ୍ଦରୀ, ତା'ର
ନିବିଡ଼ ଆଶ୍ଲେଷ ଓ ଗଭୀର ଚୁମ୍ବନରେ
ଏଥର ବେଶ କିଛି ଦିନ ଧରି
କୋଣାର୍କ ଥିଲା ମୋ ସାଥିରେ...



# କୋଣାର୍କ

ପ୍ରଭାକର ଶତପଥୀ

ବାର ବରଷର
ବାଡ଼ି ବରକୋଳି ମୁଁ,
ବାର ଶହ ନିହାଣ ସାମ୍ନାରେ
ଖେଳେଇ ଥୋଇ ଦେଇଛି
ନିଜକୁ ।

କିଏ କହୁଛି କହୁ :
ବାପରେ,
ଏବେ ଚିହ୍ନିଗଲି ତତେ,
ଆ,
ଆଗ ଟିକେ
ମୋ' କୋଳକୁ ଆ'ତ ।
ଭାବୁଛ କି
ଭୁଶୁଡ଼ି ପଡ଼ିବ କୋଣାର୍କ ?

ପଡୁ ।
କହିଦେଲେ ତ ଅଂତତଃ
ରାଜା
ଏକ ସଂଗେ ପାନ ଖିଲେ ବଢ଼ାଇବା
ଓ ଖଂଡାଟିଏ ଝୁଲାଇ ରଖିବାର

ଘୃଣ୍ୟ କାହାଣୀ
ପୋଡ଼ି ପାଉଁଶ ହୋଇଯିବ
ଇତିହାସରୁ ।

କହିଦେଲେ ତ
ରାତି ପାହିଲା ବେଳକୁ
ରାଜାର କଟା ମୁଣ୍ଡଟା
ଦଧିନଉତି ପରି
ଦିଶିବ ଲୋକଙ୍କୁ ।



# ଧର୍ମପଦର ଆତ୍ମତ୍ୟାଗ

ସୁଜାତା ଚୌଧୁରୀ

ସେଦିନ ଧର୍ମପଦ
ଆତ୍ମତ୍ୟାଗ କଲା
ବିନା ଦ୍ୱିଧାରେ ।
ମୃତ୍ୟୁକୁ ଆଲିଙ୍ଗନ କଲା
ସାଗର ଗର୍ଭରେ ।
ବାରଶହ ବଢ଼େଇଙ୍କୁ
ଦାନକଲା ଜୀବନ
ନିଜେ ନ ଦେଖି ସୂର୍ଯ୍ୟୋଦୟ ।
ଦେଲା ସଭିଙ୍କୁ
ଅନେକ ସୂର୍ଯ୍ୟୋଦୟର ଉପହାର ।
ଆଜି ବି କୋଣାର୍କ
ଗର୍ବିତ ତା' ପାଇଁ
ଭଙ୍ଗା ମନ୍ଦିରର
ପ୍ରତ୍ୟେକ ପଥର
ଗାଇଥାଏ ତା' ଗୀତ ।
ତା' ସ୍ମୃତିରେ
କହିଥାଏ କେଇପଦ ।
ମାତ୍ର କେଉଁ ଏକ କୋଣରୁ
ଶୁଭେ ଏକ ମା'ର ଆର୍ତ୍ତନାଦ

ଯାହାର କୁନିପିଲାଟା
ବାପାଙ୍କୁ ଭେଟିବ କହି
ସେଦିନ ଯାଇଥିଲା ଘରୁ ।
ଆଉ ଫେରିଲା ନାହିଁ
ଡେଇଁପଡ଼ିଲା ସେ
ମୃତ୍ୟୁର ଗର୍ଭକୁ
ମା'ର ସବୁ ସ୍ୱପ୍ନକୁ
ପାଣିରେ ଭସାଇ ।
ପୁଅର ଦୀର୍ଘାୟୁ ପାଇଁ
ପୂଜା ବ୍ରତର
ହେଲା ସମାପ୍ତି ।
ପୂର୍ଣ୍ଣଚ୍ଛେଦ ପଡ଼ିଲା
ମା'ର ସବୁ ସମ୍ଭାବନାରେ
ସବୁ ଭଲ ପାଇବାରେ
ଅକାଳରେ, ଅବେଳରେ ।

ଅକାତ ଦୁଃଖ
ଅସହ୍ୟ ଯନ୍ତ୍ରଣାରେ
ଭାଙ୍ଗିପଡ଼ିଥାଏ ସିଏ
କେତେଦିନ
କେତେ ରାତି
କହି ହେବନି ।
ପୁତ୍ରଶୋକରେ
ତିଳେ ତିଳେ ଦଗ୍ଧ
ଶେଷରେ
ଭାଗ୍ୟ ସହିତ
କରିଲା ସେ ବୁଝାମଣା ।

ପୁଅ ତା'ର
ଇତିହାସ
କରିଛି ସୃଷ୍ଟି
ବିଶ୍ୱ ବିଜୟୀ ହୋଇ ।
ଏମିତି ବିଚାରି
ନିରବ ରହିଲା ସେ
ସବୁଦିନ ପାଇଁ ।
କିନ୍ତୁ କେବେ କେବେ
କେଉଁ ଏକ
ନିରୋଳା ମୁହୂର୍ତ୍ତରେ
ମାତୃତ୍ୱ ତା'ର
କରିଉଠେ ହାହାକାର
ସେଇ କୁନି ଧରମା ପାଇଁ ।
ଠିକ୍ ଏତିକିବେଳେ
କୋଣାର୍କ ମନ୍ଦିରର
ଆଖପାଖରେ
ଖେଳିଯାଏ
ଓଦା ଓଦା
ମାତୃତ୍ୱର ମହକ ।



# ଶିଳ୍ପୀ ଓ ସମ୍ରାଟ

ବାଞ୍ଛାନିଧି ଦାସ

କରୁଛନ୍ତି କାମ ବିନ୍ଧାଣୀ ମନପ୍ରାଣ ମଜାଇ,
ପାଷାଣ-ଗାତ୍ରରେ ତନ୍ମୟେ ଆପଣାକୁ ହଜାଇ ।
ଯାହାର ଯା ଲୋଡ଼ାହୋଇଛି ଖଞ୍ଜା ସମୟ ଜାଣି
ଚାହିଁବା ଆଗରୁ ସମୀପେ ତାହା ଖଞ୍ଜନ୍ତି ଆଣି ।
ଏ ଜାତି ଅତୁଳ ପ୍ରତିଭା ରୂପ ଦିଅନ୍ତି ବସି
ଧୀରେ ଧୀରେ ଅର୍କ-ମନ୍ଦିର ଉଠୁଅଛି ବିକଶି ।
ଦିନେକ ଉତ୍କଳ-ସମ୍ରାଟ କଳା-ରସିକ ନିଜେ ।
ନରସିଂହ ଦେବ ନୀରବେ ଶିଳ୍ପୀମେଳରେ ବିଜେ
ବାର ଶତ କାରିଗରଙ୍କ ନାହିଁ ନିମିଷେ ହେଳା
ଯନ୍ତ୍ର ସମ ଚିଂଶଚାରିଶ କର କରୁଛି ଖେଳା ।
ଗୁଣୁ ଗୁଣୁ ଗୀତ ମୁହଁରେ, ସୁଖେ ନିହାଣ ଚାଳି
ପାଷାଣ - ତନୁରେ ଦିଅନ୍ତି ଶୋଭା-ପୀୟୁଷ ଢାଳି ।
ନିରେଖନ୍ତି ନୃପ ତନ୍ମୟେ ଶିଳ୍ପୀ-କଳାକୌଶଳ
କର୍ମନିଷ୍ଠା ସଙ୍ଗେ ଓଡ଼ିଆ- ପୁଅ ମନର ବଳ ।
ଦଳେ ଦଳେ ଏକ ମନରେ ବସି କରନ୍ତି ଚିତ୍ର
ଖୁସିଗପ ଚାଲେ ମଝିରେ, ଚିତ୍ରେ ନିବଦ୍ଧ ନେତ୍ର ।
ବୃଦ୍ଧ ମହାରଣା ଜଣେକ ଡାକେ ଏକାଳେ, "ଭାଇ !
ପାନଖିଲେ ଥିଲେ କା'ପାଶେ ମୋତେ ଦିଅ ବଢ଼ାଇ,
ସରିଗଲା ପାନ ମୋ କଳୁଁ, ଆଉ ନ ଚଳେ ହାତ
ନ ସରିଲେ ଆଜି ଏ ମୂର୍ତ୍ତି, ନ ରୁଚିବଟି ଭାତ ।

ରଚିଲି ଭ୍ରୂଲତା, ଦେଖ ତ        କାମ-କମାଣ ସରି
ନୀଳୋତ୍ପଳ ନେତ୍ରଯୁଗଳେ        ଭାବ ରହିଛି ଭରି ।
ସୁଚାରୁ ଚିକୁର ନିହାଣ-        ମୁନେ କଲି ବିନ୍ୟାସ
ବିମ୍ବୋଷ୍ଠେ ଏଯାଏଁ ନୋହିଲା        ମୃଦୁହାସ ବିକାଶ ।
ଡମ୍ବରୁ-ମଝାର ଭଙ୍ଗିମ        ଠାଣି ଆହା କେମନ୍ତ
ମୃଦୁମନ୍ଦ ହାସ ନୋହିଲେ        ସବୁ ହେବ ବିଅର୍ଥ ।
ଭୁଜବଲ୍ଲିଯୁଗ ଛନ୍ଦିଲି        ସରୁ ନିହାଣ ଚାଳି,
କରପଲ୍ଲବରେ ଅଶୋକ-        କଳୀ ଅଙ୍ଗୁଳିମାଳି ।
କୋଟିକମଝରା ମୁଦ୍ରିକା        ବାଜୁବନ୍ଧ ତାଟଙ୍କ
କଟୀରେ କିଙ୍କିଣୀ, ଶିଞ୍ଜିନୀ        ପଦେ ଚାରୁ ଝଟକ ।
ବର୍ତ୍ତୁଳ ଉରଜେ କାଞ୍ଚୁଲା        ହାର ପଦକ-ଝୁଲା
ତା ବେଶବିନ୍ୟାସ ବିରଚୁ        ଚାରି ଦିନ ବିତିଲା ।
ଆଜି ତା ଅଧରେ ଫୁଟାଇ        ଝରା ପୀୟୁଷ ହାସ
ତେବେ ଯାଇ ଅନ୍ନ ଭୁଞ୍ଜିବି        ମୋର ଏ ଅଭିଳାଷ ।
କା'ପାଖେ ଅଛି ତ ଦିଅରେ        ପାନଖିଲେ ବଢ଼ାଇ
ପାନଖିଲେ ବିନା ନିହାଣ        ମୋର ଚଳଇ ନାହିଁ ।"
କାବ୍ୟେଛଟା ଦେଇ ବଚନ        ବୃଦ୍ଧ କହୁଛି ରଙ୍ଗେ
ବକଧ୍ୟାନ ସମ ନୟନ        ଅଛି ପ୍ରତିମା-ଅଙ୍ଗେ ।
ଚାଲିଛି ହାତର ନିହାଣ        ଠୁକୁ ଠୁକୁ ହାତୁଡ଼ି
ହସି ଉଠୁଅଛି ତନ୍ମୟେ        ଭାବ-ସାଗରେ ବୁଡ଼ି ।
ସୁବାସ ତାମ୍ବୁଳ ରତନ-        ବଟା ସଧୀରେ ଫେଇ
ଦେଖାଇଲେ କିଏ ଏକାଳେ        ବୃଦ୍ଧ ସମୀପେ ନେଇ ।
ତୃପ୍ତିଭରା ହସ ହସିଣ        ବୃଦ୍ଧ ଖିଲେକ ପାନ
ନେଇ କଲେ ଜାକୁ ସୁବାସେ        ଭାଜିଗଲା ଧିଆନ ।
"ଆହା କି ମହକ ଏ ଖିଲେ"        କହି ଦିଅନ୍ତେ ଚାହିଁ
ସମ୍ମୁଖରେ ସ୍ୱୟଂ ଠାକୁର-        ଜାଜା ଉତ୍କଳ-ସାଇଁ ।

ଯା' ସେବାକୁ ଧନ୍ୟ ମଣନ୍ତି
ସାରା ଭାରତ ଭୂପେ
ସେ ଖଞ୍ଜନ୍ତି ଆଣି ତାମ୍ବୁଳ
ବୃଦ୍ଧଶିଳ୍ପୀ ସମୀପେ ।
"କି କଲି କି କଲି କ୍ଷମନ୍ତୁ
ପ୍ରଭୋ ! ମୋ ଅପରାଧ
କୃତାଞ୍ଜଳିପୁଟେ ରଟିଲା
ବୃଦ୍ଧ ଆର୍ତ୍ତନିନାଦ ।
ଧରିବାକୁ ନୃପ-ଚରଣ ଲୋଟି
ପଡ଼ନ୍ତେ ତଳେ
ରାଜା ନରସିଂହ ସସ୍ନେହେ
ଭିଡ଼ିଧରିଲେ କୋଳେ ।
ପ୍ରବୋଧି ଭାଷିଲେ, "ହେ ଶିଳ୍ପି !
ଦ୍ୱିଧା ନ ଆଣ ମନେ
ଲଭି ତବ ସେବା-ସୌଭାଗ୍ୟ,
ନିଜେ ଧନ୍ୟ ମୁଁ ମଣେ ।
ହେ ସ୍ରଷ୍ଟା ସୌନ୍ଦର୍ଯ୍ୟ-ସାଧକ
ତୁମ ପ୍ରତିଭା-ପଦେ
ରାଜରାଜେଶ୍ୱର ଉନ୍ନତ
ଶିର ବିନମ୍ରେ ବନ୍ଦେ ।"
ଶିଳ୍ପୀ - ସମ୍ରାଟର ଅପୂର୍ବ
ଏଇ ମଧୁ ମିଳନ
ଅପଲକେ ଚାହେଁ ଜନତା,
ମନ୍ତ୍ରମୁଗ୍ଧ ନୟନ ।
ଜୟ କଳରବ ଅୟୁତ-
କଣ୍ଠୁ ପଡ଼େ ଉଛୁଳି,
"ଜୟ ନରସିଂହ ବୀରେନ୍ଦ୍ର
ରାଜ-ରାଜ-ମଉଳି ।"



# କୋଣାର୍କ

ଅମେୟ ବିକ୍ରମାନନ୍ଦନ ଭୂୟାଁ

ଅଦୂରରେ ଝାଉଁବଣର ଗୀତ
ପଥରର ନଟୀ ଶୁଣୁଥାଏ
ଉଦୟ ହେବା ପୂର୍ବରୁ ଲାଲ୍ ସୂର୍ଯ୍ୟ
ଚନ୍ଦ୍ରଭାଗାରେ ଅସ୍ତ ଯାଉଥାଏ !

କୋଣାର୍କର ଶିଖରୀରୁ
ପ୍ରତି ନିଶାର୍ଦ୍ଧରେ
ଧର୍ମପଦଟିଏ ଡେଇଁ ପଡୁଥାଏ ।

କଳାର କିମ୍ବଦନ୍ତୀଟିଏ ପଥର
ମୁଠା ମୁଠା ଧୂଳିବାଲି ହୋଇଯିବା ଆଶଙ୍କାରେ
କିଏ ଧୂଳିବାଲିରେ ଆକଣ୍ଠ ତାକୁ
ପୋତି ଚାଲିଥାଏ ।

ବିଦେଶିନୀଟିଏ ହାତମାରି
କଳାର କିମ୍ବଦନ୍ତୀଟିରୁ କ'ଣ ପଢୁଥାଏ !

ଜୀବନକୁ ତିଳତିଳ ଭୋଗ କରିବାରେ
ମସ୍‌ଗୁଲ୍ ମଣିଷଗୁଡ଼େ
ଏ ମୁମୂର୍ଷୁ କଳା କିମ୍ବଦନ୍ତୀଟିକୁ
କେମିତି ଭୋଗ କରୁଥାଏ ?

ଘା'ଭଣଭଣ ପଲେ ବିକଳାଙ୍ଗ ମଣିଷ
ଯୋଡ଼ିଏ ବରା କପେ ଚା'ରେ ରାଜି ହେଉଥିବା ପରୀ
ପଚାଶ ପଇସାରେ ହଲେ ଜୋତା ପଲିସ୍ କରୁଥିବା
କେଇଟା ମେଞ୍ଚଡ଼ ଟୋକା
କଳା ନାଁରେ ପଥଭ୍ରଷ୍ଟ କେତୋଟି ଯୁବକ ଯୁବତୀଙ୍କ
ଚିତ୍ରକଳାରେ ଏବର କୋଣାର୍କ ଗଢ଼ା ହେଉଥାଏ !

ଅଥଚ ବିଲ୍‌କୁଲ୍ ନ ଥିବା ଲାଙ୍ଗୁଡ଼ାନରସିଂହ ଦେବଙ୍କ
କୋଣାର୍କ ଦେଖା ଚାଲିଥାଏ ।



# ଧର୍ମପଦର ହତ୍ୟାକାରୀ

**ତପନ ପଟ୍ଟନାୟକ**

ଆମେ ଏଠି ବଞ୍ଚିଅଛୁ,
ଏହାଠାରୁ ବଡ଼ଦଣ୍ଡ କିବା ଥାଇପାରେ ।
ଧର୍ମପଦ ହତ୍ୟାକାରୀ ଆମେ,
ଆମେ ଏ ଜାତି କଳଙ୍କ
ଜୀଇଁଅଛୁ ମରି ମରି ପ୍ରତି ମୁହୂର୍ତ୍ତରେ ।
ସୁଖର ସମ୍ପର୍କ ନାହିଁ
ଯେ ଜୀବନ ସାଥେ,
ହସ କେବେ ଅଙ୍କୁରିତ ହୁଏନାହିଁ
ଯେ ପ୍ରାଣୀ ଓଠରୁ,
ତା'ପକ୍ଷେ ମୁଣ୍ଡକାଟ
ଶହେଗୁଣ ଭଲ ।
ଆମେ ଏଠି ଭୋଗୁଅଛୁ କର୍ମଫଳ
ସଢ଼ି ସଢ଼ି ଅଶାନ୍ତିର ଦାବାନଳେ,
ତଥାପି ପାରୁନା ବୁଝି
ଗାତ ଖୋଳୁ ଆପଣା ପଥରେ ।
ଜୀବନର କୋଣାର୍କ ଆମ
ଅଧାଗଢ଼ା ରହିଥିବ ପୁରୁଷ ପୁରୁଷ,
ଧର୍ମପଦର ଦଣ୍ଡାଦେଶେ
ଛଟପଟ ହେଉଥିବୁ ତତଲା ବାଲିରେ ।

ଅବିଶ୍ୱାସର ଇଲାକାରେ ଘର ଆମ
ସନ୍ଦେହଟା ଚିରସାଥୀ,
କାହାକୁ ଭରସା ନାହିଁ,
ସଭିଏଁ ଶୃଗାଳ ଏଠି ସଭିଏଁ ତ ଶବ ।
ବାର ବାର ନିଜହାତେ ମୁଣ୍ଡକାଟକରୁ,
ପାରୁନାହୁଁ ଥରଟିଏ ମରି ।



# କୋଣାର୍କ

ପଞ୍ଚାନନ ଦାଶ

ଏହି ଭଙ୍ଗା ମୁଖଶାଳା ଦିଶଇ ।
ନରସିଂହଦେବ ଗଢ଼ିଥିଲେ ଯା'କୁ
ଭାଙ୍ଗିଥିଲା କଳା କଂସେଇ ।
ଚନ୍ଦ୍ରଭାଗା କୂଳେ ହେଲା ଛାଉଣୀ
ସମୁଦ୍ରର ବେଳା ଅକାତ ପାଣି
ଶିବେଇ ସାନ୍ତରା ବୁଝିଲେ କାମ
ରାଜାଙ୍କର ହେଲା କଡ଼ା ହୁକୁମ
ରାଇଜଟା ସାରା ଯେତେଥିଲେ ଯହିଁ
(ଆସି) ଲାଗିଲେ ବାରଶ ବଢ଼େଇ ।୧ ।
କାମହେଲା ତହିଁ ବାରବରଷ
ତେବେ ହେଲେ ତାହା ନ ହେଲା ଶେଷ
ରାଜା ଦେଲେ ବେଗେ କଡ଼ା ନଜର
ବୋଇଲେ ଠକୁଛରେ କାରିଗର
କାମ ନ ସରିଲେ କଟା ହେବ ମୁଣ୍ଡ
ନାଗରାରେ ଦେଲେ ଜଣେଇ ।୨ ।
ପଡ଼ିଲା ଚହଳ କାରିଗରରେ
ଦେଉଳ ମୁଣ୍ଡିକୁ ମାରିବେ ଖରେ
ଯେତେ ଚେଷ୍ଟା କଲେ ନ ହୁଏ ଶେଷ

କାରିଗରଙ୍କ ମନ ବିରସ
ବିଶୁ ମହାରଣା ପୁଅ ଯେ ଧରମା
ଆସି ଚୂଳ ଦେଲା ବସେଇ ।୩ ।
ବଢ଼େଇ କୂଳରେ ହେଲା ଭାଳେଣି
ରାଜା ଏକଥାକୁ ଶୁଣିଲେ ପୁଣି
ବାରଶ ଭାଇରେ କାଟିବେ ମୁଣ୍ଡ
ଶୁଣି ସବୁ ବିଶୁ ନ ଖୋଲେ ତୁଣ୍ଡ
ବାରଶ ଭାଇରେ ଦାୟୀ ସେ ଧରମା
(ଜଳେ) ଜୀବନକୁ ଦେଲା ଭସେଇ ।୪ ।
ଦିଶେ ଖାଲି ବାଲି ପଡ଼ିଆ ଆଜି
ବଡ଼ ଦେଉଳଟି ଯାଇଛି ଭାଜି
ବଡ଼ ଦେଉଳଟି ଯାଇଛି ଭାଜି
ମୁଖଶାଳା ନାଟ ମନ୍ଦିର ଦୁଇ
କଳା କଉଶଳେ ତୋରା ଦିଶଇ
ଉତ୍କଳ ଗୌରବ ଦିଏ ପରିଚୟ
(ଆଜି) ଝାଉଁବଣେ ଯାହା ଶୋଭଇ ।୫ ।



# କୋଣାର୍କର୍ ଗାଥା

ଶାନ୍ତିଲତା ମହାନ୍ତି

ରୂପ ମାଧୁରୀର ପୂର୍ଣ୍ଣତା ପ୍ରାପ୍ତିର
ତୁ ଏକ ନିଛକ ସୃଷ୍ଟିର ସମ୍ଭାର
ତୋର ଚିତ୍ରକଳା ଛୁଞ୍ଚିର ମୁନରେ
ଖୋଦିତ ହୋଇଛି ପ୍ରସ୍ତର ଶିଳାରେ
ଇତିହାସ କହେ ତୋ ଅତୀତ ଗାଥା
ବାରଶ ବଢ଼େଇ ଅନ୍ତରାତ୍ମା କଥା,
ଆଜି ବି ରହିଛି ସାକ୍ଷୀ ଧର୍ମପଦ
ବଢ଼େଇ କୁଳର ବଂଚିବା ନିମିତ୍ତ,
ମୁଣ୍ଡି, ମାରିଦେଇ ନିସ୍ତବ୍‌ଧ ରାତିରେ
ଉତ୍ସର୍ଗ କରିଛି ଜୀବନ-ପ୍ରଦୀପ ।
ମନେ ପଡ଼ିଯାଏ ସେ ଅତୀତ କଥା
ପ୍ରତ୍ୟେକ ଶିଳାରେ ଶିଳାରେ ଖୋଦିତ
ବିଷ୍ଣୁ ମହାରଣା ଓ ଧର୍ମପଦ ବ୍ୟଥା
ରହିଗଲା ନାଁ ସପ୍ତାଶ୍ଚର୍ଯ୍ୟ ମଧ୍ୟେ
ତୋର ଲୋ କୋଣାର୍କ ।
ଓଡ଼ିଶା ମାଟିର ତୁ ଏକ ବିଭବ
ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ତୋର ସେ ସ୍ୱରୂପ ।
ଆଜି ହୋଇଅଛୁ ତୁ ପରା ଆହତ
ଭଗ୍ନଶିଳା ପ୍ରାୟେ ତୋ ରୂପ ଖଣ୍ଡିତ
ମର୍ମାହତ କରେ ତୋର ଭଗ୍ନସ୍ତୂପ
ଚିନ୍ତାରେ ଚେତାଏ ମନ ଅବିରତ ।
ତୋ କଳା ଭାସ୍କର୍ଯ୍ୟ ଅଟେ ଅଦ୍ୱିତୀୟ
ଟାଣିନିଏ ସବୁ ଦର୍ଶକ ହୃଦୟ
ପ୍ରତିଛବି ତୋର ଯେତେ ଦେଖୁଥିଲେ
ସର୍ବଦା ଦିଶଇ ନୂଆ ନୂଆ ପ୍ରାୟ ।



# ଶୀଳାସ୍ୱପ୍ନ

ଗୌରୀ ଶତପଥୀ

ହେ ଶିଳ୍ପୀ ତୁମ ପାଶେ ମନତ ଦେଇଛି ବିକି
ତୁମ ନିହାଣର ପରଶ ପାଇ ମୁଁ
ସାଜିଛି ଆଜି ନର୍ତ୍ତକୀ
ହେ ଶିଳ୍ପୀ... (୦)
ନିସ୍ତରଙ୍ଗ ଏଇ ନୀରବ ନୀଡ଼ରେ
ଯେବେ ତୁମେ ଆସ ହସି
ପାଦର ନୂପୁର ରୁଣୁ ଝୁଣୁ ହୁଏ
ଅଧରେ ଅଧର ମିଶି
ତୁମରି ବାହୁରେ ନିଜକୁ ହଜାଇ
ହୋଇଛି ମୁଁ ଚିରସୁଖୀ
ହେ ଶିଳ୍ପୀ... (୧)
ରାତିର ଶେଷରେ ସପନ ମୋ ସରେ
ଆଖିରେ ଲୁହର ନଈ
ସୂରୁଯ ଆଲୋକ ପାଷାଣୀ ମୁଁ ସାଜେ
ମନ କଥା ମନେ ନେଇ
ତୁମ ପ୍ରତୀକ୍ଷାରେ ଚାହିଁ ରହେ ପୁଣି
ଆଖିରେ ସପନ ରଖି
ହେ ଶିଳ୍ପୀ...(୨)



(ସଂପାଦିତ ଅଂଶ)

# କୋଣାର୍କ

ଜୟକୃଷ୍ଣ ତ୍ରିପାଠୀ

ସିବେଇ ସାନ୍ତରା ସିବେଇ ସାନ୍ତରା
ଇତିହାସ ତୁମ ଆଲେଖ୍ୟ ସାଜି
ପ୍ରାଚୀ ଜଳଧାରେ କେତେ ଖୋଜୁଥିବ
ଗତ ଅତୀତର ଗୌରବ ରାଜି ।
ବାରଶ ବଢ଼େଇ ମଉଡ଼ମଣି ସେ
ରାଜା ନରସିଂହ ସ୍ୱପ୍ନ ବିଚାର
ସାକାର ସାଧନ ମନ୍ତ୍ରେ ଅବିରତ
ନିହଣର ମୁନେ ହେଲା ସାକାର ।
କୋଣାରକେ ଅର୍କ ମନ୍ଦିର ନିର୍ମାଣେ
ଅବିରତେ କାର୍ଯ୍ୟେ ଥିଲେ ମଗନ
ପ୍ରାଚୀ ସ୍ୱଚ୍ଛ ନୀର ପ୍ରବାହର ବେଗ
ଦେଲାକି ବିଷାଦ ହୃଦେ ଦାରୁଣ ।
ମସ୍ତିସ୍କ ପେଟିକା ଉନ୍ମୋଚିତ କଲା
ବୃଦ୍ଧା ଏକ ଅନାବିଳ ହୃଦୟେ
କହିଲା ଅଳପ ହସି କାରିଗର !
କି ମତେ ଗରମ ଖିରି ଖାଅ ହେ ?
ସିବେଇ ସାନ୍ତରା ସଦୃଶ ହେ ବୀର
ପ୍ରାଚୀ ଗର୍ଭେ ଫିଙ୍ଗି ପ୍ରସ୍ତର ଖଣ୍ଡ
କିପରି ଭାବହେ ସ୍ରୋତସ୍ୱିନୀ ସ୍ରୋତ
ରଖିବ ପ୍ରସ୍ତର ବେଗ ପ୍ରଚଣ୍ଡ ।

ପାର୍ଶ୍ୱରୁ ଗଠନ ଆରମ୍ଭିଲେ ଦେବ
ଜଳ ବେଗ ହେବ ବିଲୋପ ମାତ୍ର
ପାର୍ଶ୍ୱରୁ ଖାଇଲେ ଗରମ ଖିରିକୁ
ହାତ ପୋଡ଼ିବାଟା ସାର ହେ ମିତ୍ର !
ଏହି ମର୍ମବାଣୀ ସିବେଇରେ ପୁଣି
ଦେଲା ଅଭିବନ ଉନ୍ମାଦନା
ବାରଶ ବଢ଼େଇ କୋଣାରକ ଗଢ଼ି
ଦେଇଗଲେ ବିଶ୍ୱେ ନବ ଚେତନା ।
ବିଶୁ ମହାରଣା ନାମେ କାରିଗରେ
ପଡ଼ିଥିଲା ମହା ସଂକଟ ଘୋର
କିପରି ମୁଦିବ ମନ୍ଦିରର ଚୂଡ଼ା
ବିଷାଦେ ନ ରୁଚେ ଅନ୍ନ ବା ନୀର ।
ଧର୍ମପଦ ନାମେ ବିଶୁର ସନ୍ତାନ
ଖୋଜି ପହଞ୍ଚିଲା ଜନକ ପାଶ
ପୁଚ୍ଛିଲା କାରଣ କିମ୍ପାଇ ହେ ତାତ !
ଅବସନ୍ନ ମନେ ବିତାଅ ରାତ୍ର ।
ବିଶୁର ଆଦେଶେ ଚୂଡ଼ା ମୁଦା ହେଲା
ବାରଶ ବଢ଼େଇ ରକ୍ଷା ମୁଁ ଚାହେ
ପୁଚ୍ଛିଲା ପିତାରେ ବାରଶ ମଥାରେ
ଏକ ଧର୍ମପଦ ଦାୟାଦ ନୁହେଁ ?
କହି ଏହିପରି ଗାଇ ହରି ହରି
ଡେଇଁଲା ସେ ମନ୍ଦିର ଚୂଡ଼ାରୁ
ନରହିଲା ତା'ର ଚିହ୍ନ କି ଆକାର
ମହାସିନ୍ଧୁ କରାଳ କବଳୁ ।
ସର୍ବ ଶିଳ୍ପୀଗଣ ଏକ ସ୍ୱରେ ପୁଣି
ଆଶିଷ ଦିଅନ୍ତି ବାଳକରେ
ଇତିହାସ ଗାଏ ତା' ସୁନାମ ଚିର-
ଲିଖିତ ସ୍ୱର୍ଣ୍ଣାଭ ଅକ୍ଷରରେ ।

## ୨୩୦ କବିତା  କୋଣାର୍କ

ରହିଛି କୋଣାର୍କ ଜୀବନ୍ତ ପ୍ରତିମା
ପ୍ରାଚୀ ଗଗନର ଚିରମଧୁରିମା
ଓଡ଼ିଆ ଜାତିର ପୂର୍ବ ଗୌରବ
ଚେତାଇ ଦିଅଇ ପୂର୍ବ ଗରିମା
ଆମେ ସେଇ ଜାତି ଯିଏ ଗଢ଼ିପାରେ
ଶତ କୋଣାରକ ସାଗର ବକ୍ଷେ
ଶତ ବୋଇତରେ ମଶାଲ ଜଳାଇ
ଯାଭା ସୁମାତ୍ରାରେ ବିଶ୍ୱ ଗବାକ୍ଷେ ।
ଅଛି କୋଣାରକ ମୂକସାକ୍ଷୀ ସିନା
ଆଜି ବି ଦିଅଇ ନବ ଚେତନା
ଶିଳ୍ପୀର ନିହାଣ ଆଜି ବି ଅମର
ବିଶ୍ୱ ଦରବାରେ ଦିଏ ପ୍ରେରଣା ।
ଯେହ୍ନେ ତାମରସ ଦୀଧିତି ପୀରତି
ଆକାଶ ପୃଥିବୀ ପାଏ ଜୀବନ
କୋଣାରକ ସହ୍ନେ ବଂଧା ଏ ପରାଣ
ଓଡ଼ିଆ ଜାତିର ଗର୍ବ ନିଶାଣ ।



# କୋଣାର୍କରେ ସୂର୍ଯ୍ୟୋଦୟ

ଶାନ୍ତି ଦାସ

ସ୍ପୁଟନିକ ମହାକାଶ ଯାତ୍ରା
ଆଟମବମ୍ ଭିଏଟନାମ ଯୁଦ୍ଧ
ଆକାଶର ଉଡ଼ନ୍ତା ଥାଳିଆ
ବିଜ୍ଞାନର ଯେତେ ଯେତେ ଉଦ୍ଭାବନ
ସବୁ ପରେ ଆତ୍ମା ଖୋଜେ
ବିରାଟ ପ୍ରଶସ୍ତି
କୋଳାହଳ ଶୂନ୍ୟ ଅଖଣ୍ଡ ବିସ୍ତୃତି ।।

ଜନହୀନ ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର
ଅସହ୍ୟ ସ୍ୱର୍ଗୀୟ ତୃପ୍ତି
ବିରାଜିତ ଏଥି
ଏଇ ସେ ସମୁଦ୍ର, ଗର୍ଜି ଗର୍ଜି ମଥାପିଟେ
ଗାଏ ଏ ଜାତିର ଦୁର୍ଦ୍ଦଶାର ସ୍ମୃତି ।।

ନୀରବ ନିଶ୍ଚଳ ରାତ୍ରି ପ୍ରାନ୍ତେ
ନିର୍ଜନ ଶୀତଳ ଆକାଶ ପଥେ
ଉଜ୍ଜ୍ୱଳ ଗୋଲାକାର ବସ୍ତୁ
ଶାନ୍ତ, ସୁଶୀଳ, ଧୀର ନମ୍ର ପଦେ
କରେ ଆଗମନ,
ବିଦାରିଣ ସମୁଦ୍ରର ଛାତି ।।

ଯାହାର ପ୍ରଚଣ୍ଡ ତାପେ ଥରହରା ଧରା
ଅସ୍ତବ୍ୟସ୍ତ ଦିଗହରା ପଥିକ
ଖୋଜିବୁଲେ ଉତ୍ସକ ସାହାରା;
ସେ ଆସୁଛି ଏଇ ଦିଗ୍‌ପ୍ରାନ୍ତେ
ଅସହାୟ ଶିଶୁ
ଟେଲିସ୍କୋପ କଣା ପରି
ସେ ଗୋଲାକାର ବକ୍ଷେ
ନାଚେ ଅବା ସ୍ୱର୍ଗର ଅପସରା
ଅବା ଦିଶେ ଏ ଦେଶର ପ୍ରତିଛବି
ସବୁ ପୁଣି ଆବୁଡ଼ାଖାବୁଡ଼ା
ଏ ପୃଥିବୀରେ ଛାତି ॥

ହେ ସାଥି ପଥିକ ମୋର !
ମାଙ୍ଗଳିକ ଗାନେ ବନ୍ଦ ତାରେ
ଆସେ ଯିଏ ଏ ନୂତନ ଛନ୍ଦେ
ଅର୍ଚ୍ଚନା ସହିତ ଧରି ମଙ୍ଗଳ ବାରତା
ମଧୁ ସାଥେ ରାଗିଣୀ,
କି ଦେଇ ବନ୍ଦିବି ତାରେ
ଏଇ ସବୁ କୁହେଳିକା ସ୍ତୁତି ॥

ନମୋ ନମୋ ଦିବାକର
ନିଅ ଏଇ ବାଲୁକାର
ଶିଶିର ସିଞ୍ଚିତ ପୁଷ୍ପାଞ୍ଜଳି
ଏହି ପଥପ୍ରାନ୍ତେ
ମୁଁ ନିଃସ୍ୱ ଅସହାୟ ଯାତ୍ରୀ ॥

ସେ ଦିନ ବି ଉଠିଥିଲେ ଏଇ ଦୀନନାଥ
ଯେଉଁଦିନ ଟଳିଗଲା
ଏ ଦେଶର ବିରାଟ ଶିକ୍ଷିତ

ପାରିଲେନି ଅଟକାଇ ତାରେ
ଦ୍ରୋଣାଚାର୍ଯ୍ୟ ପରି ମାଗିନେଲା
ସେ ବୁଢ଼ା ଆଙ୍ଗୁଠି
ଭାଙ୍ଗିଗଲା ଏ ଜାତିର ଯଷ୍ଟି ।।
ଏଇଠି ପଡ଼ିଛି ଢଳି ପ୍ରସ୍ତର ମାନସୀ
ପଡ଼ିଛନ୍ତି ଶୋଇ କେତେ ରୂପସୀ ଷୋଡ଼ସୀ
ଧରମାର ଶିଶୁଦେହ
ଲୀନ ହୋଇଛି ଏହି
ସମୁଦ୍ର ବକ୍ଷରେ, ନାହିଁ ତାର ଅସ୍ତି ।।
ତଥାପି ସେ ହୋଇନାହିଁ କ୍ଷୟ
ଏ ଜାତିର ଅକଳନ ଶିଶୁ
ଉଠିଲେ ଜୀବନ୍ତ ହୋଇ
ଏ ମାଟିର ଅଣୁ ପରମାଣୁ
ହୋଇଲା ସତେଜ,
ତା ଦେହର ରକ୍ତ କଣିକାରେ, ଥରି ଥରି
ଗାଇଲା ସେ ଗୀତ ।।
ସେଇ ବାଲିକଣା, ସମୁଦ୍ରର ଜଳବିନ୍ଦୁ
ସବୁଆଜି କରେ ପ୍ରତିଧ୍ୱନି
ନ ପାଇ ମୁଁ ଖୋଜେ ଚାରିଆଡ଼େ
ଭାବେ ଖାଲି ମୃଗତୃଷ୍ଣ
(କିନ୍ତୁ ହଠାତ୍)
ଏ ମନ୍ଦିର କଥା କହେ
ସାକ୍ଷୀ ଦିଏ ଏ ସୂର୍ଯ୍ୟ ଦେବତା
"ହେ ଉଦ୍‌ଭ୍ରାନ୍ତ ପଥିକ
ଯାଅ ନାହିଁ ଫେରି, ଭୁଲନାହିଁ
ଯାହା ସେ ଯାଇଛି ରଖି

ଏ ଅପରିବର୍ତ୍ତନୀୟ ଅର୍ଘ୍ୟ
ତାହା ପାଇଁ କରନାହିଁ ଶୋକ
ସେ ତ ନୁହେଁ ଅତୀତ ପ୍ରେମିକ
ଯାହା ପାଇଁ ଗର୍ବକରେ ଜାତି
ଯାହା ସେ ଯାଇଛି ଦେଇ
ସେ ସବୁ ତ ଏ ଜାତିର ଦାନ
ଏ ଦେଶ ଜନନୀ
ନିଃଶେଷ କରୁଣା, ଅକଥିତ ପ୍ରେରଣା ଦେଇ
କରିଛି ତାରେ ଆଦର୍ଶ ବିଦ୍ୱାନ;
ଫେରି ଚାହଁ ବାରେ
ସେ ଉଠିବ ଚେଇଁ
ଧରି ଶତ ଅର୍ଘ୍ୟ
ନିର୍ଭୁଲ ମମତା ମଧ୍ୟେ
ଦେଶେ ଭରିବ ଆଲୋକ
ଉଜ୍ଜ୍ୱଳ ରହିବ ତହିଁ
ଏ ଜାତିର କୀର୍ତ୍ତି ।।



# ଶିଳାସ୍ୱପ୍ନ

ସ୍ମିତା ହୋତା

ଝାଂଜି ଡହକା ବାଲିରେ
ଧୀରେ ଧୀରେ ପୋତି ହୋଇ ପଡ଼ିବାବେଳେ
କପାଳରେ କ'ଣ ଥାଏ
କୋଣାର୍କିନୀର... ?
ଜହ୍ନରାତି କିଅବା
ବଇଶାଖୀ ପ୍ରହର ?

ତା'ରି ଛାଞ୍ଚରେ
କେତେ ଯେ' ମୂରତି
ହାଟ ବଜାରେ...
ସାତ ସାଗର ପାରି ବାସର ଘରେ
ଉଜ୍ଜ୍ୱଳି ଉଠେ ସାତଦୀପର ଆଲୁଅରେ ।

ନାୟିକା ସେ' ମହାକାଳର,
ଅପେକ୍ଷିତା... ଉପେକ୍ଷିତା କାଳ କାଳ
ସ୍ୱପ୍ନିଳ ଆଖିରେ ତା' ବାଲିର ପରଳ !
ବିମୁଗ୍ଧ ହାସ୍ୟରେ ଲାସ୍ୟରେ
ଖରାକୁ... ଛାଇକୁ ବରଂ
ଅଧିକରୁ ଅଧିକ ପ୍ରଲମ୍ବିତ
ପଣତ ତା'ର -

ଢଳି ଢଳି ଜହ୍ନ
ଉଙ୍କିମାରେ ତା' ଆଖି ଭିତରକୁ,
କରେ କ'ଣ ଚକ୍ ଚକ୍,
ବାଲିକଣା ଅବା ଲୁହ ଥପ୍ ଥପ୍ ?



# ରାମଚଣ୍ଡୀ

ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ

ଫଗୁଣର ଶେଷ ଚନ୍ଦ୍ର ପ୍ରାଚୀ ନଭେ ଉଠି,
ହୋରି ଖେଳେ ବେଳାଭୂମି ସିକତା ପ୍ରାଚୀରେ ।
ସିନ୍ଦୂରିତ ସାଗରର ତରଙ୍ଗ ଯେଉଁଠି,
ଫୁଲି ଉଠି ମଥା ପିଟେ ସିନ୍ଧୁ ବେଳାପରେ ।୧ ।
କାହିଁ ପୁଷ୍ପ ବିମଣ୍ଡିତ ପାଦପ ଶିଖରେ,
ମଧୁଗନ୍ଧେ ମଧୁକର ଉଡୁଥାନ୍ତି ଭୋଳେ ।
ତର ତର ବସିବାକୁ ପୁଷ୍ପ ସ୍ତବକରେ,
ପାରୁ ନାହାନ୍ତି କି ବସି ? ସମୀରେ ଯା ଦୋଳେ ।୨ ।

ବସନ୍ତେ ବାସନ୍ତି ରୂପ ପ୍ରକୃତି ଧରିଛି,
ଛନ୍ଦ ଲୟେ ଗୀତ ଗାଇ ସମୀର ବହୁଛି ।
ଦୋଳାୟିତ ସୁରଭିତ ବଣ ତରୁରାଜି,
ସମୀର ସଙ୍ଗୀତ ତାଳେ ନୃତ୍ୟ କି କରୁଛି ।୩ ।

ପୁଷ୍ପିତ କାନନ ଶୋଭା ମଧୁପ ଗୁଞ୍ଜନ,
କୁଞ୍ଜ ଗୁଞ୍ଜରିତ କୋକିଳର କୁହୁ ସ୍ୱରେ ।
ଭାସିଆସେ କାହିଁ ଦୂରୁ ବଇଁଶୀର ସ୍ୱନ,
ଫେରନ୍ତା ଗୋଗୋଷ୍ଠ ଶୁଭେ ହମ୍ବାରଡ଼ି ଦୂରେ ।୪ ।
ପୁଷ୍ପିତ ରଙ୍ଗିଣୀ ଭରା କାନନ ସଦୃଶ,
ଦେଖାଯାଏ ସିନ୍ଧୁବେଳା ଚନ୍ଦ୍ରର ଆଲୋକେ ।
ଅବିର ରଙ୍ଗେ ରଂଜିତ ପଶ୍ଚିମ ଆକାଶ,
ପ୍ରବାଳ ପ୍ରାଚୀର କିବା ତା ଭାଲେ ଝଲକେ ।୫ ।

ଶୋକେ କୋକବଧୂ ନଦୀ ମୁହାଣେ ଆକୁଳେ,
ରାବି ଦୁଃଖେ ଦେଖୁଛନ୍ତି ପ୍ରକୃତିର ରୂପ ।
ସ୍ୱର୍ଣ୍ଣ ବର୍ଣ୍ଣ ଦିଶନ୍ତି ସଫରୀ ବୀଚିମାଳେ,
ଖେଳି ଡିଅନ୍ତି ଉପରେ ଦେଖାଇ ବହପ ।୬ ।
ପଶ୍ଚିମ ଆକାଶେ ଶ୍ୱେତ ଯବନିକା ଟେକି,
ଦେଲା ଅବା କେ ସଜନୀ ମଞ୍ଜୁ ମଞ୍ଚପରେ ।
ଆସିବେ ରଜନୀ ବଧୂ ଗୌରୀ ଚନ୍ଦ୍ରମୁଖୀ,
ସୁନ୍ଦରୀର ଅଙ୍ଗ ଝଲେ ଜଳଧିର ନୀରେ ।୭ ।
ମୃଦୁ ସମୀର ବହୁଛି ସିନ୍ଧୁବାରି ଧରି,
ରଜନୀ ରାଣୀର କିବା ଉପଚାର ପାଇଁ ।
ଆସିଛି ସେ ଦୂରୁ ଉଚ୍ଚ ଲହରୀ ପହଁରି,
ପରଶେ ପଥିକ ମନ ନେଉଛି ଭୁଲାଇ ।୮ ।
ସିନ୍ଧୁ କୁଞ୍ଜ କାନନରୁ ବିହଙ୍ଗମ ଦଳ,
ଯେ ଯାହା ନୀଡ଼ ପାଦପେ ଉଡ଼ି ତ ଯାଆନ୍ତି ।
ଯିବା ବେଳେ କରିଥାନ୍ତି କେତେ କଳରୋଳ,
ନିଶାଚରେ ସେ ଶୋଭାକୁ ତଳୁ ଦେଖୁଥାନ୍ତି ।୯ ।
ସରସୀରେ ଦୋଳେ ପଦ୍ମ ପ୍ରିୟ ବିରହରେ,
ମୁଦି ହୋଇ ଆସେ ଆପେ, ସରାଗ ତ ନାହିଁ ।
ଅଳିକୁଳ ତା କୋଳରେ ମଧୁର ନିଶାରେ,
ରହି ଯାଇଥାନ୍ତି ଭୋଳେ, ନ ପାରନ୍ତି ଯାଇ ।୧୦ ।
ମାରୀଚିଙ୍କୁ ଦେଖେ ମୁହିଁ ରାମଚଣ୍ଡୀ ଦ୍ୱାରେ,
ସପ୍ତଶୂକର ରଥେ କି ବେଗେ ଦେବୀ ଯାଇଁ ।
ପହଞ୍ଚିବେ ତାଙ୍କ ରାଜ୍ୟେ, ପ୍ରାଚୀ ଆରପାରେ,
ମାତ୍ର ଅସ୍ତ ଦିନମଣି, ସନ୍ଧ୍ୟା ଆସେ ନଇଁ ।୧୧ ।
ଅନ୍ୟ ପାର୍ଶ୍ୱେ ଧ୍ୟାନରତ ମାୟାଦେବୀ ସୁତ,
ମାୟା ସଂସାରର ସାର ଅସାରକୁ ଦେଖି ।
ସୀମାହୀନ ସାଗରର ବିସ୍ତୃତ ସୈକତ,
ବେଳାଭୂମି ଯୋଗ୍ୟ ଭାବେ ବାଛିଲେ ପରଖି ।୧୨ ।

ସତେ ଆସିଥିଲା କଳାପାହାଡ଼ କି ଏଠି,
ଲୁଚିଥିଲେ ମହାମାୟା ତା ଡରେ ସାଗରେ ।
ଫେରିଥିଲା ହତାଶରେ, ନେଇଥିଲା ଲୁଣ୍ଠି,
ରତ୍ନ, ମଣି, ମାଣିକ୍ୟ ଯା ଥିଲା ଏ ମନ୍ଦିରେ ।୧୩ ।
ମାୟାଦେବୀ ପୀଠ ଆଜି ଶୂନ୍ୟ କୋଣାର୍କର,
ଯବନର ଆକ୍ରମଣେ ଦେବୀ କିବା ଡରି ।
ସାଗର ଅନ୍ତରେ ଶଯ୍ୟା କଲେକି ତାଙ୍କର,
ସେ ବେଳ କଥାକୁ କାଳ ଦେଲକି ପାସୋରି ।୧୪ ।
ଦୂରୁ ବହୁଦୂରୁ ଆସି ହତାଶ ପଥିକ,
ଭଗ୍ନ ମନେ ନଗ୍ନ ରୂପ କେବଳ ଦେଖୁଛି ।
ମହାକାଳ ଘୋଡ଼ାଇଛି ଅତୀତର ଭେକ,
ଭାବନାରେ ରହି ମାତ୍ର ପଛକୁ ଚାହୁଁଛି ।୧୫ ।
ଚାଲବନ୍ଧୁ ସରଣୀରେ ଦୂରେ ଚାଲିଯିବା,
ଶୁଭିଲାଣି, କମ୍ବୁଧ୍ୱନି ଦୂର ମନ୍ଦିରରୁ ।
ଇତିହାସେ ପଛକଥା କେତେ ବା ଭାବିବା,
ଭାବନାର ଛବି କେବେ ନ ଯିବ ମନରୁ ।୧୬ ।



ମାରୀଚି ବା ମାରୀସି - ବୌଦ୍ଧଦେବୀ । ପ୍ରାଚୀ - ପ୍ରାଚୀ ନଦୀ, କୋଣାର୍କ ନିକଟସ୍ଥ ଏହାର ମୁହାଣରେ ମାରୀଚିପୁର ନାମରେ ଏକ ଜନପଦ ରହିଛି ।

# ଧର୍ମପଦ

ଅଖିଳ ନାୟକ

ହେ କୁଆଡ଼େ ଯାଉଛୁ
କୋଣାର୍କ ?
ଯା' ।
ଧୂ ଧୂ ବାଲିର
ଛାତିରେ
ପଟେ ଭଂଡି - ଭଂଗା ପ୍ରତ୍ନସ୍ତନ ପଥର
ତତେଇ ଅନିଷା କରିଚି
ତତେଇ ।
ନଖକୁ ନିହାଣ,
ହାତକୁ ହାତୁଡ଼ି କରି
ତୁ ତା'ର ଭୁଂଡ଼ି ମାରିବୁନା ?
ବାଃ ! ବାଃ !

ଅଥଚ
ପଥର ସ୍ତନ କି ନିଗାଡ଼ି ପାରିବ
ଆଂଙ୍କୁଳେ ପାଣି,
ଚୋପେ କ୍ଷୀର ?

ନା !

ତ,

ଆଖି ମେଲୁମେଲୁ
ମୁଂଡ ପୋତି ଠିଆ ହୋଇଥିବେ
ଶୋଷରେ
ପରସ୍ପରକୁ ପାସୋରି ଯାଇଥିବା
ଫଂଙ୍ଗାଏ ଲୋକଂକ ପରି
ଅନେକ ଏକ୍ଲା - ଉଦାସୀ ଝାଉଁଗଛ ।
ହେ, କୁଆଡ଼େ ଯାଉଚୁ ?
ଯା'
ଯୁଆଡ଼େ ଯିବୁ
ସିଆଡ଼େ କୋଣାର୍କ



# ଧର୍ମପଦର ଉକ୍ତି

ବ୍ରହ୍ମାନନ୍ଦ ବେହେରା

ତାକୁ ଅଣବାବୁଆ କହି
ସେମାନେ କ'ଣ ଭୁଲ କହିଲେ ?
ମାତ୍ର ଏତିକି କହିଲେ ଯେ...
ସେ ତା ବୋଉକୁ ଲହୁଲୁହାଣ କରୁ
ତା'ର ବାପା କିଏ ଓ କେଉଁଠି ?

ବୋଉ ତାକୁ ଏକୁଟିଆ ଛାଡ଼ି ଦେଇ
କ'ଣ ଭୁଲ୍ କଲା ?
ଏତିକି କହିଲା ଯେ...
"ବାପା ବାରବର୍ଷରୁ ଗଲେଣି
ଫେରୁ ନାହାନ୍ତି କାହିଁକି ?
କ'ଣ ଖୋଜି ଆଣିପାରିବୁ ଏନାବାଳିକି ବୟସରେ ?"

"ଖୋଜି ଆଣିବି, ଅଣବାବୁଆ ହେବିନି
ଦାଣ୍ଡରେ ଘାଟରେ ।"

ପିଲାଟିକୁ ଚିହ୍ନିବାରେ ବୁଢ଼ା କ'ଣ ଭୁଲ୍ କଲା ?
ଦୋ... ଦୋ ପାଞ୍ଚ ହୋଇ କହିଲା
"ପୁଅ, ତୋର ଏ ବର କୋଳିର ସୁଆଦ
ମୋ ବାରି ବରକୋଳି ପରି,

ମୋର ବି ବଳିଆ ନାଆଁରେ କୁକୁର ଟାଏ ଥିଲା,
ବାର ବର୍ଷ ପୂର୍ବେ ମୋ ସ୍ତ୍ରୀ ଗର୍ଭବତୀ ଥିଲା ।”
ବୁଢ଼ାଠୁଁ ସବୁ ଶୁଣିସାରି ପିଲାଟି କ’ଣ ଭାବିଲା ?
ଭାବିଲା ଯେ...
ସବୁ ମିଳି ଯାଉଛି ତା ଜୀବନ କଥାରେ ।
ପିଲାଟି ବି କହିଲା ବୋଉଠାରୁ ଶୁଣିଥିବା ସବୁକଥା
ବୁଢ଼ାଟି ଆଗରେ ।
ବୁଢ଼ା ମେଳେଇ ଦେଖିଲା ତା ଜୀବନ କାହାଣୀରେ
ଏକାଠି ହୋଇ ଯାଉଥିଲା ଦୁଇଜଣଙ୍କର ସମ୍ପର୍କ
ବାପପୁଅ ସଂବନ୍ଧରେ ।

ପିଲାଟି ଜାଣିଲା ବିପତ୍ତି ପଡ଼ିଛି ତା ଜାତିକୁ
ଚଢ଼ିଗଲା ଏକା ଏକା
ଥୋଇ ଦେଲା ଦଧିନଉତିକୁ
ମନ୍ଦିର ଚୂଡ଼ାରେ,
ବୁଢ଼ାକୁ ପଚରାଗଲା
“ତୁ ଜାତିରେ ନା ପୁଅରେ ?”

ରୋକ୍‌ଠୋକ୍ କହି ଦେଲା,
“ଜାତି ବଞ୍ଚିଲେ ମଣିଷ ବଞ୍ଚେ”
ପିଲାଟା ବି ସେଇଆ କହିଲା “ଜଗତ ଉଦ୍ଧାର ହେଉ
‘ମୁଁ’କୁ ମୋ ଭିତରୁ କାଢ଼ି ଦଧିନଉତି କରି ବସାଇ ପାରିଲେ
ମନ୍ଦିର ସୁନ୍ଦର ।”

ପିଲାଟା ଯାହା କଲା ଠିକ୍ କଲା, ହେଲେ
କହି ପାରିଥାନ୍ତା ରାଜାଙ୍କୁ ସମସ୍ତଙ୍କ ସାମନାରେ
“ମୋର ମଥା କାଟ୍ କର
ମୁଁ ମନ୍ଦିର ମୁଣ୍ଡି ମାରିଛି ।”



# ପାଷାଣ କାବ୍ୟ

ଶଙ୍କର୍ଷଣ ପଣ୍ଡା

ଆରେ ମୋର ନୟନ ପିତୁଳା ।
ମନ୍ଦିର ହେଉଛି ଗଢ଼ା ବିଶ୍ୱେ ଅଦ୍ୱିତୀୟ
ବାପା ତୋର ଶିଳ୍ପୀକୁଳମଣି
ସେଥିପାଇଁ ବିଦେଶରେ ରହିଛନ୍ତି ପରା ।

ପାଇଛି ମୁଁ ତାଙ୍କଠୁ ଖବର
ସରି ଆସିଲାଣି କାମ
ଫେରି ସେ ଆସିବେ ଶୀଘ୍ର
ମନ ଆଉ ଅଝଟ ନ କର ।
ଜିଦ୍ ଧରି ଅବୋଧ ବାଳକ
ବିନୟେ କରୁଛି ଅଳି ଜନନୀ ପାଖରେ
ଯିବ ଥରେ ଦେଖି କୋଣାରକ
ଦେଖିବ ସେ ଆପଣା ଜନକ
ଆହୁରି ଦେଖିବ ମେଳ ଅଗଣିତ ଶିଳ୍ପୀ
ଚନ୍ଦ୍ରଭାଗା ସାଗର ସଂଗମ
ଆଉ ମନ୍ଦିର ତିଳକ ।

ମାଆ ଦେଲେ ବାଡ଼ି ବରକୋଳି
ସଂଗରେ ପଠାଇ ଦେଲେ ବଳିଆ କୁକୁର
ତାକୁ ଦେଖି ବାପା ପୁଅ
ଚିହ୍ନା ହେବେ ବୋଲି ।

ମାଆଙ୍କର ନେଇ ପାଦଧୂଳି
ବାହାରିଲା ଧର୍ମପଦ
ବାପାଙ୍କୁ ଦେଖିବ ବୋଲି
ଆନନ୍ଦେ କୁରୁଳି !

ଜନନୀର ବିଷଣ୍ଣ ବଦନ
କେତେ ଭାବନାରେ ହୃଦ
ହୁଏ ଆନ୍ଦୋଳିତ
ଅବିରତ ବହେ ଲୁହଧାର
ପିତା ହେଲା ଅଶନ ଶୟନ !

କୋଣାରକେ ପଡ଼ିଛି ଭାଳେଣି
ବାପାଙ୍କ ଆଦେଶ ନେଇ ଶିଶୁ ଧର୍ମପଦ
ଅସଂପୂର୍ଣ୍ଣ ମନ୍ଦିରର ଚୂଡ଼ା ମାରିଲାଣି ।

ଆଜି ରାତ୍ରି ହୋଇଲେ ପ୍ରଭାତ
ଅବଶ୍ୟ ଏ'କଥା ଯିବ ରାଜାଙ୍କ କାନକୁ
ମୁଣ୍ଡକାଟ ହୋଇଲା ନିଶ୍ଚିତ ।

ବିଶୁ ବସିଅଛି ଆଗେ ମୁଣ୍ଡେ ହାତ ଦେଇ
କଅଣ କରିବା ଭାଇ ବୁଦ୍ଧି ଦିଶୁନାହିଁ ।
ପୁଅ ହେବ ଗୌରବ ମଣ୍ଡିତ
ବାରଶ' ବଢ଼େଇଙ୍କର ପଡ଼ିଛି ଭାଳେଣି
ସର୍ବେ କାଲି ହୋଇବେ ଦଣ୍ଡିତ ।
ଭାବି କହ ବିଶୁଭାଇ
ଭାବି ଚିନ୍ତି କହ ।
ବାରଶ ବଢ଼େଇ କାଲି ବସିବେ ଶୂଳୀରେ
ଭାଇରେ କି ପୁଅରେ ତୋ' ଦାୟ ?

ବିଶୁ କିଛି ପାରୁନାହିଁ ଭାବି
ଯାହା ମୁଁ କହିବି ସିନା ମାନିବେ ସଭିଏଁ
ଜାଣି ଜାଣି ଯମଘରେ କାହାକୁ ପେଷିବି ?

ମୋ' ଜୀବନେ ହେଲେ ପ୍ରୟୋଜନ
ସମର୍ପି ତା ପରମ ଆନନ୍ଦେ
କରନ୍ତି ମୁଁ ସମସ୍ୟାର ଚିରସମାଧାନ ।
ମାତ୍ର ମୋର ସେ ସୌଭାଗ୍ୟ କାହିଁ
ଏ ଅଲୋଡ଼ା ଜୀବନରେ
କାହାର ତ ଦରକାର ନାହିଁ ।
ମୁଁ ବି ଭାଇ, ମୁଁ ବି ସ୍ୱାମୀ
ମୁହିଁ ବି ଜନକ
ସୁଖୀ ହେବ କି ମୋ' ପୁଅ
ଏକା ଏକା ରହି
ସହସ୍ର ଚକ୍ଷୁରୁ ଯଦି ବହିବ ଲୋତକ ।।
ମୋର ଆଜି ବିଷମ ପରୀକ୍ଷା
କହିଲେ କହିବ ସେଇ ଜଗନ୍ନାଥ ସିନା
କେଉଁ ପଥ ଧରି ଏଇ
ପାରି ହେବି ସଂକଟ-ପରୀଖା !

ବିଶ୍ୱକର୍ମା ପରି ମୋର ପୁଅ
କିପରି ତେଜିବି ତାକୁ
ବାରଶ ବଢ଼େଇ ପାଇଁ
ବିଶୁ ବସି
ଢାଳୁଅଛି ଲୁହ !

ଅବା ଛାଡ଼ି ବାରଶହ ଭାଇ
ପୁଅ ମୁଣ୍ଡେ ବନ୍ଧାଇଲେ ଶାଢ଼ୀ
କିବା ଲାଭ ମୋର ପକ୍ଷେ ରହିବାର ଜୀଇଁ ?
ମୁଁ ନିଜେ କି ହାରି ଯାଇନାହିଁ ?

ଡାକି ଡାକି ଆଣିଥିଲି ଘର ଘର ବୁଲି
କି ଉତ୍ତର ଦେବି ଯାଇ
ତାଙ୍କ ପିଲା ଭୁଆସୁଣୀ ?

ବାପା, ମାଆ ଭାଇ ଓ ଭଉଣୀ
ପଚାରିଲେ ଆଉ ସବୁ କାହିଁ ଗଲେ ବୋଲି ।
ଶିଳ୍ପୀକୁଳ ହେଲେଣି ପାଗଳ
ନିଜ ହାତ ମୂର୍ତ୍ତିସବୁ
ଆସି କି ଓହ୍ଲାଇ ସତେ
ସଭାଠାରେ ହୋଇଛନ୍ତି ମେଳ ।
ପିଣ୍ଡ ଛାଡ଼ି ଯାଇଛି ଜୀବନ
ଆଉ କେତେ ଘଣ୍ଟା ପରେ
ପଡ଼ିଯିବ ଯବନିକା—
ଚାହାଁଚାହିଁ ଏକେ ଆନ ଜଣ ।
ଏହା ଦେଖି ବୋଲେ ଦେବଶିଶୁ
ବାରଶ ଭାଇଙ୍କୁ ତେଜି
ମୁଁ ଏକା ରହିବା ବଞ୍ଚି
ନୁହେଁ ତ ଗୌରବ—
ବରଂ ଦେଶ ଜାତି ପାଇଁ
ମୋର ଦେହ ଏ ମାଟିରେ ମିଶୁ ॥

ଆସିଥିଲି ଅଜ୍ଞାତ ପରିରେ
ଚାଲି ଯିବି ନ ହେଉ ପ୍ରଭାତ
ପୁଣି ସେହି ଅଜ୍ଞାତ ପୁରୀରେ ।

ଯାଅ ବାପା ଘରକୁ ବାହୁଡ଼ି
କେତେ ଦିନ ହେଲା ସତେ ଆସିଲଣି ତୁମେ
ମୁଁ ଆସିଲି ବୋଉ କୋଳ ଛାଡ଼ି
ବୋଉ ମୋର କାନ୍ଦୁଥିବ ତଳେ ମୁଣ୍ଡକୋଡ଼ି !

ଘେନ ମୋର ସହସ୍ର ପ୍ରଣାମ
ଜନନୀକୁ କହିଦେବ
ଦେଶ ଓ ଜାତିର ପାଇଁ

ତାର ପୁଅ ହସି ହସି ଦେଲା ଆତ୍ମଦାନ
ଏହାଠାରୁ କଅଣ ବା ଅଛି ମହୀୟାନ ?

ଆଜି ଅବା କାଲି ହେଉ ସମସ୍ତଙ୍କୁ ଗ୍ରାସିବ ମରଣ
ଭାଗ୍ୟବାନ ସେଇ ସିନା ଭବେ
ମରି ଯିଏ ମରଣର ବଢ଼ାଏ ସମ୍ମାନ !

ଚଢ଼ିଗଲା ଧର୍ମପଦ କୋଣାରକ ଶିଖେ
ଚିତ୍ତ ରଖି ବିଭୁ ପାଦ ତଳେ
ଉଠିଲା ସାଗର ଗର୍ଭେ ଉତ୍ତାଳ ତରଙ୍ଗ
ପ୍ରତିବାଦ ସୁରେ
ଚନ୍ଦ୍ରଭାଗା କାନ୍ଦେ କଳକଳେ ।
ଦେଖିଲେ ନଭ ମଣ୍ଡଳେ ସପ୍ତର୍ଷି ମଣ୍ଡଳ
ଅସୁମାରୀ ତାରକା ସକଳ
କବି ତା'ର କବିତାର ଉତ୍ତୁଙ୍ଗ ଶିଖରୁ
ଲଂଫ ଦେଲା
ମହାକାଳ ପାତି ଦେଲା କୋଳ !

ସ୍ତମ୍ଭୀଭୂତ ଗଗନ ପବନ
ଚଉଦିଗେ ଅନୁଚ୍ଚ ଗୁଂଜନ
ବିଶୁ ଖାଲି ଭାଙ୍ଗି ନିରବତା କରୁଛି ଚିତ୍କାର
ଆରେ, କିଏ ଅଛ କେଉଁଠାରେ
ଧର ତାକୁ ଧର !

ଧର ତାକୁ ଧର !
ଅମାନିଆ, ଅଝଟିଆ ଯାଉଛି ପଳାଇ
ଯାଉ ଦେଶ, ଯାଉ ଜାତି ପଛେ ରସାତଳ
ବାରଶ ଭାଇରେ ନୁହେଁ ପୁତ୍ରେ ଦାୟ ମୋର !
ପ୍ରାଚୀ ଭାଲେ ପାଟଳ ବରଣ
ବିଞ୍ଛି ବିଞ୍ଛି ରକ୍ତ ଶତଦଳ

ଅର୍କକ୍ଷେତ୍ରେ ବାଳସୂର୍ଯ୍ୟ କନକ କିରଣ
ସୋହାଗେ ଚୁମ୍ବିଲା
ଉଦୟଭାନୁ ଯୁଗଳ ଚରଣ !
ଶୁଣ ଆଗୋ ମନ ଦେଇ ଶୁଣ
ମାତଂଗ ବୃଂହିତ ସଙ୍ଗେ ଅଶ୍ୱ ହ୍ରେଷାରବ
ବାଦ୍ୟ ସଙ୍ଗେ ନାରୀ କଣ୍ଠେ ସୁଲଳିତ ଗାନ
ବିବିକ୍ତ ବେଳାର ଏକି—
ବିଳାପ କରୁଣ !
ଦେଖୁଛ ତ ମଧ୍ୟାହ୍ନ ମାର୍ତ୍ତଣ୍ଡ
ଶୁଣାଯାଏ ଲୋକମୁଖେ
କେଉଁକାଳେ ଏ ମନ୍ଦିର
ଭୂମି ଛାଡ଼ି ଉଠୁଥିଲା ଶୂନ୍ୟେ କେତେ ଦଣ୍ଡ !
ପୀଢ଼ ପରେ ଅୟସ୍କାନ୍ତ ମଣି
ଟାଣୁଥିଲା ମନ୍ଦିରକୁ ଭୂମି ପରେ ପୁଣି ।

ପଶ୍ଚିମକୁ ଗଲେ ଛାୟାକାନ୍ତ
ଜାଳି ଜାଳି ଅବସନ୍ନ ପ୍ରତିଚୀ ଦିଗନ୍ତ
ଅସ୍ତ ସୂର୍ଯ୍ୟ ଦେଉଥିଲେ ବିଦାୟ
ବରାଭୟେ ଟେକି ଦକ୍ଷ ହସ୍ତ
ଜନଶ୍ରୁତି ଏବେ ବି ପ୍ରଖ୍ୟାତ
ଦଧିନଉତିର ଦେହେ ଚୁମ୍ବକ ପଥର
ଟାଣୁଥିଲା ସାଗରୁ ବୋଇତ ।

ଜଳଦସ୍ୟୁ ମଣିଲେ ପ୍ରମାଦ
କୋଣାରକ ବେଳାଭୂମେ
ଗଲାନି ବୋଇତ ଆଉ
ଅୟସ୍କାନ୍ତ ଆରମ୍ଭିଲା ବାଦ !

ନିର୍ବିଚାରେ ଜଳଦସ୍ୟୁ
ଦେଲେ ସେଇ ଚୁମ୍ବକ ଖସାଇ
ବିଶ୍ୱର ବିସ୍ମୟ ସତେ
ଏଇଭଳି ଦିନେ
ଅସମ୍ଭାଳେ ଅଣାୟତେ ପଡ଼ିଲା ଧସାଇ ।

ଖଣ୍ଡିତ ପାଷାଣ କାବ୍ୟ ଲୋଟିଗଲା ତଳେ
ପ୍ରତ୍ନଗ୍ରାସୀ ମାନବର କ୍ରୂର ପଶୁ ବଳେ
ମାତ୍ର ସେ ତ ହୋଇନି ନୀରବ
ଦୃପ୍ତ ସ୍ୱରେ ବଖାଣୁଛି ଯାହା ଥିଲା ଦିନେ
ଓଡ଼ିଆର ନିଜ ଗଉରବ ।



(ସଂପାଦିତ ଅଂଶ)

# କୋଣାର୍କର ଭଗ୍ନସ୍ତୂପ ଅନ୍ତରାଳେ

ସାରଦା ପ୍ରସାଦ ସ୍ୱାଇଁ

ଓଡ଼ିଆ ଜାତି ଗଢ଼ିଛି କୋଣାର୍କ
ସୁଗଭୀର ଚନ୍ଦ୍ରଭାଗା ମୁହାଣରେ
ଯେଉଁଠି ଢେଉର ଝଡ଼ ସୃଷ୍ଟି ହୁଏ
ସାଗରର ଫେନିଳ ବକ୍ଷରେ ।

କୋଣାର୍କ କି ରାଜତନ୍ତ୍ରର ନିଛକ ନମୁନା
କିମ୍ବା ତାହା ଶିଳ୍ପୀ ସ୍ୱାଭିମାନର ଜ୍ୱଳନ୍ତ ପ୍ରତୀକ
ଧନ୍ୟ ଲାଙ୍ଗୁଳା ନରସିଂହ ଦେବ, ଧନ୍ୟ ଏହି ନୃପତି
ସାରା ବିଶ୍ୱରେ ସ୍ଥାପିଗଲ ଅମର କୀରତି ।

ଯେଉଁ ମନ୍ଦିର ତୁମେ ଗଢ଼ି ତୋଳିଲ
ସେଥିରେ ତିଳେ ମାତ୍ର ନାହିଁ ବାହ୍ୟ ଚାରୁକଳା ସ୍ପର୍ଶ
ସବୁ ନିହାଣ ମୁଗୁର ମୁନର କାମ
ଖାଣ୍ଟି ଓଡ଼ିଆର ଶିଳ୍ପୀ ଶାସ୍ତ୍ରର ନମୁନା
ବିଶୁ ମହାରଣା ଆଉ ବାରଶହ ବଢ଼େଇକୁଳ
ସେମାନଙ୍କ ଜୀବନ ଲାଗିଲା ବାଜି ଦେଶ ପାଇଁ, ଦଶ ପାଇଁ
ରାଜା-ପାତ୍ର-ମନ୍ତ୍ରୀ ଏବଂ ସାମନ୍ତ ଓଗେର
ମନ୍ଦିର ନିର୍ମାଣ ନିମନ୍ତେ ସତତ ତତ୍ପର
ବାସ୍ତୁକଳା ସ୍ଥାପତ୍ୟର ବୈଦୂର୍ଯ୍ୟକୁ ନେଇ
ଉଭାହେଲା ବିଶ୍ୱେ ଅଦ୍ୱିତୀୟ କୋଣାର୍କ ମନ୍ଦିର
ଚନ୍ଦ୍ରଭାଗା ସମୁଦ୍ରର ମିଳନ ପୀଠରେ

ଅର୍କକ୍ଷେତ୍ରେ ପୁଣ୍ୟତୋୟା ପ୍ରାଚୀ ମୁହାଣରେ
କିଂତୁ ନିୟତିର ନିଷ୍ଠୁର ବିଚାର
ରହିଗଲା ଅଧାଗଢ଼ା ମଂଦିର ସେ ମୁଂଡି ମରି ପାରୁନାହିଁ ।
ବାର ବରଷର ବାଳୁତ କୁମର
ନାମ ତାର 'ଧର୍ମପଦ'
ଦେଖିନାହିଁ ପିତାର ମୁହଁ ସେ ଜନ୍ମକାଳୁ
ମାଆ ପାଶେ ଅଳି କଲା ଯିବାକୁ ସେ ଚଂଦ୍ରଭାଗା ତୀର୍ଥେ
ଯେଉଁଠାରେ ପିତା ତା'ର ବାରଶ ବଢ଼େଇ ସାଥେ
ଗଢ଼ିତୋଳେ କୋଣାର୍କ ମଂଦିର ।

ମାଆଠାରୁ ବିଦାୟ ନେଇ ଧର୍ମପଦ
ଆଗେଇ ଚାଲିଲା ଭେଟିବାକୁ ପିତାଂକୁ ତାହାର
ସଂଗେ ନେଇ ବାରି ବରକୋଳି ଏବଂ ବଳିଆ କୁକୁର
ବାପା ତା'ର ବିଶୁ ମହାରଣା
ବିଶ୍ୱକର୍ମା କୁଳେ ମଉଡ଼ମଣି ସେ ।

ଚିହ୍ନିଲା ବିଶୁ ତା'ର ବାରି ବରକୋଳି
ଓ ବଳିଆ କୁକୁର ଲୋତକରେ ଆଖି ଢଳଢଳ
ବାପ ପୁଅ ମିଳନର କାଂଦିଥିଲା ଚଂଦ୍ରଭାଗା
କାଂଦିଥିଲେ ତାଂକ ସାଥିରେ ବାରଶହ ବଢ଼େଇ କୁଳ
ପୁତ୍ରକୁ କୁଂଢ଼ାଇ ଧରି ପିତା କହେ
'ଧନ ମୋର, ଭାଗ୍ୟ ଥିଲା ଦେଖିଲି ତୋ ମୁହଁ
ମାଆକୁ କହିବୁ ଯାଇ ରହିଗଲା ଅଧାଗଢ଼ା କୋଣାର୍କ ମଂଦିର
ବାରଶହ ବଢ଼େଇଂକ ଯେତେ ଚେଷ୍ଟା
ବିଫଳ ହେଲା, ମୁଂଡିମରି ପାରିଲାନି କୋଣାର୍କ ମଂଦିର
ରାଜାଂକ ଆଦେଶ, କାଲି ପ୍ରଭାତରେ ମୁଂଡ଼କାଟ ବାରଶ ବଢ଼େଇଂକର
ସୂର୍ଯ୍ୟୋଦୟ ପୂର୍ବରୁ ଯଦି ମୁଂଡ଼ି ନ ମରିଲା ଦେଉଳର

ବଢ଼େଇ କୂଳକୁ ଲାଜ, ଲଜ୍ଜା ପୁଣି ଓଡ଼ିଆ ଜାତିକୁ
ବଂଚିବାଟା ମୂଲ୍ୟହୀନ, ତା ଅପେକ୍ଷା ଶତଗୁଣ ଭଲ
ରାତି ନ ପାହୁଣୁ ସମୁଦ୍ରରେ ପ୍ରାଣ ବିସର୍ଜନ ।'
ପିତା ପାଦ ସ୍ପର୍ଶ ଅନୁମତି ଲୋଡ଼ି ବାରଶ ବଢ଼େଇଂକର
ଧର୍ମପଦ ନିହାଣ ମୁଗୁର ନେଇ ମଂଦିର ଚୂଡ଼ାରେ ଉଭା
ଥାପିବାକୁ ଦଧିନଉତି ସୁଂଦରା ଫାଟିବା ଆଗୁ ।
ସକାଳର କଅଁଳ ଖରାରେ ଝିଲିମିଲି କରେ ସମୁଦ୍ର ଲହରୀ
ମଂଦିରର ଶିଖର ଦେଶରେ ଦଧିନଉତି ସ୍ଥାପନ ହୋଇଛି
ଆନଂଦରେ ବିଭୋର ବାରଶ ବଢ଼େଇକୂଳ
ବିଶୁ ମହାରଣା ଆଖିରୁ ବୁହେ ଧାର ଧାର ଲୁହ
ବାର ବରଷର ବାଳୁତ କୁମର ତା'ର ରଖିଲା ଜାତିର ମାନ
ବାରଶ ବଢ଼େଇ ପାଇଁ ସମୁଦ୍ରରେ ଦେଲା ପ୍ରାଣ ବିସର୍ଜନ ।

କାହିଁ ସେ ଓଡ଼ିଆଜାତି କାହାଂତି ସେ କାରିଗର
ସକ୍ଷମ ନୁହଂତି ତୋଳିବାକୁ ଆଉ ଏକ କୋଣାର୍କ ମଂଦିର
କାହିଁ ସେ ଓଡ଼ିଆ ଆଜି ଯା ବୋଇତ
ନୀଳ ଲହଡ଼ିରେ ଭାସି ଭାସି ମଳୟ ଦ୍ୱୀପକୁ ଯିବ !

କହ ମତେ କହ ବଂଧୁ ଆଜି ଏ ଜାତି
କ'ଣ ପାଇଁ ପାଲଟିଛି ମୂକ ଓ ବଧିର
ଅତୀତକୁ ସର୍ବସ୍ୱ କରିଥିବା ଜାତି କି ଜାଗିବନି ଆଜି
ତୋଳିବାକୁ ଆଉ ଏକ କୋଣାର୍କ ମଂଦିର ?



# ଶିଳ୍ପୀର ନିଦ୍ରାଭଙ୍ଗ

ମଧୁସୂଦନ ସୂତାର

କ୍ରୁଦ୍ଧ ଶିଳ୍ପୀ ତୁମେ କିଆଁ ପୁତ୍ର ହତ୍ୟା କଲ
ନିଲଠା ଗରିମା ପାଇଁ ମିଥ୍ୟାର ଆଶ୍ରୟ ନେଇ
ଯୁଗେ ଯୁଗେ ଅପବାଦ-ଅଭିଶାପ ମୁଣ୍ଡରେ ବହିଲ ।
ଧରମାର ଦୀର୍ଘଶ୍ୱାସ କରୁଣ କ୍ରନ୍ଦନ
ଏତେଦିନ ଏ ଜାତିକୁ କରିଦେଲା ମୋହ ନିଦ୍ରାଚ୍ଛନ୍ନ ।
ଦେଖ ଶିଳ୍ପୀ ଧର୍ମପଦ ଶୋକ ଉଚ୍ଛ୍ୱାସରେ
ସାଗରିକା କ୍ରୋଧୀ ହୋଇ ଭାଙ୍ଗିଦେଲା କୋଣାର୍କ ମନ୍ଦିରେ ।
ଏ ଶିଳ୍ପୀ ଯୁଗର ସାଥୀ ବିଶ୍ୱକର୍ମା ଭାଇ
ଉଦାସୀନ ଅପମାନେ କେତେକାଳ ରହିଥିବ ଶୋଇ,
ଧରମା କଲାଣି କ୍ଷମା ଜାଗି ଉଠ ଧର୍ମପଦ କୁଳ
ଏବେ ବି ବାକି ରହିଛି ମାରିବାକୁ ଅନ୍ୟ କେତେ ଦେଉଳର ଚୂଳ ।
ଏ ଦେଶ ପ୍ରଗତିପଥେ ହୁଅ ହେ ପଥିକ
ଭାରତ ବିକାଶ ରଣେ
ଘେନ ତୁମ ଅଧିନାୟକତ୍ୱ ।
ବାନ୍ଧି ଦିଅ ବୈଜୟନ୍ତି ଶିଳ୍ପ-କ୍ଷେତ୍ର ମନ୍ଦିର ଚୂଡ଼ାରେ
ଖଞ୍ଜିଦିଅ ଚୁମ୍ବକର ଆକର୍ଷଣ
ସେ ମନ୍ଦିର ଦଧିନଉତିରେ ।
ଶତ ମୁଖ ହେଉ ବିଶ୍ୱ
ଗର୍ଜି ଉଠୁ ପ୍ରଶଂସାର ରୋଳ
ନିଦ୍ରା ଭାଙ୍ଗି ଜାଗି ଉଠ
ପବିତ୍ର ହେ ବିଶ୍ୱକର୍ମା କୁଳ
ଗଢ଼ି ଉଠୁ ମନ୍ଦିର ଓ ସେତୁ
ଅଟ୍ଟାଳିକା, କାରଖାନା, କଳ
ଆମେ ସବୁ ଏ ମାଟିର କାରିଗର
ଏଇ ଆମ ଶିଳ୍ପୀର ଉତ୍କଳ ।



# ଧର୍ମପଦ

ଦେବରାଜ ତ୍ରିପାଠୀ

କୁହ କୁହ ଧନ କିପାଇଁ ନୟନୁ
ଦରଦର ଲୁହ ଝରଇ ।
ଗଣ୍ଠିଧନ ମୋର କାହିଁକି କାନ୍ଦୁଛୁ,
ଜନନୀ ଆକୁଳେ ପୁଛଇ
ଅବଧାନ ତୋତେ ଦେଲେ କିରେ ଦଣ୍ଡ ?
ବାଟରେ ସାଙ୍ଗକେ ମାଇଲା ?
ବାର ବରଷର ଅଲିଅଳ ପୁଅ
ନାଇଁ ନାଇଁ ମାଆ, କହିଲା ।
ଗୋଟାଳି ମୋହର ଗଡ଼ିଗଲା ଟହୁଁ
କହିଲି ପଡ଼ୋଶୀ ଭାଇରେ,
କହିଲା ସେ ରାଗେ ଅଣବାବୁ ପୁଅ
ମୁହିଁ ତୋ ଚାକର ନାଇଁରେ ।
ସତ କହ ମାଆ ବାପା ମୋର କାହିଁ
ରହିଛନ୍ତି ଏତେ ବରଷ ?
ଜନନୀ କହିଲେ ତୁନି ହୁଅ ଧନ
ବୁଝାଇବି ତା'ର ସନ୍ଦେଶ
ଯେତେ ସରାଗରେ ପାଳିଛିରେ ଧନ
ଜାଣି ନାହୁଁ ଦୁଃଖ ବେଦନା
କେଡ଼େ ସତୀ ସେହି ପୁଅର ମାଆଟି
ଦେଲା ମୋ ଧନରେ ଯାତନା ।
କୁଣ୍ଢାଇ କୋଳରେ ଧଇଲେ ଜନନୀ
ପୋଛିଦେଇ ମୁଖ ବସନେ ।

ତଥାପି ନୟନୁ ଲୁହ ଝରି ପଡ଼େ
ଅମାନିଆ ହୋଇ ସଘନେ ।
ତୁନି ହେଲା ପୁଅ ମାଆର ନୟନୁ
ଲୋତକ ନୋହିଲା ଥବିର,
ମୁଖ ଦିଶୁଥିଲା ଲାଲ ଟହ ଟହ
ବୋଳି ଦେଲେ ଯେହ୍ନେ ଅବିର ।
କୋଳେ ଧରି ପୁଏ ଭୁଞ୍ଜାଇଲେ ଭାତ
କହିଲେ ଫିଟାଇ କାହାଣୀ,
ଶୁଣୁଥିଲା କଥା ଜନନୀ ମୁଖରୁ
ଢାଳି ଆତୁରତା ଚାହାଣି ।
ବାର ବରଷରେ ଉଠାଇଲୁ ଆଜି
ମନରେ ମୋ ସୁପ୍ତକୋହକୁ,
ଝରାଇଲୁ ଆଜି ନୟନରୁ ମୋର
ଶୁଖିଥିଲା ଯେଉଁ ଲୁହକୁ ।
ଆମ ଓଡ଼ିଶାର ଚନ୍ଦ୍ରଭାଗା କୋଳେ
କୋଣାରକ ବୋଲି ଦେଉଳ,
ବଛା ବଛା ଶିଳ୍ପୀ ଯାଇ ଗଢୁଛନ୍ତି
ଜଗତେ ହେବ ସେ ଅତୁଳ ।
ଓଡ଼ିଶାର ରାଜା ନରସିଂହ ଦେବ
ଶିଳ୍ପ କଳାର ରସିକ
ଗଢ଼ାଉ ଅଛନ୍ତି ଅର୍କ ମନ୍ଦିର
ଶିଳ୍ପ କଳାରେ ଅଧିକ ।
ତୋହର ପିତାଙ୍କୁ ସାମନ୍ତ କରି ସେ
ଗଉରବେ ନେଲେ ଡକାଇ
ତାଙ୍କରି ଇଙ୍ଗିତେ ଗଢ଼ା ହେଉଅଛି
ମନ୍ଦିର ଶ୍ରମ ଲଗାଇ ।
ବାର ଶହ ଶିଳ୍ପୀ ବାରବର୍ଷ ଲାଗି
ପୂରଣ ନୋହିଛି ଦେଉଳ
ପୂରା ନ ହୋଇଲେ ପିତା ନ ଫେରିବେ
ସେଥିପାଇଁ ମନ ଆକୁଳ ।

ଗଲାବେଳେ ପିତା          ତୁ ଥିଲୁ ଗରଭେ
ଦେଖି ନାହୁଁ ତେଣୁ ପିତାଙ୍କୁ
ତୋହର ବଦନ          ଦେଖି ମୁଁ ପୋଛଇ
ନୟନର ଝର ଲୁହକୁ
ଶ୍ରଦ୍ଧାରେ ଉଡ଼ିଲା          ଧରମାର ମନ
କହିଲା କୁହ ଗୋ ଜନନୀ ।
କଲ୍ୟାଣ କରତୁ          ଯାଉଛି ଆଣିବି
ପିତାଙ୍କୁ ପାଉଲୋ ରଜନୀ
ଦେଖିଚି ମୋହର          ଜାତିର ଗୌରବ
କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର
ଦେଖିବି ଯାଇଲୋ          ନୟନ ପୂରାଇ
ଓଡ଼ିଆର କୀର୍ତ୍ତି ସୁନ୍ଦର
ଏତେ ଦୂର ବାଟ          କିପରି ଯିବୁରେ
ଚିହ୍ନିବୁ ପିତାଙ୍କୁ କିପରି
ନାହିଁ ମୁଁ କରିବି          କାହିଁକିରେ ଧନ
ସରଧା ଯଦିରେ ତୋହରି
ଘର କୁକୁରକୁ          ସାଥିରେ ନିଅରେ
ଝୁରୁଛି ବହୁତ ଦିନରୁ
ଏକୁଟିଆ ଧନ          ନ ଯିବୁ କୁଆଡ଼େ
ବଳିଆକୁ ଛାଡ଼ି ପାଖରୁ
ପିତା ନ ଚହ୍ନିଲେ          ବଳିଆ କୁକୁର
ଚିହ୍ନାଇବ ତୋରେ ପିତାକୁ
କୋଳିଗଣ୍ଡେ ଧନ          ଧରିଥା ମୁଣିରେ
ଭେଟିଲେ ପିତାଙ୍କୁ କି ଦେବୁ ?
ହୋଇଗଲା ବେଶ          ସଘନେ ଧରମା
ମାତା ପାଦ ଶିରେ ଲଗାଇ
କହିଲା ଯାଉଛି          ଦିଅ ଗୋ ମେଲାଣି
ଆଣିବି ପିତାଙ୍କୁ ଫେରାଇ

ମୋ ଆତ୍ମା ବ୍ୟାକୁଳ ଧନରେ ତୁ ଆଜି
ବାର ବରଷରେ ଜାଣିଲୁ
ବାପା ଯେ ତୋହର ଛାଡ଼ି ଯାଇଛନ୍ତି
ଏବେ ତୁତ ଛାଡ଼ି ଚାଲିଲୁ
ଏକା ମୁଁ ରହିଛି ରହିବୁନି ଧନ
ମାଆକୁ ତୋହର କନ୍ଦାଇ
ଦିନ ମୁଁ ଗଣୁଛି ନେବି ମୁଁ ଘରକୁ
ବାପା ଓ ପୁଅଙ୍କୁ ବନ୍ଦାଇ
ତଳେ ନ ପକାଇ ନୟନର ଲୁହ
ବସନରେ ମାତା ପୋଛଇ
ମନ ଉଚ୍ଚାଟରେ ଚାଲିଲା ଧରମା
ଦୂର ପଥ ପାଖ ଲାଗଇ
ବହୁତ ଦିବସ ଅତିକ୍ରମ କରି
ଧରମା ଜାଣିନି ସରମ
ଦେଖିଲା ଅଦୂରେ ଉଭା ହୋଇଅଛି
ମନ୍ଦିରରେ ଶ୍ରେଷ୍ଠ ପରମ
ପଥଶ୍ରମ ତା'ର ଭୁଲିଗଲା ଦେଖି
ଓଡ଼ିଆର କଳା ଝଲକ
ମୁଗ୍ଧ ହୋଇ ସେ ଯେ ଦେଖୁଛି ମନ୍ଦିର
ପଡୁନାହିଁ ତା'ର ପଲକ
ପଥର ଦେହରେ ସୂଚିମୁନ କାମ
ମନ୍ଦିର ପାଦରୁ ମଉଳି
ଅଦ୍‌ଭୁତ କଳାରେ ସଜ୍ଜିତ ହୋଇଛି
ଉପମା ନାହିଁ ତା ସେଭଳି
ପଶୁ ପକ୍ଷୀ ବୃକ୍ଷ ଲତା ନର ନାରୀ
ଜୀବନ୍ତ ଦିଶନ୍ତି ସକଳେ
ଭାରତର ପ୍ରାଚୀ ଇତିହାସ ଗାଥା
ଖୋଦିତ ଅଦ୍‌ଭୂତ କୌଶଳେ ।

ଓଡ଼ିଆ ବୀରତ୍ୱ		ଉତ୍କଳ ବାଣିଜ୍ୟ
ଉତ୍କଳର ରଣ ହୁଂକାର
ଯୁଗ ଯୁଗ ପାଇଁ		ସାକ୍ଷୀ ହୋଇଗଲା
ଆଶ୍ଚର୍ଯ୍ୟ ପୂରିତ ମନ୍ଦିର
ଯେତେ ଦିନ ଯାଏଁ		ଏ ଶିଳାରୁ ଖଣ୍ଡେ
କାହିଁ ହୋଇଥିଲେ ପତିତ
ଉତ୍କଳ ଭୂଇଁର		ବୀର ସନ୍ତାନର
ଗାଉଥିବ ଯଶ ନିରତ
ଭାବିଲା ଧରମା		ଥରେ ଯେ ଦେଖିଛି
ଏ ମନ୍ଦିର ନେତ୍ର ପୂରାଇ
ଧରଣୀରେ ତା'ର		ଜନମ ସାର୍ଥକ
ଜୀବନ ସାର୍ଥକ ମଣଇ
ଦେଖିଲା ଧରମା		ବାରଶହ ଶିଳ୍ପୀ
କରମରେ ବ୍ୟସ୍ତ ନିରବେ
ଜୀବନ୍ତ ମନ୍ଦିର		ଗଢ଼ି ଦିଶୁଛନ୍ତି
ମୁମୂର୍ଷୁର ପରି ସରବେ
ବିସ୍ମୟ ହୋଇଲା		ନ ଜାଣି ରହସ୍ୟ
ଶିଳ୍ପୀଏ ଯେ ଦିଗ୍‌ବିଜୟୀ
ନିରାଶ କିପାଇଁ		ଦିଶନ୍ତି ସକଳେ
କେଉଁ ଭାବନାର ଆଶାୟୀ
ଯେ ଶିଳ୍ପୀ ନିଜର		କଳା କଉଶଳେ
ପାଷାଣକୁ ଦେଲା ଜୀବନ
ସେ ଶିଳ୍ପୀ ମୁଖରୁ		ନ ଝରି ଆଲୋକ
କିପାଇଁ ଦିଶୁଛି ମଳିନ
ବୁଝି ନ ପାରିଲା		ଶିଶୁର ମାନସ
ବିରାଟ ରହସ୍ୟ ସହଜେ
ତଟିନୀ କିପରି		ବୁଝିବ ସହଜେ
ସାଗର କିପାଇଁ ଗରଜେ

ଖୋଜିଲା ବହୁତ କାହିଁ ନ ପାଇଲା
ପୂଜ୍ୟ ପିତାଙ୍କର ନିର୍ଦ୍ଦେଶ
କୋଳି ବିକିବାର ଅଭିନୟ କଲା
ହୋଇ ଶେଷେ ଅତି ନିରାଶ
ବୃଦ୍ଧଏ ଦେଖିଲା ବିସ୍ମୟେରେ ବୁଡ଼ି
କୋଳି ବିକେ କା'ର ନନ୍ଦନ
ତା କ୍ଷୁବ୍‌ଧ ଅନ୍ତସ୍ତରେ କ୍ଷଣିକ ଭିତରେ
ବୋଳିଦେଲା ସ୍ନେହ ଚନ୍ଦନ
ଦିଶୁଥିଲା ଶିଶୁ ଅବିକଳ ଝଳି
ପ୍ରତିବିମ୍ବ ପରି ବୃଦ୍ଧର
ମନେ ପଡ଼ିଗଲା ଘରକଥା ସବୁ
ବ୍ୟାକୁଳିତ ହେଲା ଅନ୍ତର
କହିଲା ଥିବ ମୋ ଏହି ବୟସର
ନନ୍ଦନ କି ଅବା ନନ୍ଦିନୀ
କୋଳେ ଘେନି ତା'ର ବିଧୁରା ଜନନୀ
ହେଉଥିବ ସ୍ନେହେ ବନ୍ଦିନୀ
ଏହିପରି କୋଳି ବାରିରେ ମୋ ଫଳେ
କହୁ ଝରେ ନେତ୍ରୁ ସଲିଳ
ହାତରୁ ନିହଣ ମୁଗୁର ଖସିଲା
ହୋଇଗଲା କର ଶିଥିଳ ।
କୁକୁର ଲୋଟିଲା ଶିଳ୍ପୀର ପାଦରେ
ପୂର୍ବ ସ୍ନେହାଅନୁବନ୍ଧନେ
ଜନକକୁ ତା'ର ଚିହ୍ନିଲା ଧରମା
ପ୍ରଣିପାତ କଲା ଚରଣେ
ବକ୍ଷରେ ଲଗାଇ ଚୁମ୍ବନ ଦେଲେ ସୁତରେ
ସିବେଇ ସାମନ୍ତ
କହିଲେ ମୃତ୍ୟୁର ପୂର୍ବୁ ଯା ଦେଖିଲି
ଧନକୁ ମୋ ଧନ୍ୟ ଭାଗ୍ୟରେ
ଧର୍ମପଦ ବୁଡ଼ି ବିସ୍ମୟେ ପଚାରେ
ଜନକହେ କେଉଁ କାରଣେ

ବିଦ୍ଧ କଲ ମୋର		କୋମଳ ହୃଦକୁ
ନିଷ୍ଠୁର ନିରାଶ ବଚନେ
ଉତ୍କଳର ରାଜା		ନରସିଂହ ଦେବ
ମନୁଆ ସେ ବୀର ବିକ୍ରମ
ପୂର୍ଣ୍ଣ ଏ ମନ୍ଦିର		ବାର ବର୍ଷ ହେଲା
ହୋଇନାହିଁ ବୋଲି ବିଭ୍ରମ
ଦୁଇ ଦିନ ତଳେ		ଗରଜନ କରି
ଦେଇଛନ୍ତି କଡ଼ା ଆଦେଶ
ତିନି ଦିନ ଦେଲି		ଦେଉଳର ମୁଣ୍ଡି
ମାରିବାକୁ ହେବ ଅବଶ୍ୟ
ବାରଶହ ବଢ଼ା		ଓଡ଼ିଶାର ଶିଳ୍ପୀ
ବାରବର୍ଷ ନେଇ ସମୟ
ଏ ତିନି ଦିନରେ		ମୁଣ୍ଡି ନ ମରିଲେ
ହତ୍ୟା ମୁଁ କରିବି ନିଶ୍ଚୟ
ଇତିହାସ ପରେ		କଳଙ୍କ ରହୁ ମୋ
ଅପବିତ୍ର ହେଉ ମନ୍ଦିର
ଯୁଗ ଯୁଗ ଧରି		ନରସିଂହ ନାମେ
ନିନ୍ଦା କରୁ ପଛେ ସଂସାର
ଦୁଇଟି ଦିବସ		ଶେଷ ହୋଇଗଲା
ଅଛି ମାତ୍ରକ ଏ ରଜନୀ
ପ୍ରଭାତ ତପନ		ଦେଖିବ ଆମର
ରକତେ ରଞ୍ଜିତ ଅବନୀ
ଦେହପାଇଁ ଆମ		ଦୁଃଖନାହିଁ ଲେଶ
ଘର ପାଇଁ ନାହିଁ ମମତା
ଆମରି ହାତରେ		ମୁଣ୍ଡି ନ ମରିଛି
ରହିଯିବ ସଦା ଏକଥା
ଧରମାର ମନ		ଉଦ୍‌ବିଗ୍ନ ହେଲା
ଚାହିଁଲା ଦେଉଳ ଚୂଡ଼ାରେ
ପିତାଙ୍କ ପାଖକୁ		ଗୋପନରେ ଯାଇ
ଚଢ଼ିଲା ଦେଉଳ ଶିଖରେ

ସଶ୍ରଦ୍ଧେ ଦେଖିଲା ଦେଉଳ ଚୂଡ଼ାରୁ
କାରୁ କମନୀୟ ଚୁମ୍ବକ
ଶିଳ୍ପୀର ହସ୍ତର ସଉଷ୍ଠବ ଘେନି
ଟେକିଅଛି ଗର୍ବେ ମସ୍ତକ
ଦେଖିଲା ମନ୍ଦିର ସିଂହାସନ ପରେ
ଶୂନ୍ୟେ ଲୌହ ରୋଳ ଫଳକ
ଦୃଢ଼େ ରହିଅଛି ଚତୁର୍ଦ୍ଦିଗୁ ତା'ର
ଟାଣି ଧରିଛନ୍ତି ଚୁମ୍ବକ
ଉଦୟ ରବିର ପ୍ରଥମ କିରଣ
ପଡ଼ି ଜଳେ ତେଜେ ଫଳକ
ଜାଣିଲା ଧରମା କିପରି ରଖିବ
ଦେଉଳର ମୁଣ୍ଡି ଚୁମ୍ବକ
ଦେଉଳ ଚୂଡ଼ାରୁ ଭୂତଳେ ଦେଖିଲା
ତାରକାର କ୍ଷୀଣ ଆଲୋକେ
ବାରଶହ ଶିଳ୍ପୀ ପାଷାଣର
ଭୂମିରେ ଲୋଟନ୍ତି ଦୁଃଶୋକେ
ଶିଳ୍ପ ଶାସ୍ତ୍ରେ ତା'ର ଗଭୀର ପ୍ରବେଶ
ଥିବାରୁ ଭାବିଲା ମନରେ
ଦେଉଳର ଚୂଳ ବସାଇ ରଖିବି
ବଞ୍ଚାଇ ମୋ ଜାତି ଭାଇରେ
ଗଣିତ ଶାସ୍ତ୍ରରେ ହିସାବ କରି ସେ
ବସାଇଲା ଦଧିନଉତି
ଦେଉଳର ଚୂଳେ ପତକା ଉଡ଼ାଇ
ଓହ୍ଲାଇ ଆସିଲା ଝଟତି
ବିଭୀଷିକା ଭରା ଶିଳ୍ପୀଙ୍କ କାନରେ
ଜଣାଇଲା ଶୁଭ ସମ୍ବାଦ
ରାଜାଙ୍କ ଆଦେଶ ପୂର୍ଣ୍ଣ କରିଅଛି
ଆଉ ନାହିଁ କାର ବିଷାଦ

ଭୂତଳୁ ଉଠିଲେ ବାରଶହ ଶିଳ୍ପୀ
କହିଲେ ଦେବତା ଆସିଛ
ଆମରି ଜାତିର ପୁଅ ହୋଇ ଆମ
ଜାତିର ଇଜ୍ଜତ ରଖିଛ
ରାଜା ଯେବେ ଏହା ଜାଣିବେ ଆମକୁ
ରଖିବେ ନାହିଁ ତ ପ୍ରଭାତେ
ଏ ଧରଣୀ ନିଶ୍ଚେ ତିନ୍ତିବ ଆମର
ବାରଶହ ଶିଳ୍ପୀ ରକତେ
ପୁଅରେ ଦାୟୀ କି ବାରଶହେ ଦାୟୀ
ପଚାରିବେ କାଲି ରାଜନ
ଯୁଗ ଯୁଗ ପାଇଁ ରହିଯିବ କଥା
ବାରଶ ପାଇବୁ ଲାଞ୍ଛନ
ଧରମା କହିଲା ଭୟ କରନାହିଁ
ଭୟ କର ନାହିଁ ସରବେ
ଚାଲି ଯାଉଅଛି ଦିଅନ୍ତୁ ବିଦାୟ
ଆସିଥିଲି ଯେହ୍ନେ ନିରବେ
ଶିବେଇ ସାମନ୍ତ ପାଲଟିଲା ଶିଳା
ମୁଖରେ ନାହିଁ ତା ବଚନ
ଶକତି ନ ଥିଲା ମନରେ ତାହାର
ହେଉଥିଲା ହୃଦ କମ୍ପନ ।
କହିଲା କୁହନା ଦାରୁଣ ଏକଥା
ଅନ୍ତର ମୋହର ସହେନା
ଶେଷ ଜୀବନର ଶେଷ ସମ୍ବଳ ତୁ
ଦାରୁଣ ବଚନ କୁହନା
ଧରମପଦରେ କି ବୋଲି କହିବି
ଫେରିଯାଇ ଘରେ ମାତାରେ
ପୁଅ କାହିଁ ବୋଲି ପଚାରିବ ଯେବେ
ସେନେହରେ ବଡ଼ ଆତୁରେ

ଶିଳ୍ପୀଏ କହିଲେ ଶିଶୁର ହାତରେ
ବସିଅଛି ଦଧିନଉତି
ଏକଥା ଜାଣିଲେ ନୃପତି ଆମେ ତ
ନପାରିବା ଆଉ ବରତି
ଧରମା କହିଲା ଏଇ କଥାସବୁ
ଗୁପତ ରଖିବ ସରବେ
କେହି ଜାଣିନାହିଁ ଲମ୍ଫ ଦେବି ମୁହିଁ
ଦେଉଳରୁ ନଦୀ ଗରଭେ
କୂଳ ଭାଇଙ୍କୁ ସେ ପ୍ରଣତି ଜଣାଇ
ଚଢ଼ିଲା ଦେଉଳ ଶିଖରେ
ଅପଲକ ନେତ୍ରେ ଦେଖୁଥିଲେ ସର୍ବେ
ବଚନ ନାହିକା ମୁଖରେ
ଶିବେଇର ଦେହେ ପ୍ରାଣ କିଛି ନାହିଁ
କାହାକୁ ନ ହେଲା ବିଦିତ
ନୟନରୁ ତା'ର ଝର ଝର ହୋଇ
ଲୋତକ ହୁଅଇ ସ୍ରବିତ
ସକଳେ ଦେଖିଲେ ଦେଉଳର ଚୂଳେ
ଉଭା ହୋଇ ଏକ ମୂରତି
ନିମିଷ ଭିତରେ ଲିଭିଗଲା କାହିଁ
କେହି ନ ଜାଣିଲେ ଝଟତି
ଚନ୍ଦ୍ରଭାଗା ଜଳେ ଶୁଭିଲା ଲମ୍ଫର
ଭୟଙ୍କର ଏକ ନିନାଦ
ବାରଶହ ଶିଳ୍ପୀ କର୍ଣ୍ଣ କୁହରକୁ
କରିଦେଲା ତାହା ସ୍ତବ୍‌ଧ
ଦେଖିଲେ ସକଳେ ଫେରାଇ ନୟନ
ସିବେଇର ନାହିଁ ଚେତନା
ଅନ୍ତର ଭିତରେ ଭୋଗୁଥିଲା ସେ ଯେ
ଭୀଷଣ ବିରହ ଯାତନା ।



# ଆହେ ଶିଳ୍ପୀ

କୁମୁଦିନୀ ଦେବୀ

ମୂକ ମରମର ନୀରବଭାଷା
ଲୁହାର ନିହଣ ତଳେ,
ଲୁହ ଲହୁ ଆଉ ବିଳାସ ଆଶା
ଚନ୍ଦ୍ରାତପର ତଳେ
ବିଶ୍ରାମ ଯେବେ ନେଲା,
କହ ହେ ଶିଳ୍ପୀ କଳ୍ପନା ତବ ମୌନ କିପରି ଥିଲା ? ।୧ ।
ଘନ ବନବୀଥି ରସାଳ ମୁକୁଳ
ଚାନ୍ଦ ବଉଦର ଖେଳେ
ଧଳା ବକମାଳା ନୀଳ ସମୁଦ୍ରର
ଊର୍ଦ୍ଧ୍ୱେ ଆନନ୍ଦେ ଚଳେ
ଝୀନ ପଣତର ତଳେ
ଲଜ୍ୟା ମଧୁର ତନ୍ଦ୍ରା ବଧୂର
ନୟନ ପଲକ ଦୋଳେ ।୨ ।
ନୃତ୍ୟର ତାଳେ ନଟ ନଟୀ ଯହିଁ
ଚପଳ ଛନ୍ଦ ତୋଳି
ବିଶ୍ୱ ନୟନେ ମୁଗ୍ଧ ଖିଆଲ
ନିମିଷେ ଦିଅନ୍ତି ବୋଳି
ସେଇଠି ତମେ କି ଥାଅ ?
ପରାଣ ପରଶି ଦର୍ଶକ ହାତୁ
ଶ୍ରଦ୍ଧା ଅଞ୍ଜଳି ନିଅ ।୩ ।

■

# ଧର୍ମପଦ

ଡକ୍ଟର ବିବେକାନନ୍ଦ ପାଣିଗ୍ରାହୀ

ପଥରକୁ ଜୀବନ୍ୟାସ ଦେଇ
ଭାସ୍କର୍ଯ୍ୟରେ କଳାର ଫସଲ ବୁଣି
ନିହାଣରେ ଚିତ୍ର ଆଙ୍କେ
ସୁକୁମାର ଶିଳ୍ପୀ ଧର୍ମପଦ
ଏ ଜାତିର କଳା ବିଶାରଦ ॥

ଶିଳ୍ପୀକୁଳ ରକ୍ଷା ପାଇଁ
ଅକାଳରେ ଆତ୍ମାହୁତି ଦେଇ
ସକାଳର ଫୁଲ ପରି ଝରିପଡ଼େ
ଅକାରଣେ କଳାପ୍ରାଣ ଜାତିର ଗୌରବ
ଅପାସୋରା ଅମର ସହିଦ ॥

ଅଭିଶପ୍ତ ଧର୍ମପଦ ଓଡ଼ିଆ ଶିଳ୍ପୀର ଗର୍ବ
କିମ୍ବଦନ୍ତୀ ନାୟକ ସେ
ଅମଳିନ ଦୀପ୍ତ ଜ୍ୟୋତିରେଖା
କୋଣାର୍କର ନିକାଞ୍ଚନ ବେଳାଭୂମି
ଝାଉଁ ଜଙ୍ଗଲର ଶାଖା ପତ୍ର
ଶୁଣାଏ ଯା କରୁଣ ଗୀତିକା ॥

ଅର୍କକ୍ଷେତ୍ର, ପବିତ୍ର କୋଣାର୍କ
କଳାର କୁବେରପୁରୀ
ଏ ଜାତିର ବଡ଼ ବାହାଦୁରୀ
ଯେଉଁଠାରେ ହଜିଯାଏ
ଅସମାପ୍ତ କଳାର କବିତା ॥



# କୋଣାର୍କ

ସୁନୀଲ କୁମାର ପୃଷ୍ଟି

ସ୍ମୃତି ଜରିଆରେ ନିଜକୁ ବୁଝେଇ ପାରିବିନି କେବେ
ତମ ଠାରେ ।
ଅନେକ ତ ଦୁଃଖ ଅଛି ତମେ ନ ରହିବା ପରଠୁ
ହାଡ଼ ତଳେ । ହାଡ଼ ତଳେ ଏବେ ବି ଅଛି ସେ ବଗିଚା
ଯୋଉଠି ନୀଳ ମେଘମାନଙ୍କ ଜରିଆରେ
ଭେଟ ହେବାର ସମ୍ଭାବନା ତିଆରି କରୁଥିଲେ ଦିନେ
ଏବେ ବି ଅଛି ସେ ବଗିଚା ।

କିଛି ଗଛର ପତ୍ର ଶୁଖିଯାଇଚି କେବଳ ।

ତମେ ଚିହ୍ନିପାରିବନାହିଁ ବୋଲି ରକ୍ତରେ ମିଶେଇ ଦେଇଚି
କିଛି ପୁରୁଣା ପବନ
ବାସି ଚିଠି ଗୁଣ୍ଡ
ଭୋକବେଳେ ଫୁଟୁଥିବା ଫୁଲ
ସ୍ୱପ୍ନରେ କଲ୍‌ବଲ୍ ମୋ' ଆଖିର ହାହାକାର ।
ସ୍ମୃତି ଜରିଆରେ ଏ ସବୁ ପହଞ୍ଚିବ ନାହିଁ
ତମ ଠାରେ ।
ମୁଁ କ୍ଷୟ ହେବା ଜରୁରୀ ।

କେତେଦିନ ଆଉ ସେଇ ମେଘ, ସେଇ ପବନ
ସେଇ ଝଡ଼ି ପଡୁଥିବା ପଳିତ ପତ୍ର

ପଥର ମୂର୍ତ୍ତିର ନାକ, କାନର ଆଘ୍ରାଣ, ଶ୍ରବଣ ସାଇତିପାରିବି !

ଯାହା ଅନୁମାନ ମୋର ଠିକ୍ ଯେହେତୁ
ତମେ ଫେରିବ ନାହିଁ ।

ଯେମିତି ଫେରିଲା ନାହିଁ ନୀଳମେଘ
ଅନ୍ଧାରର ଅତ୍ୟାଚାର, ଓ ସ୍ୱପ୍ନର

ହା-ହା-କାର ।

କେଉଁଟା ସତ ଏଥର କୁହ ?

ତମେ କେବେ ନ ଫେରିବା
ନା-
ମୁଁ ଭାଙ୍ଗି ଧୂଳିସାତ୍ ହେବା ।



# କୋଣାର୍କ

ସୁନୀତି ମୁଣ୍ଡ

ହେ ସୂର୍ଯ୍ୟ !
ଦେଖି ପାରୁଛ କି
ତୁମ ଭଗ୍ନ କୋଣାର୍କ
ଓଡ଼ିଆ ପୁଅର
କଂଚା ରକ୍ତର କାରିଗରୀ ।
ଶିରାର ସାଂଦ୍ରତା ନେଇ
ତିଆରି ଥିଲା ଯେ
ତୁମ ପାଇଁ ରଥ,
ତା' ହାଡ଼-ମାଂସର ଉଷ୍ମତାରେ
ଗଢ଼ିଥିଲା ସ୍ୱର୍ଣ୍ଣ ସିଂହାସନ
ନା' ତୁମେ ଆସିଲ,
ନା' ଦେଖିଲ ଥରେ ।

ନିର୍ମାୟା ଓଡ଼ିଆ ଶ୍ରମିକ
ତା' ନିଷ୍ପାପଣରୁ କଣ ବା ପାଇଲା ?

ସେ ତ ଏତକ ବି ବୁଝିଲା ନି
ତୁମେ ଚିରକାଳ ସ୍ୱର୍ଗର, ଶୂନ୍ୟତାର
ତୁମେ କେବେ ବି ନୁହଁ
ଧୂଳିର, ମାଟିର ।

ଦେଖ ସୂର୍ଯ୍ୟ !
ତୁମ ପାଇଁ ତିଆରି ରଥ
ଆଜି କେବଳ ଗୋଟେ ଦୃଶ୍ୟ
ଯା'ର ନାଁ
ଭଗ୍ନ କୋଣାର୍କ !



# ଧର୍ମପଦ

ତୁହିନାଂଶୁ ରଥ

ଯାଉଛୁ କୁଆଡ଼େ
କୋଣାର୍କ ନା କାରାଗାର ?
କେହି କହିଲେ ନାହିଁ
ସିଂହାସନର ପଂଝା ଭିତରୁ
ମୁଂଡ ମୁକୁଳେ ନାହିଁ
ଦେଉଳର ମୁଣ୍ଡି ମାରି
ସମୁଦ୍ରରେ ଲମ୍ଫ ଦେଲେ
ଶତବାର;
କେହି କହିଲେ ନାହିଁ
ସାଆଁତିଆ ଖିଆଲର
ଜହ୍ନ ଭିତରେ
ତୋ ବାପା ଏକ
ମଲା ମୃଗର ଛବି ।

ବାରଶ ବଢ଼େଇଙ୍କ ନିହାଣର
ଆବାଜ୍ ଭିତରେ
ତୁ ପୋତି ହୋଇଥିବା
ଆର୍ତନାଦର ରକ୍ତକରବୀ ।
ଯା...

ଯିବୁ ତ ଯା, ସଚିବାଳୟ,
ଫାଇଲ୍ ଭିତରେ
ସରକାରୀ ନିର୍ଦ୍ଦେଶନାମାର
ନମ୍ବର ହୋଇ ଝୁଲୁଚି
ତୋ ବାପାଙ୍କ ମୁଣ୍ଡ ।
ପାରିବୁ ତ ଫାଇଲ୍‌ର
ଫିତା କାଟିଦବୁ
ନିହାଣ ମୁନରେ,
ସିଂହାସନର ଫଂଝା ଭାଙ୍ଗିଦବୁ
ମୁଦ୍‌ଗର ମାଡ଼ରେ ।
ମୁକୁଳି ଆସିବା ବାପାକୁ
କହିବୁ :
ବାରବରଷର ବରକୋଳି ମୁଁ
ଧର୍ମପଦ, ତୁମ ପୁଅ,
ମତେ ଏବେ କୋଳକୁ ନିଅ
ଗଢ଼ି ହୋଇଯିବ କୋଣାର୍କ ।



# ମନ୍ଦିର୍ ଭାଙ୍ଗିବାର୍ ଦୃଶ୍ୟ

ବିନୋଦିନୀ ପାତ୍ର

ମନ୍ଦିର ଭାଙ୍ଗିବାର ଦୃଶ୍ୟ
କେବେ ଦେଖିଚ ?
ଦେଖିଚ, ତା' ଦେହର
ମିଥୁନ ମୂର୍ତ୍ତି କିପରି
ଲୁଣି ହାଓ୍ୱାରେ ଲିଭିଯାଏ ?
ଚୂରି ଚୂରି ଯାଉଥାଏ
ଅନନ୍ୟ କୁଟୀକମ ।
ଦେଖିଚ କି ?
ତା ଦେହରେ ଲେଖା
ବାଘ, ସିଂହ, ହାତୀ କି
ହରିଣମାନେ
ଭାଙ୍ଗିଯିବା ବେଳର ଦହନ ।
ମୁଁ ଜାଣେ ।
ମୁଁ ଦେଖିଚି ମନ୍ଦିର ଭାଙ୍ଗିବାର
ବିଘଟନ ।
ଉଦାସ ଦୃଷ୍ଟିର ଅନ୍ତରାଳେ
ଗର୍ଭଗୃହ କିପରି ହୋଇଯାଏ
ଶୂନ୍ୟ, ପ୍ରାଣହୀନ ।

ବିରଳ ରାଧାମୂର୍ତ୍ତି କି ନାରାୟଣ,
ସବୁକିଛି ଚୋରୀ ହୋଇଯାଏ ।
ଅୟୁତ ଭକ୍ତଙ୍କ ଆକୁଳତା
ଜଳଚକ୍ରୀ ପରି ଆକାଶ ଛୁଏଁ ।



# କୋଣାର୍କ

ଜ୍ୟୋତ୍ସ୍ନାମୟୀ ତ୍ରିପାଠୀ

ଆଲୋକିତ ଦିଗନ୍ତରେ
ସାତରଙ୍ଗ ବର୍ଣ୍ଣର ବର୍ଣ୍ଣାଳୀ
କିଚିରିମିଚିରି ଶୁଭେ
ନାନାଜାତି ପକ୍ଷୀଙ୍କ କାକଳି
କିଏ ସେଠି ମୂର୍ତ୍ତିଭଳି ଉଭା
ଝଟକୁଛି ତା' ଜ୍ୟୋତିରେ ପ୍ରସ୍ଫୁଟିତ ଗଭା
କୋଣାର୍କର ନଟୀ ଅବା ଜୀବନ୍ତ ପ୍ରତିମା
ଅଶ୍ରୁବିନ୍ଦୁ ଟଳମଳ ଶୋଷହୀନ ସୀମା
ମାରନା, ମାରନା ମୋତେ କଟାକ୍ଷଶର
ବିନ୍ଧନା, ବିନ୍ଧନା ମୋତେ ଶବ୍ଦରତୀର
ମୁଁ ଧର୍ମପଦ, ମୁଁ ଚନ୍ଦ୍ରଭାଗା
ମୁଁ ବିଶୁମହାରଣା
ସ୍ୱୟଂଦ୍ରଷ୍ଟା, ସ୍ୱୟଂଭୁ, ନୈମିଷ୍ୟାରଣ୍ୟ
କିମ୍ବଦନ୍ତୀରେ ଭରା ବିଗତ ଯୌବନ ।



# ବିଶୁ ମହାରଣା

ସୁଶାନ୍ତ କୁମାର ଷଡ଼ଙ୍ଗୀ

ତୁମ ଘରୁ ଏ କ'ଣ ଶୁଭୁଛି
ଅବରୁଦ୍ଧ ମନ୍ଦିର ଭିତରୁ ନିହାଣର ଶବ୍ଦ !
ଗୁଣ୍ଡିଚାରାଣୀ ନିର୍ଦ୍ଦେଶରେ ତିଆରି ଚାଲିଛି ଦାରୁ ଦିଅଁ ।

କାହାର ଦୁଃଖ ଦେଖିବାକୁ
ଆଖି ନ ଥିଲେ ନ ଥାଉ,
ଶୁଣିବାକୁ କାନ ନ ଥିଲେ ନ ଥାଉ,
ପାଦ ନ ଥିଲେ ନ ଥାଉ,
କା'ର ଚିନ୍ତା ନାହିଁ ।
ସେଥିପାଇଁ ଆମେ ପଙ୍ଗୁ ଅଥର୍ବ ବଧୀର
ଆଉ ଠିକ୍ ଯେଇମିତି ଓଡ଼ିଆ ଠାକୁର !
ମଝି ଓରାରେ ବାଉଁଶ ଦେଇଥିଲୁ
ଛପର କରିଦେଲୁ ଘର ।
ମୁଁ ଏବେ ସମ୍ରାଟ
ଅଥଚ ନିତି ରାତ୍ର ଅର୍ଦ୍ଧ ପ୍ରହରେ
ଆତ୍ମା କାହିଁକି କାନ୍ଦେ ଛଣ ଛାତ ତଳେ ।
ତୁମର ହାତ ତିଆରି କବାଟ
ଆପେ ଖୋଲେ ନଚେତ୍ କା'ର ଆବାଜ୍‌ରେ ।
ହେଇ ଦେଖ ଆସିଛି ଘରବାଲା ।
ଉଠ ଆଉ ଚାଲ ।

ବାରଶହ ବଢ଼େଇ ପାଇଁ ବିଶୁ
ଧର୍ମକୁ ଠେଲି ଦେଲୁ, ବଳି ଦେଇଦେଲୁ
କିନ୍ତୁ ଇତିହାସର ପୃଷ୍ଠା ନରସିଂହର
ତୋ ପାଇଁ ନାହିଁ ଗୋଟିଏ ଅକ୍ଷର ।

ତାତିଲା ଲୁହାକୁ ପିଟୁଛି ହାତୁଡ଼ିରେ
ପିଲାବେଳେ ବାପାଙ୍କ ଛାଟିଆ ମାଡ଼
ଆଉ ଏବେ ଭାତି ନିଆଁରେ ଅଙ୍ଗାର ମେଳରେ ।
ତଥାପି ମୋ ଚିନ୍ତା ନାଇଁ ।
ଥରୁଟେ ଲଗେଇଦେ ନନ୍ଦିଘୋଷ ରଥରେ
ଚକକୁ ଯୋଡ଼ିଦେ ଅଖରେ
ତାପରେ ଦେଖ୍ ମୁଁ କେମିତି ଧାଉଁଛି
କାନ୍ଧରେ ଦାରୁବ୍ରହ୍ମକୁ ଧରି ।
ଚାରିଆଡ଼ କମ୍ପୁଛି ଘର୍ଘର ନାଦରେ
ବଡ଼ଦାଣ୍ଡ ପଡୁଛି ଉଛୁଳି ।

ଶରୀର ମୋ ଭାଗବତ ଘର ।
ତା ଭିତରେ ଜଗନ୍ନାଥ
ବାର ଘଣ୍ଟା ତେର ଯାତ
ନିତି ନିତି ନବ କଳେବର ।



# ଏକା ଏକା ଧର୍ମପଦ

ନୀଳାଦ୍ରିଭୂଷଣ ସାମଲ

ବୟସର ସମୁଦ୍ରରେ ଢେଉଭାଂଗେ
ଯୌବନ ଲହଡ଼ି,
ପ୍ରଣୟ ନଦୀର ଶାଂତ ଜଳରେ
ହସେ ଯୌନତା ଭଉଁରି;
ନାରୀର ଦୁଇ ଇଞ୍ଚ ଶରୀରରୁ
ମପାଯାଏ ସତୀତ୍ୱର ସଂଜ୍ଞା,
ଓଠରୁ ନିସୃତ ମିଛ ଶବ୍ଦର କାଉଁରୀ କାଠିରେ
ଇଚ୍ଛାମତେ ମେଣ୍ଟାବନେ ହୃଦୟର ଭାଷା ।

ନାରୀ ଏକ ସୂର୍ପଣଖା ନାରୀ ଶିହରଣ
ନାରୀ ଏକ ସ୍ୱପ୍ନ ଏଠି ନାରୀ ବି ବିଷାଦ,
ଠକିଯାଇ ଶୋଇପଡ଼େ ପୁତ୍ରମଣି ମୋର
ଧର୍ମପତ୍ନୀ ସ୍ୱପ୍ନଦେଖେ ମଳୟାୟିତ ସୁବର୍ଣ୍ଣ ଶରୀର ।
ମୁଁ ବେକୁବ୍ ଧର୍ମପଦ କୋଣାର୍କରେ ମୁଣ୍ଡି ମାରୁଥାଏ
'ସମୁଦ୍ରକୁ ଝାସ ଦେବା' ଭାଗ୍ୟ ମୋର ଭୁଲି ଯାଇଥାଏ ।



# କୋଣାର୍କ

ଗୀତାରାଣୀ ଆଇଚ୍

ଯେଉଁ ଚେତନାର ଊର୍ଦ୍ଧ୍ୱରେ ତୋଳେ
ସ୍ନିଗ୍ଧ ସୁଷମା ରାଶି । ଲହଡ଼ି ତୋଳାର
ଅର୍ଦ୍ଧ ଆକାଶେ ନିଭାଏ କଳଙ୍କ
ଘୋର ପରିତ୍ରାଣ, ପଥ ପ୍ରଭାତରେ ଛିନ୍ନ
ମସ୍ତକ ଦେଳାୟମାନର ସିଡ଼ି ତଳେ ରହି
ଆପଣାର ସ୍ୱାର୍ଥେ ଭାଙ୍ଗି ଦେଲା ତା'ର
ଶିରିରୁ ଶିରିପା, କେଉଁ ଦୂର ସନ୍ଧି
ଏ ଜାତିର, ଟେକ କେବେ ଯାଇଛି କି ନିଭି
ଲିଭି ନାହିଁ କେବେ ଲିଭିବାର ନାହିଁ ।
ଅଜଣା ଆଶଙ୍କା ଯଦିବା ଚେତନା
ତଥାପି ରହିଛି ଭଙ୍ଗା ପାଷାଣେ
ଲେଖି ରଖି ତା'ର ସ୍ୱର୍ଣ୍ଣାକ୍ଷରର
ଇତିହାସ ବୁକେ ଅନେକ ଶାଣିତ
ରକ୍ତ ରଞ୍ଜିତ ଧାର ପରେ ଲେଖା
ବିଶ୍ୱ ମହିମା ଗାଥା କହିପାରିବ କି
କେବେ କେଉଁ ଜାତି ଦୃଷ୍ଟି ଏଡ଼ାଇ
ପାରିଛି କି କେବେ, ଏତହୁଁ ଲାଳସା ।
ଆଢ଼େଇ ଦେଖିଛ ମହାମାନବର
ମୁଖ ନିଃସୃତ ଚେତନା ସଂଗ୍ରହ ଚିନ୍ତା ।

ଗାଈଆଳ ଟୋକା ବିଚାର ପ୍ରବଣ
ମହାଚେତନାରେ ମହାନୁଭବର ଛବି ।
ଗୁରୁଗମ୍ଭୀର ଗରଜନ ତୋଳି ଟିକି
ହୃଦୟରେ ବିରାଟ ମୀମାଂସା ଆଶା ।
ଆଲୋକର ଦୂର ଦିଗ୍‌ବଳୟେ ଏବେ ବି
ନାଚୁଛି । କଳା କଉଶଳ ଛିଟିକି ପଡୁଛି
ଲୋଭ ସମ୍ବରଣ କରିପାରୁନାହିଁ
ହାରିବି ହାରୁଛି ତଥାପି ତଥାପି
ହାତ ଉଠାପଣେ ଓହରି ଯାଉଛି
ହରି ନେଉଅଛି ଅରୀ । କେଉଁ
ସ୍ରୋତରେ ଢେଉ ପିଟିପିଟି
ଜାତି ଇତିହାସ, ଲେଖି ଦେଇଗଲା
ଅରୁଣିମାର ଛାଇ ତଳେ ତଳେ
ଶୁଦ୍ଧ ନିକିତି କଷଟି ପଥର ଚିହ୍ନ ।
ସେଇ ଶତାବ୍ଦୀରୁ ଏ ଯାଏଁ ଦେଖୁଛ
ଅନ୍ଧାର ଆଲୋକ ଗହିରୀ ମଥାର ଛବି ।
ଭଙ୍ଗା ମନରେ ଭଙ୍ଗାଗଢ଼ାର କ୍ଷଣଭଂଗୁର
ଆଗମ, ନିଗମ ଉଠାପକା ଖେଳ ଖେଳୁଆଡ଼ର
କରାମତିଠାରୁ ପ୍ରତିବିମ୍ବିତ ଅନୁକୂଳ ଆଉ
ପ୍ରତିକୂଳର ନୟନ ନିଶାଣ ଛବି / କାଳ ବକ୍ଷରେ
ଭାସି ଯାଉଥିବା ପତର ଖଣ୍ଡିକ କିସ ବା
ଉପମା ଦେବି ?

ଶୂନ୍ୟତା ଗ୍ରନ୍ଥି ଅନୁଭବ ନେଇ ମୁଠା ମୁଠା
ତୁମ ସୁପ୍ତ ଚେତନା ଜାଗରିତ କରି
ଦେଖୁଥାଉ ତୁମ ଚିରଜାଜ୍ଜ୍ୱଲ୍ୟମାନ
ମହତ୍ତ୍ୱର ଅବିଲେଖ ଶିଳାଲେଖ ।

କେତେଧାରା ନେଇ ଆସିଛ ଆସିବ ।
ଅବା ପ୍ରଭାତର ବାରିଧାରା ତଳେ
ରାକା ରଜନୀର, ଅନୁପମ ପଥଦର୍ଶ ।
ତୁମ ଦିବ୍ୟ ଚେତନା ତଳୁ ଅନୁଭବି
ସାଉଁଟି ନେଉଛି ମିଠା ମିଠା ଅନୁରାଗ
ଅନୁରାଗ ସତେ ଆବେଗପଣରେ
ଲେଖି ଦିଅନ୍ତା କି ମୋ ଦେହର ଅଂଶ
ପ୍ରତି ସତ୍ତାରେ ଅସ୍ଥିରତାର ଜୁଡ଼ାରୁ ଫିଟାଇ
କୋମଳ ଗାନ୍ଧାର ରାଗରେ ଜଡ଼ିତ
ଶ୍ୟାମଳ ସତ୍ତାର ସ୍ଥିର କମ୍ପନ
ମୁଗ୍ଧ ଚେତନାଟିଏ ।



# ଆହେ ଶିଳ୍ପୀବର

ପ୍ରେମଲତା ସାମଲ

ଆହେ ଶିଳ୍ପୀବର ଥିଲ ଅତୀତର
ଏ ଦେଉଳେ କାରିଗର
ତୁମରି ହାତରେ ଅଧାଗଢ଼ି ମୋତେ
ଛାଡ଼ିଦେଇ ଚାଲିଗଲ ।୦ ।
କେତେ ଯୁଗଧରି ଏଇ କୋଣାରକେ
ପାଷାଣୀ ନାୟିକା ହୋଇ
କେତେ ଯେ ଫଗୁଣ ଯାଇଛି ଏ ଦେହେ
ଶିହରଣ ମୋର ନାହିଁ ।
ଘେନ ତୁମେ ଆଜି ଏଇ ନର୍ତ୍ତକୀର
କୋଟି କୋଟି ମୋ ଜୁହାର ।୧ ।
ଛନ୍ଦେ ଛନ୍ଦେ ଆଜି ନାଚିତ ପାରୁନି
ବାନ୍ଧି ଦେଇ ନାହଁ ନୂପୁର ।
ଶୃଙ୍ଗାରର ଶତ ମୂର୍ଚ୍ଛନା ତୋଳନ୍ତି
ତାଳବିହୀନ ମୋ ସୀତାର ।
ଚକ୍ଷୁଦାନ ଦେଲ କଜ୍ଜଳ ଦେଇନା
ପ୍ରୀତିନାହିଁ ଚାହାଣିର ।୨ ।
ଡେଇଁ ମୁଁ ଯାଇନି ଡେଇଁ ମୁଁ ପାରୁନି-
ଅଲିଭା ସେ ଦାଗ ଲିଭେନା ।
କୋଳାହଳେ ଖାଲି ସତ ଯାତନାରେ
ତଥାପି ମୁଁ ମରିପାରେ ନା ।
ଅସରନ୍ତି ଯୁଗ ସରିଯାଏ ଆଜି
ଆଶାୟିତ ନର୍ତ୍ତକୀର ।୩ ।



# ଆଉ ଏକ ଧର୍ମପଦ

ସନ୍ତୋଷ କୁମାର ସାହୁ

କମନୀୟ ରୂପ ଓ
କୋମଳ ହୃଦୟଟିଏ ଦେଇ,
କିଏ ସେ ବିନ୍ଧାଣି
ପଥରରେ ନାରୀକୁ ଗଢ଼ିଥିଲା ?

କେଉଁ ଶିଳ୍ପୀ କେଡ଼େ ଯତନରେ
ସ୍ତନକୁ ତା' ତୀକ୍ଷଣ ନିହଣରେ
ଆଙ୍କିଥିଲା ।

ପଥର ଯୋନିରେ
କମ୍ପନର କଳା ଖୋଳିବାକୁ
ପଥର ଲିଙ୍ଗର ସ୍ପର୍ଶ ଦେଇଥିଲା ।

ପଥର ନାରୀକୁ
ପଥର ପଥରେ
ଗର୍ଭ କଲା ଜାତ,
ବିଶୁ ମହାରଣା
ଅପେକ୍ଷାରେ
ହଜେଇଛି ନିଦ,

ହେ, ପଥରର ନାରୀ
କେବେ ପ୍ରସବିବୁ
ଆଉ ଏକ ଧର୍ମପଦ ?

■

# ଲୁହର କୋଣାର୍କ ମୁଁ

ମମତାମୟୀ ଚୌଧୁରୀ

ଲୁହର କୋଣାର୍କ ମୁଁ
ଅବା କାରୁକାର୍ଯ୍ୟ,
ଅଧାଗଢ଼ା ନିର୍ବାକ କନିଷ୍କ,
କେବେ ମୁଖଶାଳା
କେବେ ଇତିହାସ ।

ନିହାଣର
ତୀକ୍ଷ୍ଣ, ଶିଆଣି ମୁନରେ
କେବେ କଥାକୁହା ଏକ ଛବି,
କେବେ କେଉଁ ପଥର ଗୁମ୍ଫାରେ
ଅବୁଝା, ଅଲିଭା ଲିପି ।
କେବେ କୋଣାର୍କ ମୁଁ
କେବେ ତ କନିଷ୍କ
କେବେ ବାରଶ ବଢ଼େଇ
କେବେ ସ୍ଥପତିର ଟେକ ।

କେବେ ମୁଁ ବାରଟି ମାସର
ବାରଶ' ଇଚ୍ଛାର ଲେଖ,
କେବେ ସାତ ଜନ୍ମ
ତମ ସହ କାଟିବାର ମିଛ ।

କେବେ କୋଣାର୍କ ମୁଁ
କେବେ ତ କନିଷ୍କ
ଥରେ ଆପଣାର ଇଚ୍ଛାରେ
ତିଆରି ମନ୍ଦିର ନହେଲା ନାଇଁ
ହେବାପାଇଁ ଦିଅ ମୋତେ
ମନ୍ଦିରର ଦୀପ ।



# ମୂକ ହେଲା ମୁଖର

ମନୀନ୍ଦ୍ରନାଥ ବୋଷ

କେତେ କାଳୁ ପଡ଼ିଥିଲା ହୋଇ ସେ'ତ ପାଷାଣ
ଦଇବର ଆଶିଷରେ ଦେଖି ହେଲ ମଗନ ॥
ଶୂନ୍‌ଶାନ ନିରିଜନ ସାଗରର ବେଳାରେ
ପଡ଼ି ରହି ସଢୁଥିଲା କାଳର ସେ ଚକ୍ରରେ ॥

ମୂକ ସବୁ ପ୍ରତିମାରେ କଲ ତୁମେ ମୁଖର
ଜୋଛନାରେ ଫୁଟାଇଲ ନୂପୁରର ଝଙ୍କାର ॥
ସଙ୍ଗିନୀ ରଙ୍ଗିନୀ ସବୁ ରୂପନେଲେ ସଭିଁଏ
ସଙ୍ଗୀତରେ ମୁଖରିତ ବାଲୁବେଳା ଭୂମି ଏ ॥

ନିଶୀଥର ନିରିଜନେ ଫିଟିଗଲା ଘୁମର
ଏକୁ ଏକ ବାଳା ସବୁ ହେଲେ ଚଳ ଚଞ୍ଚଳ ॥
ରୂପର ସାଗରେ ଏବେ ଉଠେ ରୂପ ଲହରୀ
ମୂକ ମୁଖେ ପାଷାଣର ଫୁଟିଲା ଗୋ ଚାତୁରୀ ॥

ଯାଦୁକର ଥିଲ ତୁମେ, ଭାଷା ଦେଲ ପାଷାଣେ
ନାହଁ ତୁମେ, ଥିବ କିନ୍ତୁ ଯୁଗାନ୍ତର ସ୍ମରଣେ ।



# କଳିଙ୍ଗ ଶିଳ୍ପୀ

ସୁବାସ ଚନ୍ଦ୍ର ତ୍ରିପାଠୀ

ନିହାଣ ମୁଗୁରର
କିଏ ସେହି କାରିଗର
କିଏ ସେହି କଳିଙ୍ଗ ଶିଳ୍ପୀ
ଗଢ଼ି ଦେଇ ଗଲେ ପଥର ଗାତ୍ରରେ
କେତେ ଆଶ୍ଚର୍ଯ୍ୟର ସୌଧ
ଅଭୁଲା ସ୍ମାରକୀ
କଥାକୁହା ପାଷାଣର ମୂର୍ତ୍ତି
ଯୁଗ ଯୁଗ ପାଇଁ
କେତେ ଅମର କୀର୍ତ୍ତି ।।
ଶିଳ୍ପୀର ଅନନ୍ତ କଳ୍ପନା
କେବଳ କଳ୍ପନା ଭିତରେ ନ ଥାଇ
ବାସ୍ତବତାର ପରିଚୟ ଦେବା ପାଇଁ
ତା'ର ସେହି ଅଗଣିତ
ପାଷାଣର ଜୀବନ୍ତ ପ୍ରତିମୂର୍ତ୍ତି ସବୁ
ଟାଣିନିଏ ଦର୍ଶକର ମନକୁ
ମନ ପକାଇ ଦେବାକୁ
ଏ ଜାତିର ହଜିଲା ଅତୀତକୁ ।।

## ୨୮୪ କବିତା  କୋଣାର୍କ

ପୁରୀ କୋଣାରକ ଭୁବନେଶ୍ୱର
ମନ୍ଦିର ଗାତ୍ରର ଦୁର୍ଲ୍ଲଭ କାରୁକାର୍ଯ୍ୟ
ଆକର୍ଷିତ ଠାଣି ଓ ଭାସ୍କର୍ଯ୍ୟ
ରାଜରାଣୀ ମନ୍ଦିରର
ଅପୂର୍ବ ନିର୍ମାଣ ଶୈଳୀ
ବାରବାଟୀ ଦୁର୍ଗର ଭଗ୍ନସ୍ତୂପ
ଆଉ ଯେତେସବୁ
ପ୍ରତ୍ନତାତ୍ତ୍ୱିକ କୀର୍ତ୍ତିରାଜି
କଳିଙ୍ଗ ଶିଳ୍ପୀର
ଅଲିଭା ପ୍ରତିଭାକୁ
ଚିହ୍ନାଇଦିଏ ଆଜି ।।



# ହେ ! କୋଣାର୍କ

ଆଲୋକ ସ୍ୱାଇଁ

କୋଣାର୍କ !
ଆଖି ଲଙ୍ଗଳା କରି ଦେଖିଲି ତମକୁ
ଦେଖିଲି ଆପାଦ ମସ୍ତକ
ତମ ଦେହସାରା ମୋ ପ୍ରିୟତମା
ବାସ୍ତବତାର ନଗ୍ନରୂପ
ସବୁଆଡ଼େ ସ୍ମୃତିର ଇତିହାସ ।
ଶିଳ୍ପୀ !
କେଉଁ ବାହାନା ବା ଚାଲାକିରେ
ପ୍ରେମକୁ ତିଆରିଛ
ରୁକ୍ଷ ପଥର ଦେହରେ ନିହାଣ ହାତୁଡ଼ି ଧରି,
ଯୁଗ ଯୁଗ ତପସ୍ୟାର
ରୂପ ଦେଇଛ ତମ ଗୋପନୀୟତା ।
ହେ ଶିଳ୍ପୀ !
ତମେ ଚୁମିଛ
ଝାଳ ଆଉ ପଥର ଗନ୍ଧରେ
ଝୁମିଛ ନିଶାର୍ଦ୍ଧରେ-
କୋଳେ ଗୋଳକରି ପ୍ରିୟାକୁ ତମର ।
ସବୁ ସ୍ମୃତିର ରଙ୍ଗ ବୋଳିଛ
ଶବ୍ଦର ତାଳେ ନୂପୁର ଛନ୍ଦେ ବିଭୋର ହୋଇଛ,
ଦିନରାତି ଖରାବର୍ଷା ଶୀତକୁ ଏକାକାର କରିଛ ।

ଏବେ ପ୍ରିୟାକୁ ତମର
ଏହା କରି ଯାଅନା ଶିଳ୍ପୀ
ନିଷ୍ଠୁର ହୁଅନା;
ତମେ ଗଲେ ସେ ଏକାକିନୀ, ଅପୂର୍ଣ୍ଣ
ଭାଙ୍ଗି ପଡ଼ିବ ସେ... ।
ପ୍ରଚଣ୍ଡ ଅଭିମାନ ତେଜରେ
ସ୍ୱାଭିମାନ ତମ କ୍ଷୁଣ୍ଣ ହୋଇଯିବ
କାଳିମା ଲାଗିଯିବ ତମ ନିହାଣ ମୁନରେ ।
ହେ କୋଣାର୍କ !
ହଜାର ହଜାର ପ୍ରେମିକଙ୍କ ପ୍ରେମିକା ତୁ
ତୋର ଜନ୍ମ ଅଛି, ମୃତ୍ୟୁନାହିଁ
ତୁ ମୋ ଜୀବନର ଅଣଲେଉଟା ଫର୍ଦ୍ଦ ।



# ସମୀକ୍ଷା ଭଗ୍ନ କୋଣାର୍କର୍

ଡ. ରାଜନ କୁମାର ସାହୁ

ଛଳନାର ଅନ୍ତରାଳେ, ଏଠି ଖାଲି
ଖଳମତି ମନ୍ଥରାର କୁଟ ।
କିଏ ବା କହିବ ଏଠି, ପ୍ରଭାତରୁ ରାଜାପୁଅ ରାଜ୍ୟଛାଡ଼ି
ଅନାୟାସେ ନିର୍ବାସିତ ହେବ ?
କୈକେୟୀ କାନ୍ଦିନି ସିନା,
ଅଯୋଧ୍ୟାତ କାନ୍ଦିଥିଲା ରାଜାପୁଅ ଲାଗି ।
ଅନାମିକା କାନ୍ଦୁଥିଲା, ଫେରାଇ ଆଣିବ ବୋଲି ଅତୀତ ଗୌରବ
ସୂର୍ଯ୍ୟଦେବ କାନ୍ଦୁଥିଲେ କୋଣାର୍କର ଲାଗି
କୋଣାର୍କ ଭାଙ୍ଗିଛି ସିନା,
ହେଲେ କିନ୍ତୁ ଏ କୋଣାର୍କ ମୂଳରୁ ତ ଭଙ୍ଗା
ଗ୍ରହଣ ଶିଶୁଟି ପରି ବିଭତ୍ସ ଚେହେରା ନେଇ,
ଦିନରାତି ହତାଶାର ଦୀର୍ଘଶ୍ୱାସ ଛାଡ଼େ,
ବଇଶାଖି ତତଲା ଖରାରେ, ଅମାନିଆ ଖଣ୍ଡିଆ ଭୂତଟା
ସୁନାର ସଂସାରେ ପୁଣି କାଳ ରଚିଯାଏ ।
ସେ ବାରଶ ବଢ଼ାଇରୁ ବାରଟି ନାହାନ୍ତି ।
ଧରମାତ କାହିଁ କେତେ ଦୂରେ !
ନବଗ୍ରହ ମୂରତିରୁ ତିନିଟି ଆସନ୍ତି
ବଡ଼ଦାଣ୍ଡେ ପ୍ରତିଦିନ ବାଇଣା କରନ୍ତି ।

କାଙ୍ଗାଳୀ ପିଞ୍ଜରା ବହି
ପ୍ରେତାତ୍ମା ଏଠି ସବୁ ଚିତ୍କାର କରନ୍ତି
ସଞ୍ଜ ନ ହେଉଣୁ ଏଠି, ଭେରଣ୍ଡାର ହୁକେ ହୋ ରଡ଼ି
ଦାଣ୍ଡ ଦ୍ୱାରେ ଠାକୁରାଣୀ ପହଡ଼ ଭାଙ୍ଗନ୍ତି ।
ଦଶଟା ବାଜିଲେ ଏଠି ବଇଠକ ବସେ,
ବକ୍ତାମାନେ ବଖାଣି ଚାଲନ୍ତି,
ଶ୍ରୋତାମାନେ ଯେମିତି ବା ଚିତ୍କାର ଛାଡ଼ନ୍ତି,
ବ୍ୟାଘ୍ରର ପ୍ରସ୍ଥାନ ପରେ ବନରାଜ୍ୟେ,
ସତେ ଅବା ମନେ ହୁଏ ମୃଗୁଣୀ ନାଚନ୍ତି ।
ରାଧା କିମ୍ୱା କୃଷ୍ଣ ନ ଥିଲେ ବି ଏଠି କିନ୍ତୁ ବୃନ୍ଦାବନ ଅଛି
ଅରଣା ମଇଁଷି ପରି,
ତାଳପତ୍ରେ ସଁବାଳୁଆ ରାଜତ୍ୱ କରନ୍ତି ।
ଶାଳବଣେ ବୁଲୁବୁଲୁ କେହି କେହି ବେଳେ ବେଳେ,
କୃଷ୍ଣ ଆଉ ରାଧିକା ସାଜନ୍ତି ।
ଖରା ମଉଳିଲେ ଏଠି, ଗୋଲଟେବୁଲ ବସେ,
ସ୍ୱାଧୀନତା ସ୍ୱପ୍ନ ଆସେ ବିଦେଶୀ କୋଠିରେ,
ସବୁଚେଷ୍ଟା ନିରର୍ଥକ ହୁଏ,
ଦହିବରା ଖାଉ ଖାଉ, ବଡ଼ଭାଇ ଫେଁ କରି ଫିଁକାର ଛାଡ଼େ,
ଡାକ୍ତରଖାନା ପୋଷ୍ଟମର୍ଟମ ଘରେ ।
ଗଣ୍ଡିଟାରେ ଘୋଡ଼ାଟାକୁ ବାନ୍ଧିଦେଇ,
ସୌଦାଗର ଶୋଇ ଯାଉ ଯାଉ,
ଗଣ୍ଡି ଏଠି ଘୋଡ଼ା ଜନ୍ମକରେ,
ଅସୁରୁଣୀ ରାତାରାତି ନଅର ତୋଳାଏ
ସକାଳ ଆସିଲେ ଏଠୁଁ ଉଭେଇତ ଯାଏ ।
ରାତିହେଲେ ଅଫିସରେ ଅମଲା ସାଜନ୍ତି
କାଳି କଲମରେ ଏଠି କାଗଜ ଚଷନ୍ତି

ପିଅନଠୁଁ ଅଫିସର ଯାଏ
ସର୍ବେ ଏଠି ସମାନତା ଧର୍ମ ବଖାଣନ୍ତି
ସର୍ବଧର୍ମ ସମନ୍ୱୟ କରି
ଅମଲାଏ ଦିନରାତି ନୀତି ନିର୍ଦ୍ଧାରନ୍ତି ।
ସତେ ଏଠି ବସନ୍ତ ଆସିବ ?
ପିଞ୍ଜରାହାଡ଼ରେ ଦିନେ ମାଉଁସ ଲାଗିବ ?
ଥୁଣ୍ଟା ବରଗଛେ ଦିନେ ପତ୍ର କଅଁଳିବ ?
ବିଧାତା ସର୍ଜନା କଥା କିଏ ବା କହିବ ?



# ଚନ୍ଦ୍ରଭାଗା

ରାମନାରାୟଣ ରାୟ

ଚନ୍ଦ୍ରଭାଗାର ନୀଳ ଜଳରାଶି
ଲହରୀରେ କହେ ଆସହେ ଭାଇ,
ପାପୀ, ରୋଗୀ ଯେତେ ଦୁନିଆରେ ଅଛ
ପାପ ଧୋଇ ଯାଅ ବୁଡ଼ ପକାଇ ।
ହିନ୍ଦୁ ଜାତିର ପୁଣ୍ୟତୋୟା ଇଏ
ରୋଗ ବ୍ୟାଧି ସବୁ ଦିଏ ଛଡ଼ାଇ,
ସୂରୁଯ ଉଇଁଲେ ପହିଲି କିରଣ
ଏହାରି ବୁକୁରେ ଆସେ ଓହ୍ଲାଇ ।
ପୁରାଣ ବର୍ଣ୍ଣିତ କାମାତୁର ସୂର୍ଯ୍ୟ
ପ୍ରଣୟ ପିଆସେ ଗଲେ ଗୋଡ଼େଇ,
ଅବଳା ଦୁର୍ବଳା ଚନ୍ଦ୍ରଭାଗା ବାଳା
ଜୀବନ ହାରିଲା ଲମ୍ଫ ପକାଇ ।
ରବି ପତ୍ନୀ ସଞ୍ଜା ପତି ଅଭିଶାପେ
'ଅଶ୍ୱନୀ' ସାଜିଣ ଲୁଚିଲେ ଯାଇ,
ଅନୁତପ୍ତେ 'ରବି' ଆତୁରେ ଖୋଜିଲେ
'ନଳିନୀ' ସାଜିଲେ 'ସଂଜ୍ଞା' ସ୍ୱଦେହୀ ।
ସୂରୁଯ-କମଳ ପ୍ରେମ ଅନୁରାଗୀ
ଦୁନିଆ ଏକଥା ଜାଣିକି ନାହିଁ ।

ସେଇଥି ପାଇଁ ତ ସୂରୁଯ ଦେବତା
ନଳିନୀ ଚୁମଇ ନିତି ଓହ୍ଲାଇ ।
ଶ୍ରୀକୃଷ୍ଣଙ୍କ ସୁତ ବ୍ରହ୍ମ ଅଭିଶାପେ
କୁଷ୍ଠ ରୋଗ ଭୋଗୀ ହୋଇଲେ ବାଇ,
ବ୍ରହ୍ମା ସୁନନ୍ଦନ ନାରଦ ମହର୍ଷି
ହିତବାଣୀ ଦେଲେ ତା'ପାଶେ ଯାଇ ।
ନାରଦଙ୍କ ଏହି ହିତ ଉପଦେଶ
ତପସ୍ୱୀ ସାଜିଲେ ସ୍ୱଦେହେ ଶାମ୍ବ,
ମହୋଦଧି କୂଳେ ସୂର୍ଯ୍ୟୋଦୟ କାଳେ
ସୂରୁଯ ଦିଶନ୍ତି ସତେଜ ସ୍ତମ୍ଭ ।
ତୋର ସନ୍ନିକଟେ ବାଲୁକା ଶଯ୍ୟାରେ
ଜଗତ ବିଖ୍ୟାତ କୋଣାର୍କ କ୍ଷେତ୍ର,
ତା'ର ଚାରୁକଳା ଜଗତ ବିଦିତ
ଅଟକି ରହଇ ଦର୍ଶକ ନେତ୍ର ।
ବାରଶ ବଢ଼େଇ ଏ ମନ୍ଦିର ଗଢ଼ି
ମାରି ପାରନ୍ତିନି ଏହାର ଚୂଳି,
ବାଳୁତ ଧରମା ଚୂଳିମାରି ଦେଇ
ଜାତିପାଇଁ ଦିଏ ଜୀବନ ବଳି ।
କେତେ କିମ୍ବଦନ୍ତୀ କେତେ ଜନଶ୍ରୁତି
ସ୍ପନ୍ଦନ ତୋଳଇ ଜନ ମାନସେ,
ଧନ୍ୟ ଚନ୍ଦ୍ରଭାଗା ଆଜି ତୁ ଅଭାଗା
ଲୋତକ ଝରାଏ ମନ ବିରସେ ।



# କୋଣାର୍କ ମନତଳ ପ୍ରଶ୍ନ

ବିଦ୍ୟୁତପ୍ରଭା ପରିଜା (ବିଶ୍ୱାଳ)

କୋଣାର୍କର ସେ ନଟୀ ଯେବେ
ହସୁଥାଏ ମନେ ମନେ
ଦର୍ପଣରେ ନିଜ ମୁହଁ ଦେଖି, ଆଉ
ମୃଦଙ୍ଗରେ ତାଳଦେଇ ତା' ପାଖେ ଅଣ୍ଟା ହଲାଇ
ନିଜେ ବି ନାଚୁଥାଏ ସେ ନଟନାଗର
ଟିକେ ବି ତ ହସ ଚହଲି ଆସେନି
ଦର୍ଶକର ଓଠଧାରେ ।

ଶୃଙ୍ଗାର ବେଶ ରଚି, ନଟୀର ସେ ପାଷାଣ ଦେହରେ
ଅନେକ ବସନ୍ତ ଭିଡ଼ ନେଇ
ପଥର କୋଣାର୍କଟା ଯେବେ
ମୁଣ୍ଡ ଟେକି ଆକାଶକୁ ଚାହିଁଥାଏ
ଦର୍ଶକର ଦୁଇ ଆଖି ନଇଁଯାଏ ଧୀରେ ଧୀରେ
ବୋଧହୁଏ ( ? ) ବିସ୍ମୟରେ ।

ଭଗ୍ନ ସେ କୋଣାର୍କର ବେଦୀପରେ
ଏବେ ବି ପ୍ରଥମ ସୂର୍ଯ୍ୟକିରଣ ବିଛାଡ଼ି ହୋଇ ପଡ଼େ
ଉଲ୍ଲସିତ ହୋଇଉଠନ୍ତି
ପଥର ଦେହର ଖୋଦିତ ଲିପିସବୁ
ହସିଉଠେ ଉତ୍କଳ
ସେଇ ଭଗ୍ନକୋଣାର୍କର ଗର୍ବ ନେଇ ॥

ଏବେ ବି ସେ ଅଶ୍ୱ
ଦୁଇଗୋଡ଼ ଟେକିଦେଇ
ସର୍ବଦା ପ୍ରସ୍ତୁତ ଉଡ଼ିଯିବା ପାଇଁ,
କିନ୍ତୁ, ହାୟ !
ଭାଙ୍ଗିଗଲା ରଥର ଚକ
ଉଡ଼ିଯିବ ଏବେ ଆଉ କାହାକୁ ସେ ନେଇ ।

ନିଃଶବ୍ଦ ରାତିରେ ସମୁଦ୍ର ଗର୍ଜନକୁ ଭେଦି
ଝାଉଁବଣର ସାଇଁ ସାଇଁ ଶବ୍ଦକୁ ଅତିକ୍ରମି
କଇଁକଇଁ କାନ୍ଦଣା ଭାସିଆସେ
କୋଣାର୍କ ବେଢ଼ାର ସେପଟରୁ ପୁଣି
କିଏ କାନ୍ଦେ ଆଉ କାହାପାଇଁ ?

କାନ୍ଦୁଛି ସେ ନଟୀ
ବନ୍ଦିନୀ ସେ ପ୍ରସ୍ତର ଦେହରେ
ପାଦ ତା' ଚଞ୍ଚଳ ନୁହେଁ
ଯୁଗଯୁଗ ପାଇଁ ବନ୍ଦିନୀ ସେ
କେବଳ ଗୋଟିଏ ମୁଦ୍ରାରେ,
କାନ୍ଦୁଛି ସେ ଅଶ୍ୱ
ଉଡ଼ିଯିବା ପାଇଁ ଯିଏ ସର୍ବଦା ପ୍ରସ୍ତୁତ
କିନ୍ତୁ ଡେଣା ତା'ର ଭାଙ୍ଗିଗଲା
ଠିକ୍ ଉଡ଼ିଯିବାର ପୂର୍ବ ମୁହୂର୍ତ୍ତରେ ।

କାନ୍ଦୁଛି କି ଧର୍ମପଦ ?
ନିଜ ଜାତିପାଇଁ ଯିଏ
ଚନ୍ଦ୍ରଭାଗାରେ ନିଜକୁ ଦେଲା ବିସର୍ଜନ
ପିତାଙ୍କର ସ୍ନେହସ୍ପର୍ଶ ପାଇଁ
ଆକୁଳ ତା' ପ୍ରାଣ ।

କାନ୍ଦୁଛି କୋଣାର୍କ ଆଉ
କାନ୍ଦୁଥିବ ମଧ୍ୟ ଯୁଗଯୁଗ ପାଇଁ
ତା' କାନ୍ଦରେ ତାଳଦେଇ କାନ୍ଦିବ ଶ୍ରାବଣ
ଆଉ ସମୁଦ୍ର ବି ମଥାପିଟି କାନ୍ଦୁଥିବ
ସମଦୁଃଖୀ ହୋଇ ।

ବାରଶ ବଢ଼େଇଙ୍କ ଶରୀରର ଲୁଣିସ୍ୱେଦ
ଚବିଶି ଶହ ଆଖିର ଲୁଣିଲୁହର ଆବହାଓ୍ୱାରେ
କ୍ଷୟିଷ୍ଣୁ ଆଜି ପଥର କୋଣାର୍କ-
ଆମ ଜାତିର ଗୌରବ
ରାତିର ନିସ୍ତବ୍ଧତା ଭାଙ୍ଗି କାନ୍ଦେ କଇଁକଇଁ,
ପଥର ନଟୀର ସେ
'ମୁକ୍ତିଦିଅ' ଚିତ୍କାରକୁ ଶୁଣିଛ କି କେହି ?



# ଆଭିଜାତ୍ୟ, କୋଣାର୍କ ଓ ନାରୀ

ରଶ୍ମିରଞ୍ଜନ ରାୟ

ହେ କୋଣାର୍କ ! ସପ୍ତାଶ୍ଚର୍ଯ୍ୟ ପଦକପ୍ରଧାରି !
ତୁମେ ବି ସେଇଆକଲ ?
ତୁମେ ମଧ ନାରୀ ପାଇଁ ହେଲ ବିଡ଼ମ୍ବନା ?
ରିଗିଂ ଭୋଟ ବଳେ
ଏ ବିଶ୍ୱବ୍ରହ୍ମାଣ୍ଡ ଯା'ରେ କହେ ଯୋଗେଶ୍ୱର
ସଜାଇଲା କଳଙ୍କିନୀ ସେ ଭୁଆସୁଣୀକୁ
ତ୍ରେତୟାରେ' ବାରବାର ଅଗ୍ନିଦଗ୍ଧା ଯଶଭୋଗ୍ୟା ବିଧରା ବୈଦେହୀ
ପ୍ରଜାନୁରଂଜକ ରାମ ମର୍ଯ୍ୟାଦା ପୁରୁଷ ସିଂହ
ପ୍ରିୟତମ ସ୍ୱାମୀଙ୍କ କୃପାରୁ
ସତ୍ୟେ ବୃନ୍ଦାନାରୀ ହେଲା ଯଶର ତୁଳସୀ
ହାତ ମାରି ଅଗ୍ନିକୁ ମୁଁ ପରଖିଛି ହାତ ପୋଡ଼ିଯାଏ
ଯଶଟା ନିଆଁ କି ହିମ ଆଜିଯାଏ ଅଣ୍ଡାଳୁଛି ମୁହିଁ
ନାରୀ ମୁହିଁ ସେ ଯଶ ମୋ ଆଦୌ ଲୋଡ଼ା ନାହିଁ ।

ଏ କି କଲ ? ଏ କି କଲ ତୁମେ ?
ଇଜତ ମହତସବୁ ଭୂଲୁଣ୍ଠିତ କଲ ?
ନାରୀର ଦେହକୁ ନେଇ ଏ ଖେଳ ରଚିଲ ?
ଲଙ୍ଗଳା କରିବା କ'ଣ
କଳା ସୌଧ ତୋଳିବାକୁ ନିହାତି ଜରୁରୀ ?

ଉଲଗ୍ନ ନ ହେଲେ ନାରୀ
ଶୂନ୍ୟ ସବେ ହୋଇଯିବ କାଗଜ କି ପତ୍ର ?
ସେ କି ଏକ ତୁଚ୍ଛା କ୍ରୀଡ଼ାନକ ?
ହେ କୋଣାର୍କ !
କାହିଁ ତୁମେ ଏପରି ଦଂଶିଲ
ପୁଆଣୀ ଅଳତା ଗୋଡୁ ଲିଭିନାହିଁ
ଛାଡ଼ି ପ୍ରାଣପତ୍ନୀ
କାରିଗର ଚାଲିଗଲା ଅର୍କର ଭୂମିକୁ
ରାଜାର ଆଦେଶେ
ପ୍ରଭାତୁ ଶର୍ବରୀ ଯାଏ
ଶାଶୂର କୁଟୀଳ ଗାଳି ନଣନ୍ଦର କୁତ୍ସିତ ଭର୍ତ୍ସନା
ନବ ବିବାହିତା ବଧୂ ହରାଇଛି ପାଶୁଯିଏ
ଦଶଦିନ ତଳ ହାତ ସ୍ନେହର ପରଶ
ହୃଦରେ ହୃଦୟ ଜଡ଼ି ଏକାକାର ହୋଇଯିବା ପୀରତି ଫଲଗୁ
"କଳଂକିନୀ କଳାହାତ ମୋ ପୁଅକୁ ଠେଲିଦେଲା ଦଗ୍ଧ ପୁଳିନକୁ
ପିଶାଚିନୀ ବାଂଝ ହେଉ, ହେଉ ଆଣ୍ଠୁକୁଡ଼ି"
ଥପ ଥପ ଝରଇ ଲୋତକ
"ଏ ଡାକୁଣୀ ରକ୍ତଶୋଷା ତଣ୍ଡି
ଶୋଷିଦେବ ପ୍ରାଣପକ୍ଷୀ ମୋ ରଙ୍କୁଣୀ ସ୍ନେହ ପିତୁଳାର
ବ୍ୟଭିଚାରିଣୀର ଯାଏ ଆସେ କେତେ
ଉଡ଼ିଯିବ ସାଜି ସୋହାଗିନୀ, ଆଉ କାହା ସାଥେ" ।
ଶବ୍ଦର କରତଦାନ୍ତ ଚିରି ଚିରି ଦିଏ ତା'ର ଛାତିର କଳିଜା
ନିଶାର୍ଦ୍ଧରେ ସାଇଁ ସାଇଁ ବାଆ ବହେ
ଭରି ଭରି ତା' ପ୍ରାଣର ତତଲା ନିଃଶ୍ୱାସ
ଆଜି ମଧ ତୋ ବେଳାର ଝାଉଁ ଜଙ୍ଗଲରେ ।
ହେ କୋଣାର୍କ ! ସପ୍ତାଶ୍ୱର୍ଯ୍ୟ ପଦକ ପ୍ରଧାରି !

ଆହୁରି ଆଶ୍ଚର୍ଯ୍ୟ ଲାଗେ ହେବ ଅଷ୍ଟାଶ୍ଚର୍ଯ୍ୟ
ତୋ ଦେହରେ ତୋ କଳାରେ
ଅବଳାକୁ ଲଳନା ବି କରିଛି ଧର୍ଷଣ
ଦେଖି ବଡ଼ କ୍ଷୋଭ ଲାଗେ,
ନରପରି ନାରୀ ମଧ୍ୟ ଅବଳାକୁ ଦିଏ ନିର୍ଯ୍ୟାତନା ।
ହେ ଈଶ୍ୱର ଜାଣିଲି ମୁଁ
ଏ ପୃଥିବୀ ଯା'ରେ କହେ ମାନ୍ୟ ଆଭିଜାତ୍ୟ
ସେ ମୋହର ଲାଗିଯାଏ ଯେଉଁଠାରେ
ହେଉ ସିଏ ନର ଅବା ନାରୀ; ଅବା ସ୍ଥାବର ଜଙ୍ଗମ
ସେ ଲୁଣ୍ଠନ କରିଥାଏ ବାରବାର ଦୁର୍ବଳା ନାରୀକୁ
ଦୁଃଖ ଦେଇ ସୁଖ ନେବା ସୁନାମ ଯାହାର
ହେ ଈଶ୍ୱର ! ତୁମକୁ ମୋ ବାରବାର ଅଳି
ଆଭିଜାତ୍ୟ ମୋହରକୁ ମାରନାହିଁ
ହୃଦ ଯା'ର ନାହିଁ ଛାତି ପିଞ୍ଜରା ଭିତରେ ।



# ଚନ୍ଦ୍ରଭାଗା ପ୍ରତି

ପ୍ରତିଭା ଦାଶ

ଉତ୍କଳ ଜନନୀ ଗଳା ରତ୍ନମାଳା ପୁଣ୍ୟତୋୟା ପ୍ରାଚୀ
ଜ୍ୟୋତିର୍ମୟୀ ତୁମେ ଧରି ଶତ ମଣି ମାଣିକ୍ୟର ବିଚୀ
ପୁଣ୍ୟ ସ୍ରୋତସ୍ୱିନୀ ବିଭବ ଶାଳିନୀ କୁଶଭଦ୍ରା ସୁତା
ବାଲିଅନ୍ତା ସ୍ୱର୍ଣ୍ଣରେଣୁ ଶଯ୍ୟାପରେ ହୋଇଲ ସମ୍ଭୁତା
ଉଚ୍ଛ୍ୱସିତ ଉତ୍ତାଳ ପ୍ରବାହେ କଳକଳ ମଧୁ ସ୍ୱନେ
ଝରିଗଲ ଛଳଛଳ ହୋଇ ପ୍ରାନ୍ତ ବିଲ ବନେ ବନେ
ସ୍ୱର୍ଗୀୟ ପୀୟୂଷେ ସୁଧା ସିକ୍ତ କରି ଶୁଷ୍କ ବନ ଭୂଇଁ
ଜନନୀ ମମତା ଫୁଲେ ସ୍ନେହୀ କର ଦେଲ ଧୀର ଛୁଇଁ
ସେ ଅମୃତମୟ ସ୍ପର୍ଶେ ସଂଜୀବନୀ ସତେ ଦେଲ ଢାଳି
ଊଷର ଟାଙ୍ଗର ଭୂମି ମଧୁହାସେ ପଡ଼ିଲା ଉଚ୍ଛୁଳି
ହସିଲା କାନ୍ତାର ଶିଳା ବନ ବିଲ କେଦାର ପ୍ରାନ୍ତର
ଐଶ୍ୱର୍ଯ୍ୟବତୀ ଧରଣୀ ବକ୍ଷେ ଧରି ସବୁଜ ସମ୍ଭାର
ପ୍ରକୃତି ଗାଇଲା ଗର୍ବେ ତବ ଯଶ ଗଉରବ ଗୀତି
ପୁଷ୍ପାଞ୍ଜଳି ଦେଇ ପଦେ ବାଢ଼ିଦେଲା ବିନମ୍ର ପ୍ରଣତି
ସୁବର୍ଣ୍ଣ ଅକ୍ଷରେ କାଳ ଲେଖିଦେଲା ସ୍ୱର୍ଣ୍ଣ ଇତିହାସେ
ହାସ୍ୟମୟୀ ମଧୁଛନ୍ଦା ଆତ୍ମହରା ବିମଳ ବିଭାସେ
କେତେ ନାମେ କେତେ ଧାରେ ଝରିଗଲ ବିଭିନ୍ନ ସ୍ଥାନରେ
ଚିତ୍ରୋତ୍ପଳା ପ୍ରାଚୀ ସରସ୍ୱତୀ ସୋଲ କାଦୁଆ ନାମରେ
ନ୍ୟୂନ କରି ଶତ ଚନ୍ଦ୍ରପ୍ରଭା, ସ୍ୱୟଂପ୍ରଭା ହେ ସୁଭଗା
ସାଗର ସଙ୍ଗମ ପୂର୍ବୁ ପରିଚିତା ହେଲ ଚନ୍ଦ୍ରଭାଗା
ସେହି ଚନ୍ଦ୍ରଭାଗା ନାମ କାଳବକ୍ଷେ ରହିଲା ଅମର
ଅର୍କ କ୍ଷେତ୍ରେ ନରସିଂହ ତୋଳାଇଲେ ଅତୁଳ ମନ୍ଦିର

ଚନ୍ଦ୍ରଭାଗା ଧାରେ ଅବା ଫୁଟିଗଲା ଶିଳାପଦ୍ମ ଏକ
ଭାସ୍କର୍ଯ୍ୟେ ଅତୁଳନୀୟ ବିଶ୍ୱେ ଅଦ୍ୱିତୀୟ କୋଣାରକ
ଦଳେ ଦଳେ ବିଭାସିତ କାରୁକାର୍ଯ୍ୟ ସେହି ଶତଦଳ
ଉତ୍କଳୀୟ ଶିଳ୍ପକଳା ଯେଉଁଠାରେ ହୋଇଲା ଅମର
ସ୍ତମ୍ଭୀଭୂତ ହେଲା ବିଶ୍ୱ ଦେଖି ସେହି କାଳଜୟୀ କଳା
ଉତ୍କଳ ସ୍ଥପତି ଯଶ ଗାଇଗଲା ସେ ପୁଷ୍ପିତ ଶିଳା
ପଦ୍ମକ୍ଷେତ୍ରେ ଅର୍କଦେବ କୋଣାର୍କର ସେହି ପଦ୍ମଫୁଲେ
ଅନନ୍ତ ଶାଶ୍ୱତ ପ୍ରୀତି ମୁକ୍ତ ମନେ ପ୍ରେମେ ଢାଳିଦେଲେ
ସେହି ପ୍ରୀତି ମହାର୍ଣ୍ଣବ ପୁଣ୍ୟମୟ ଅରୁଣ ବରଣେ
ବିଚିତ୍ର ଉର୍ମିଳା ଉଚ୍ଛ୍ୱସିତ ବୁକୁ ଲୋହିତ କିରଣେ
ବେଗମତୀ, ରୂପମୟୀ ଅଇଶ୍ୱର୍ଯ୍ୟବତୀ ପୁଣ୍ୟତୋୟା
ନିରୂପମା ଅନୁପମା ଅନନ୍ୟା ହେ ଅତୁଳନୀୟା
ସମକକ୍ଷ ହେବ କିଏ ସେଦିନ ତୁମର ଯଉବନେ
ଶତ ସ୍ୱରଧୂନୀ ଅବା ଆତ୍ମୋତ୍ସର୍ଗ କରିଲେ ଚରଣେ
ତାରକା ଚର୍ଚ୍ଚିତ ବ୍ୟୋମ ଟାଣିଦେଲା ନୀଳ ଚନ୍ଦ୍ରତପ
ଜ୍ୟୋତ୍ସ୍ନା ହରିନେଲା ଆଶେପାଶେ ଥିଲା ଯେତେକ ଉତ୍ତାପ
ପୂଜାର୍ଚ୍ଚିତ ମୁଗ୍ଧ ସୂର୍ଯ୍ୟ ଢାଳିଦେଲେ ସୁବର୍ଣ୍ଣ କିରଣ
ଆଲଟ ଚାମର ହର୍ଷେ ସଂଗଳନ କଲା ସମୀରଣ
ମହୋଦଧି ବରିନେଲା ପ୍ରେମଭରେ ତୁମ ଜଳଧାର
ସ୍ପର୍ଶ କରିଥିଲ ବୋଲି ଋଦ୍ଧିମନ୍ତ କୋଣାର୍କ ମନ୍ଦିର
ତୁମ ସ୍ରୋତ ଜଳେ ଦେଖି ସେ ବିଭବ ଉଚ୍ଚକିତ ବିଶ୍ୱ
ସେଦିନ ବିଭାସେ ଗର୍ବେ ତୁମ ଓଷ୍ଠେ କୀର୍ତ୍ତି ମଧୁହାସ
କିନ୍ତୁ ହାୟ ଆଜି କାହିଁ ତୁମର ସେ ଅତୀତ ଗୌରବ
ଉତ୍ତୁଙ୍ଗ କୋଣାର୍କ ଆଉ ଉଚ୍ଛ୍ୱସିତ ସଲିଳ ବିଭବ
ଉତ୍କଳୀୟ କାରୁକାର୍ଯ୍ୟ ଶିଳ୍ପକଳା ତୁମେ ଥିଲ ଦେଖି
ବାରଶ ସ୍ଥପତି ହୃଦ ସର୍ଜନରେ ତୁମେ ଏକା ସାକ୍ଷୀ
ହୃଦେ ଚିନ୍ତି ପ୍ରିୟତମା ପଲ୍ଲୀବଧୂ ଅମୃତ ସୁଷମା
ଷୋଳବର୍ଷ ଶିଳ୍ପୀର ସେ ଶିଳା ସମ କଠୋର ସାଧନା
ଲେଖିଦେଲା ଅନବଦ୍ୟ କାରୁକଳା ଶିଳାରେ ଶିଳାରେ

ଫୁଟାଇଲା ଉଜ୍ଜ୍ୱଳ ବିଭବ କୀର୍ତ୍ତି କଳାରେ କଳାରେ
ହାୟ ହାୟ ସେ ଉତ୍କର୍ଷ କୀର୍ତ୍ତିସ୍ତମ୍ଭ କାଳଗର୍ଭେ ଲୀନ
ମୁଖଶାଳା ମୂକସାକ୍ଷୀ ରୂପେ ଆଜି ରହିଛି ମଉନ
ଭଗ୍ନାବଶେଷରେ ଯିଏ ଏବେ ଏତେ ଅଇଶ୍ୱର୍ଯ୍ୟମୟ
ସମ୍ପୂର୍ଣ୍ଣେ କି ଅପରୂପ ନ ଥିବ ତା' ରୂପ କମନୀୟ
କିଏ ବା କଳି ପାରିବ ସେ ସୌନ୍ଦର୍ଯ୍ୟ ସେ ଦିବ୍ୟ ସୁଷମା
ତୁମେ ହିଁ ଦେଇପାରିବ ସେ ଦିନର ଭାସ୍କର କଳ୍ପନା
କେତେ ରକ୍ତ ସ୍ୱେଦାକାନର ଢାଳି ହୃଦୟ ନିର୍ଯ୍ୟାସ ଦେଇ
ମାନସ ପୀରତି ଫୁଲେ ଗଢ଼ିଥିଲା କଳା କାଳଜୟୀ
କେତେ ଯେ ସୁନାସଂସାର ଭାଙ୍ଗିଥିଲା ଶିଳ୍ପୀର ସେବେଳେ
କେତେ ଲୋତକ ଝରଣା ଝରିଗଲା ତୁମ ବୁକୁପରେ
ଶିଳ୍ପୀବଧୂ ଦୀର୍ଘଶ୍ୱାସ ମିଶିଗଲା ଅନନ୍ତ ଗଗନେ
ସବୁତ ତୁମର ହୃଦେ ସଂଚିଥିଲ ଅୟନେ ଅୟନେ ।
ସେ ଅଶାନ୍ତ ଶ୍ୱାସେ ଅବା ଭାଙ୍ଗିଗଲା ଉତ୍ତୁଙ୍ଗ ମନ୍ଦିର
ସେ ବହ୍ନିଜ୍ୱାଳାରେ ଅବା ଶୁଖିଗଲା ତୁମ ବୁକୁନୀର
ଅଥବା ଶିଳ୍ପୀବଧୂର ସନ୍ନ୍ୟାସିନୀ ତ୍ୟାଗପୂତ ପ୍ରାଣ
ଅନୁଭବି ବରିନେଲ ତପସ୍ୱିନୀ ସାଧିକା ଜୀବନ
ଷୋଳବର୍ଷ ସହିଥିଲା ଶିଳ୍ପୀପ୍ରିୟା ବିରହ ବେଦନା
ତୁମେ କି ଏକାଗ୍ର ଚିତ୍ତେ କରୁଛ ସେ କଠୋର ସାଧନା
ସିନ୍ଧୁଠୁ ବିଚ୍ୟୁତ ହୋଇ ଦେଖାଉଛ ତ୍ୟାଗ ପରାକାଷ୍ଠା
ଉତ୍କଳ ତଟିନୀ ବୋଲି ଉତ୍କଳୀୟ ବରବଧୂ ନିଷ୍ଠା
କି ଅବା ବ୍ୟଥିତ ହେଲେ କୋଣାର୍କର ଅକାଳ ପତନେ
ସ୍ୱଦେଶ ବତ୍ସଳେ ତନୁ କ୍ଷୀଣ କଲ ଲୋତକ ମୋଚନେ
ସର୍ବଂସହା ଉତ୍କଳ ପୁଣ୍ୟବତୀ ପବିତ୍ର ସରିତା
କାଳ ଆବିର୍ତ୍ତିତ ଚକ୍ରେ କି ଆଶାରେ ଅଛ ପ୍ରତୀକ୍ଷିତା
ସତିକି କୋଟିଏ ଶିଳ୍ପୀ ପୁନର୍ଜନ୍ମ ଲଭିବେ ଉତ୍କଳେ
ନୂତନ କୋଣାର୍କ ତୋଳିବେ କି ଦକ୍ଷ କୁଶଳ ହସ୍ତରେ
ହେ ସାଧବି ! ଦେବକି ତାହାଙ୍କୁ ଅତୀତ ସ୍ଥପତି ଶିକ୍ଷା
ଧୈର୍ଯ୍ୟଶୀଳା ଚନ୍ଦ୍ରଭାଗା; ସେ ସୁଦିନ କର କି ପ୍ରତୀକ୍ଷା ? ?



# କୋଣାର୍କ

ମଧୁସୂଦନ ସାହୁ

ଶୋଇଥାଅ ତମେ ଶୋଇଥାଅ
ସ୍ମୃତିର ପାହାଡ଼ ଭଳି
ରକ୍ତ ମାଂସର ସଉଧଟେ ସାଜି
ମରମର ଚିତା ଜାଳି ।
ଗାଉଥାଅ ତମେ ଗାଉଥାଅ
ଜୀବଂତ ମଣିଷ ପରି
ସ୍ୱରରେ ତମର ମୁଖରିତ
ପ୍ରୀତିର ଯମୁନା ବାରି ।
ଦେହରୁ ତମର ଲିଭିନାହିଁ
ତପସ୍ୟାର ବାରବର୍ଷ
ମନରେ ତମର ପ୍ରସ୍ଫୁଟିତ
ନିହାଣ ହାତୁଡ଼ି ସ୍ପର୍ଶ ।
ଜୀବନ୍ତ ହୃଦୟ ହଇଚଇ
ତମରି ଇଙ୍ଗିତ ପାଇ
କେଉଁଠାରେ ତମେ ଲୁଚିଅଛ
ହୋଇଯାଅ ମୁହାଁମୁହିଁ ।
ବାରଶ ବଢ଼େଇ ଜର୍ଜରିତ
ମରମରେ ନାହିଁ ଦୁଃଖ
କଳା କୀରତିର ସ୍ୱର୍ଗ ସାଜି
ବିରାଜିତ କୋଣାରକ ।

ରହିଥାଅ ତମେ ରହିଥାଅ
ଭଗ୍ନାଂଶର ମୁଖଶାଳା
ଅସ୍ତ ନ ହେଉ ସୂର୍ଯ୍ୟ ତମର
ଚୂର୍ଣ୍ଣ ନ ହେଉ କଳା ।
ଜାତି ନାହିଁ ଯା'ର ଧର୍ମ ନାହିଁ
ସଂସ୍କୃତିର ପୀଠ ସେଇ
ଉନ୍ମୁକ୍ତ ଯା'ର ପରମ୍ପରା
ମାନବ ଜାତିର ପାଇଁ ।
ସୁପ୍ତ ଓଡ଼ିଆ ଦେଖୁ ନୟନେ
ପୂରୁବ ପୁରୁଷ କୀର୍ତ୍ତି
ନିର୍ଲ୍ଲଜତା ଅଭିମାନ ମନେ
ସ୍ମରଣୁଛି ନିଜ ସ୍ମୃତି ।
ଉଠରେ ଉଠରେ ସୁପ୍ତ ଓଡ଼ିଆ
ନକର ନରକେ ବାସ
ପର୍ଶିଦେ ତୋ'ର ସୁବର୍ଣ୍ଣ ଥାଳିଆ
ଫେରିଯାନ୍ତୁ ପରବାସ ।
ତୃପ୍ତିର କଳା ସ୍ମୃତିରେ ଜାଗୁ
ଲୋଡ଼ାନାହିଁ ପର୍ଯ୍ୟଟକ
ଅର୍କକ୍ଷେତ୍ରେ ବିରାଜିତ ଥାଅ
ଚିରଦିନ କୋଣାରକ ।



# କୋଣାର୍କ

ସୁଭାଷିନୀ ଶତପଥୀ

ଇତିହାସର ସ୍ୱର୍ଣ୍ଣ ପୃଷ୍ଠାରେ
ଭିଜା ଅତୀତର ମୂକସାକ୍ଷୀ, କୋଣାର୍କ ।
ନୀରବ ପାହାନ୍ତି ପ୍ରହରେ
ପ୍ରେୟସୀ ଚନ୍ଦ୍ରଭାଗାକୁ
କାମନା କରି ପ୍ରଣତି ଢାଳେ
ଅଭିଶପ୍ତ ସୂର୍ଯ୍ୟ ।

ସମୁଦ୍ର, କ୍ରାନ୍ତିକାରୀ ସୈନିକଟେ ପରି
ସାରା ରାତି ସାରା ଦିନ
ନିଷ୍ଫଳ ପ୍ରୟାସ କରେ
ପୁରାଣର ଲକ୍ଷ୍ମଣ ରେଖାକୁ
ଅତିକ୍ରମିବାକୁ; ଅକ୍ଷମ ହୁଏ
ହାରିଯାଇ ଗର୍ଜନ କରେ
ତା'ର ବଜ୍ର ଗମ୍ଭୀର ଡାକ
ଦୋହଲାଇ ପାରେନି
ତୋ' ଧ୍ୟାନରତ ମୌନତା ।

ଶୁଣି ପାରେନି ତୋ' ରୂପସୀ
ନର୍ତ୍ତକୀମାନଙ୍କ ଘୁଙ୍ଗୁରର ଶବ୍ଦ,
ସମସ୍ତେ ଯେପରି କ୍ଳାନ୍ତ, ଅବସନ୍ନ
ନିର୍ବାକ ନିସ୍ପନ୍ଦ ।

ଝାଉଁବଣର ସ୍ୱର ସାଥିରେ
ବିଦୀର୍ଣ୍ଣ ହୋଇଯାଏ
ବାରଶହ ବଢ଼େଇଙ୍କ
ହାତୁଡ଼ିର ଶବ୍ଦ ।

ତୋ'ର କିନ୍ତୁ ନ ଥାଏ
ଅନୁରାଗ କିମ୍ବା ପ୍ରତିକ୍ରିୟା
ଜାଣେ, କେତେକାଳ ଥିବୁ ଏମିତି
ଜୀବନ୍ତ ସମାଧି ମୁଦ୍ରାରେ ।



# କୋଣାର୍କ

ମନୋରଞ୍ଜନ ସାହୁ

ଖଣ୍ଡ ଖଣ୍ଡ ଭାଙ୍ଗି
ହଜିଯାଇଛି ଅତୀତ
ଯାହା ବିସ୍ମୃତିର କରାଳ ଗର୍ଭରେ
କବଳିତ
ଯାହାକୁ ନେଇ
ପୃଥିବୀରେ ଆମେ ଏବେ
ସଂସ୍କୃତି ସମ୍ପନ୍ନ ଭୁରି ଭୁରି ଗର୍ବିତ ।

ସେ
କୋଣାର୍କନୁହେଁ
ତା'ର
ମୁଖଶାଳା ।



# ମୌନ ମନ୍ଦିର୍

ମଞ୍ଜୁରାଣୀ ସେନ

ଚନ୍ଦ୍ରଭାଗାର ସୈକତ ଶଯ୍ୟାରେ
ସାଗର ମିଳନ ବେଳାଭୂମିରେ
ଧୂସର ଦିଗ୍‌ବଳୟର ଉଦୟଭାନୁ
କଳିଙ୍ଗ ଉଦ୍‌ଭାସିତ ସେ ଜ୍ୟୋତି ରେଣୁ ।

ହେ ଜ୍ୟୋତିର୍ମୟ ଅର୍କଦେବତା
ସର୍ବବ୍ୟାପୀ ତୁମେ ଅଟ ସବିତା
ଶିଳାରେ ଶିଳାରେ ରଥଟିଏ ଗଢ଼ି
ଚକ୍ରବାଳରୁ ଆସ ଅଶ୍ୱରେ ଚଢ଼ି ।

ବସନ୍ତର ଶୁଭମାଘ ସପ୍ତମୀବାର
ବିଜ୍ଞାନ ଦେବତ୍ୱକୁ କରିଛି ସ୍ୱୀକାର
ଶୂନ୍ୟ ସିଂହାସନେ କ୍ଷଣିକେ ଉପବେଶି
ଭକତ ଭକତିରେ ଶେଷହୁଏ ନିଶି ।

ସୂର୍ଯ୍ୟ ତୁମର ପୂଜା ଆରାଧନା କ୍ଷେତ୍ର
ଚକିତଚଞ୍ଚଳ ହୁଏ ମନପ୍ରାଣନେତ୍ର
ସେ ଅତୀତ ଥିଲା ଅତୀବ ହୃଦୟସ୍ପର୍ଶୀ
ଶିଳା ଗାଥାବୁଝେ ପ୍ରକୃତି ପ୍ରୟାସୀ ।

ତୁମଦାନେ ଲାଙ୍ଗୁଳା ନରସିଂହଦେବ
ରଖିଗଲେ ବାରଶହ ଶିଳ୍ପୀର ଗୌରବ
ବିଶ୍ୱ କର୍ମାରେ ଜୀବଞ୍ଜାନ ଦାନ ଦେଇ
ବିଶୁ ମହାରଣା ନାମେ ମାନବ ବୋଲାଇ
ସୂର୍ଯ୍ୟ ନିହାଣ ଚଳାଇଲ ପଥର ଉପରେ
ଶିଳ୍ପ ଶାସ୍ତ୍ରର ଶାଶ୍ୱତ ସମନ୍ୱୟପୀଠରେ
ଧର୍ମପଦର ଧରମ ରକତ ଶେଷ ସ୍ୱାକ୍ଷର
ସଲିଳ ସମାଧି ରଚିଲା ହୋଇ ଅବିନଶ୍ୱର ।

ଶିଳାରେ ଶିଳାରେ ଶିଳ୍ପୀର ଚତୁରୀ
ଅପରୂପ ସେ ଯେ ସୃଷ୍ଟିର ମାଧୁରୀ
କଳା କାମନାରେ କମନୀୟ ଶିଳାରୂପ
କବି ଭାବୁକ ପ୍ରେମିକଙ୍କ କଳ୍ପନାର ରୂପ ।

ଅର୍କ ହେ !
ତୁମେ କରି କୋଣାକର ଶୂନ୍ୟ
ଅପସରିଯାଅ ଦୂରୁ ବହୁଦୂରେ
ହୋଇ ମୌନ
ତୁମରି ପରଶେ ଜୀବବୃକ୍ଷ ଲତା ପ୍ରାଣେ
ଶକ୍ତି ସାମର୍ଥ ଅନୁଭବ ସଞ୍ଚାର ଜୀବନେ ।

କୋଣାରକ ତୁମେ ଜୀବନ୍ୟାସ ପାଇ ସୁପ୍ତ
ପାଷାଣ ହୋଇ ପାଷାଣୀରେ କରିବିକ୍ଷିପ୍ତ
ସମୟର ସବୁ ସନ୍ତ୍ରାସକୁ ସହ୍ୟ କରିଯାଏ
ଚନ୍ଦ୍ରଭାଗାର ସିକତା ଶେଯରେ ଜବାବ ନ ଥାଏ ।

କେଉଁ ଯଶନାମେ ପ୍ରଭୁବାନା ଉଡ଼ାଇବ
ପୁରାଣର କିମ୍ବଦନ୍ତୀ ଅତୀତ ସତ୍ୟ ନିଶ୍ଚେ ସାକ୍ଷ୍ୟଦେବ
ପଥରର ନିହାଣମୁନରେ ଅନବଦ୍ୟ ମହାକାବ୍ୟ ବିରଳ

ଅପୂର୍ବ ପାଷାଣ କାବ୍ୟକୃତି ଆଜି ନୀରବ ନିଶ୍ଚଳ
ବିଶ୍ୱ ବିଦିତ ଶାଶ୍ୱତ ଶିଳ୍ପର ସମଗ୍ରସତ୍ତାକୁ
ସାରଥି ଘେନିଯାଏ ଦୈବୀ ଅନ୍ତରୀକ୍ଷକୁ
ପ୍ରଖର ରଶ୍ମିରେ ଶିଳାଲିପି ଲିଭିଲିଭି ଯାଏ
କ୍ଷୟକ୍ଷତି ହିସାବନିକାଶେ କୋଣାର୍କ ପୂର୍ଣ୍ଣଚ୍ଛେଦ ଦିଏ ।

ତଥାପି ଧରିତ୍ରୀରେ ପାଦ ଗଗନକୁ ସ୍ପର୍ଦ୍ଧାକରି
କଳାର କୋଣାର୍କ ରହିଛି ରହିବ ଦିବ୍ୟ ହିମାଚଳପରି
ହେ ରୁଦ୍ର ଦେବତା ଫେରିଆସ ଫେରାଇଦିଅ
ଉତ୍କଳର ଅତୀତ
ମିନତି ମୋହର ଘେନ ପ୍ରଣିପାତ ।।



# କୋଣାର୍କ

ଶ୍ୟାମପ୍ରକାଶ ସେନାପତି

ସମୁଦ୍ରର ବେଳାଭୂମି
ମର୍ମରିତ ଝାଉଁବଣ ଗୀତି,
ଚୁପିଚୁପି କଥା କେତେ ଉଙ୍କିମାରେ
ପ୍ରତୀକ୍ଷାର ଲୁହଭିଜା ସ୍ମୃତି !

ଅନିଦ୍ରାରେ ସାରା ରାତି
ସ୍ୱପ୍ନ ଦେଖେ ପୃଥିବୀ ଯାକର,
ସମୁଦ୍ର ସଙ୍କୁଚିତ ହୋଇ
ଗୋଟିଏ ବିନ୍ଦୁରେ,
ମାଗନ୍ତି ମୋ ସାହଚର୍ଯ୍ୟ ।

ମୁଁ କିନ୍ତୁ ନିର୍ବିକାର –
ନିର୍ଲିପ୍ତ ଏକ କଙ୍କାଳ ପ୍ରତୀକ୍ଷାର
ଅନନ୍ତ କାଳର ।।



# ଅନ୍ୟ ଏକ ଧର୍ମପଦ

ତ୍ରିଲୋଚନ ସିଂହ

ସେ ଏକ ଅମାବୃତ ସଂକ୍ରମଣର ରାତ୍ରି,
ମୋ ଆଖିରେ ଭରି ଜୀବନ ଆଲୋକ
ଦୀପଟିଏ ଲିଭିଗଲା ।
ମୁଁ ଏକ କାଳ ଶକୁନ ।
ଅନାଥାଶ୍ରମର ଦୋଳା ହେଲା ମମତାର କୋଳ
ମୋ ଏକାନ୍ତ ନଙ୍ଗର ବିହୀନ ତରୀର
ନିବୁଜ ଶ୍ୟାମଳ ବନ୍ଦର ।
ବାପା ମୋର ଶିଳ୍ପୀ
ନିଛୁଟା ଉପାସକଟିଏ ରଙ୍ଗ ଓ ତୂଳୀର ।
ଘର ! କଳ୍ପନାର କୋଣାର୍କ ଅବା
ମାନପତ୍ର ଓ ଉପାୟନର ଆଲବମ୍‌ଟିଏ ।
ସମୟର ପାହାଚ ଡେଇଁ ଉତୁରି ଆସନ୍ତି
ଭଂଙ୍ଗୀୟ ନାୟିକାମାନେ
ଶିଳ୍ପୀର କୁହୁକ ତୂଳୀରେ
ଅଳସ ଭାଙ୍ଗନ୍ତି ମୋହନ ଭଙ୍ଗୀରେ
ଭଙ୍ଗା ଆକାଶର ଫଟା ଏକ
ସଫେଦ କ୍ୟାନଭାସ ଦେହରେ ।
ଅତିକ୍ଳାନ୍ତ ସମୟର ବାଲିପନ୍ତାରରେ
ସ୍ମୃତିମାନେ କଡ଼ ନେଉଟାନ୍ତି
କୁନି କୁନି ଘଡ଼ିଆଳ ପରି
ଶୀତୁଆ କୋମଳ ସୂର୍ଯ୍ୟର ମଖମଲି ଚନ୍ଦନ ଚର୍ଚ୍ଚାରେ ।

ଶିଳ୍ପୀ ଏକ ଦରଓ୍ୱାନ ଏଠି
ତା ସ୍ମୃତିର କଏଦୀମାନଙ୍କୁ ଜୀବନ୍ୟାସ ଦେଇ
କଡ଼ା ପହରା ଦିଏ
ରୁଦ୍ଧ କାରାଗାର ରେଲିଂ ବାହାରେ
ସଂଜ ଓ ସକାଳେ ।
ସୃଷ୍ଟି ତାଙ୍କ ରହିଗଲା ସ୍ଥିର ଓ ଅପୂର୍ଣ୍ଣ
ସ୍ଥିର ହେଲା ନିହାଣ ମୁଗୁର
ରୁପେଲି ପରଦାର ବାକ୍‌ହୀନ ସ୍ଥିର ଚିତ୍ର ପରି ।

ଶୁଷ୍କ ହେଲା କଳ୍ପନାର ମାନସରୋବର
ମାନସ ଗଙ୍ଗା ଅଭିଶପ୍ତ ବନ୍ଧ୍ୟା ନାରୀଟିଏ ।
ସେଦିନ ଖସି ପଡ଼ିଥିଲା ପର୍ଶୁରାମ ହାତୁ
ଶାଣିତ ପରଶୁ,
ତୃତୀୟ ପାଣ୍ଡବ ହସ୍ତରୁ ଗାଣ୍ଡିବ ଧନୁ;
ଚୁରମାର ହେଲା ଶିଳ୍ପୀର ଅଭିମାନ
ସବୁ ରଙ୍ଗ ଉଭେଇଗଲା କଳ୍ପନାର ଆକାଶରୁ
ପକ୍ଷୀମାନେ ଚୁପ୍‌ଚାପ ରହିଗଲେ
ଅଦିନିଆ ଘୂର୍ଣ୍ଣି ଓ ବାତ୍ୟାରେ ।
ଝଡ଼ ପରେ ଚରିଯାଏ ଯେହ୍ନେ ଭୟଙ୍କର ଶାନ୍ତି ।
ବିଶୁନନା ଧକା ମାରେ କୋଣାର୍କର ଭଗ୍ନଶିଳା ପରେ,
ହାଇ ମାରେ ବିଷଣ୍ଣ ପ୍ରେତାତ୍ମାର ଛାଇ ।
ଶିଳ୍ପୀ ଆଜି ବିଷଣ୍ଣତାର ହିମଶୈଳଟିଏ
ଭଙ୍ଗା ଶିବିରର ପରାସ୍ତ ସୈନିକ ।
କିଏ ସେ ତରୁଣ ଶିଳ୍ପୀ !
ଅତନ୍ଦ୍ର ରଜନୀର ଶେଷଯାମେ ।
ମ୍ଳାନ ଦୀପ ଶିଖା ପାର୍ଶ୍ୱେ, ଆବକ୍ଷ ନାରୀ ମୂର୍ତ୍ତିଟିରେ
ଭରି ଦେଲା ଉଷାର ଅପୂର୍ବରାଗ,
ଛନ୍ଦାୟିତ ହେଲା ହଜିଯାଇଥିବା ସମସ୍ତ କଳ୍ପନା ।
ସେ ଯେ ଦେବଶିଶୁ ନିଜ ରକ୍ତର ।
ନାରୀର ପୂର୍ଣ୍ଣତା ଜନନୀରେ, ପ୍ରେୟସୀରେ ନୁହେଁ
ସେ ଏକ ନୂତନ ସଂସ୍କରଣ ଧର୍ମପଦର ।



# କୋଣାର୍କ

ସିନ୍ଧୁ ସେନ

କୋଣାର୍କ !
ତୋ ମନ୍ଦିର ଏକ ଚଳନ୍ତି ରଥ
ଚଉପାଶେ ଅଶ୍ୱ ବେଷ୍ଟିତ
ଏକ ନୁହେଁ, ଅନେକ ଦେବତା
ତୋ ଗାତ୍ରରେ ପୂଜିତ
ତେବେ, ତୋ କଳା ସ୍ଥାପତ୍ୟ, ଭାସ୍କର୍ଯ୍ୟ
ଅଟେ, ତୋର ଅମୂଲ୍ୟ ସମ୍ପଦ ।
କୋଣାର୍କ !
ତୋତେ ଦେଖି ମନେ ଜାଗେ ସଂଶୟ
ତୋ ଭଗ୍ନାଂଶ ଯଦି ଏତେ ସୁନ୍ଦର
ତୋ ସମ୍ପୂର୍ଣ୍ଣ ପ୍ରଥମ ମନ୍ଦିର ଶୋଭା
ସତରେ କି, ଅପୂର୍ବ ନ ଥିବ ।।
କୋଣାର୍କ !
ସତରେ ତୋ ସମଗ୍ର ଚିତ୍ରପଟ
ଅଟେ ଏକ ବିଶାଳ ଗ୍ରନ୍ଥାଗାର
ତୋ କଳା, ସ୍ଥାପତ୍ୟର ଇତିହାସ
ଅଟଇ, ବିସ୍ତୃତ ଗବେଷଣାଗାର ।
କୋଣାର୍କ !
କିଏ କହେ ତୁ ନିର୍ଜୀବ
ତୋ ଶିଳାରେ, ମୁଁ ଦେଖିଛି
ଆତ୍ମା ଆଉ ହୃଦୟ ।

ନିର୍ଜନ ସେ ଝାଉଁପ୍ରାନ୍ତେ
ପତ୍ରଝଡ଼ା, ମର୍ମର ଶବ୍ଦେ
ପ୍ରତିଧ୍ୱନି, ଶୁଭେ ବାରବାର ।
କୋଣାର୍କ !
ତୋତେ ନେଇ, ଏ ଜାତି ଗର୍ବ କରେ
ତୋ ଭଳି କନ୍ୟା ପାଇ
ଉତ୍କଳ ଯେ ବିଶ୍ୱେ ପୂଜାପାଏ
ହେଲେ, ଆଜି ତୋର ଶ୍ରୀହୀନ ଅଙ୍ଗକୁ ଦେଖି
ମୋ ଅନ୍ତରେ କୋହ ଜାଗଇ,
ତୋ ପାଇଁ ମୋ ମନେ ବ୍ୟଥା ହୁଅଇ ।
କୋଣାର୍କ !
କହ ଥରେ କହ
ଅତୀତ ଉତ୍କଳ ପାଇଁ
ତୋ ଆଖିରୁ ଝରୁନି କି ଲୁହ
କାହିଁ ସେ ଉତ୍କଳ,
କାହିଁ ସେ ସୁକୃତି
କାହିଁ ସେ ଧରମା,
କାହିଁ ତା'ର ଶିଳ୍ପୀଜାତି,
କାହିଁ ତା'ର ଗୌରବ
କାହିଁ ଅବା ପୂର୍ବ ସଂସ୍କୃତି ।
କୋଣାର୍କ !
ତୋ ଲାବଣ୍ୟ ଶରୀର
ଆଜି କ୍ଷତ ବିକ୍ଷତ
ତୋ ଆତ୍ମାରୁ ଝରିପଡ଼େ
ଟୋପା ଟୋପା ଶୋଣିତ
ହେ ପାଷାଣୀ କନ୍ୟା !
ତୋ ପାଇଁ କେତେ କବିତା
କେତେ ପୁଣି ଗବେଷଣା
ହେଲେ, କାହିଁ ସେହି କଳାକାର
ଯିଏ ତୋତେ କରିଥିଲା
କରି ଏତେ ସୁନ୍ଦର ।

୩୧୪ କବିତା କୋଣାର୍କ

କୋଣାର୍କ !
ତୋ ଦେହରେ ଏବେ ଦିଶେ
ଠାଏ ଠାଏ ଫଟାଦାଗ
ତୋ ଶିଳା ଯେ ଭାଙ୍ଗିରୁଜି
ହୁଏ ଚୁରମାର
ସେ ଦାଗ କି ଲିଭିପାରେ
ସିମେଣ୍ଟ କଂକ୍ରିଟରେ
କରିଦେଲେ ପ୍ରଲେପ ।
କୋଣାର୍କ !
ତୋ କ୍ଷତାକ୍ତ ଶରୀରରୁ
ରୁଧିର ପଡ଼ଇ ଝରି
କେତେଦିନ ଅବା ତୁହି
ମୂକପରି ରହିଥିବୁ ପଡ଼ି
କହ କହ କୋଣାରକ
ଥରେ ଖୋଲି କହ
ତୋ ଆତ୍ମା କି ଜଳୁନାହିଁ
ଦେଖି, ଏ ଜାତିର କୋହ ।
କୋଣାର୍କ !
ଏବେ ବି ତୋ ପୀଠେ
ଅନେକେ ଆସନ୍ତି
ଆମୋଦ, ପ୍ରମୋଦେ ମାତନ୍ତି
ତୋ ମୈଥୁନ ଚିତ୍ରପଟ ଦେଖି
ଅନେକେ ବିଦ୍ରୂପ ବି କରନ୍ତି
ହେଲେ, ତୋ କଳାର ଚାତୁର୍ଯ୍ୟ
କିଏ କେତେ ବୁଝନ୍ତି ।



('ମଣିଷ ଖୋଜିବାର ବେଳ' ପୁସ୍ତକର 'କୋଣାର୍କ' କବିତାର ସଂପାଦିତ ଅଂଶ)

# କୋଣାର୍କ

ମିନାକ୍ଷୀ ସିଂହ

ସାଗର ବେଳାରେ କୋଣାରକ ଆଜି
ନୀରବେ ଗାଉଛି ଗାଥା
ବିଶୁ ମହାରଣା ବାରଶ ବଢ଼େଇ
ବାଳକ ଧରମା କଥା ।
ଝାଉଁ ବାଗିଚାର ମର୍ମର ସ୍ୱର
କାନେ କାନେ ଯାଏ କହି
ବାଲୁକା ଶେଯରେ ଅତୀତ ଶୋଇ
କାନ୍ଦୁଅଛି କଇଁ କଇଁ ।
ପଥର ନୃତ୍ୟ ନାୟିକା ନୀରବେ
ବଖାଣେ ଅକୁହା କଥା
ପାଦର ନୂପୁର ଛନ୍ଦ ହରାଇଛି
ଆଖିରୁ ନିଗାଡ଼େ ବ୍ୟଥା ।
ପ୍ରସ୍ତର ଜନନୀ ପ୍ରାଣ କାନ୍ଦୁଅଛି
ବିଧୂରା ଜନନୀ ପାଇଁ
ଶିଳ୍ପୀପୁତ୍ର ଯା'ର ଫେରିନଥିଲେ
ପଥ ଯାର ଚାହିଁ ଚାହିଁ ।
ସେଇ ଶିଳ୍ପୀଙ୍କର ଝାଳରେ ଲୁଣିଆ
ଚନ୍ଦ୍ରଭାଗାର ଜଳ
ତାଙ୍କର ହସ ଚୋରେଇ ହସେ
ପ୍ରତିଟି ଶିଳ ଫୁଲ ।

ଦର୍ଶକ ଦେଖେ ମୁଗ୍ଧ ଆଖିରେ
ପଥର ସୂକ୍ଷ୍ମ ଖୋଦେଇ
ଚାରୁ କାରୁକଳା ବିଦେଶିନୀଙ୍କର
ପଲକ ନିଏ ଚୋରେଇ ।
ମନ୍ଦିରନାହିଁ ମୂକସାକ୍ଷୀ ରୂପେ
ଛିଡ଼ା ହୋଇ ମୁଖଶାଳା
ଧନ୍ୟ କରୁଛି ଚନ୍ଦ୍ରଭାଗାର
ଶୁଭ୍ର ସିକତା ବେଳା ।
ବଖାଣୁଛି ସିଏ ହଜିଲା ଅତୀତ
ଶିଳ୍ପୀ କୁଳର କଥା
ରୁକ୍ଷ ପାଷାଣେ ଜୀବନ ଢାଳି ଯେ
ଲେଖିଛି ଚାରୁ କବିତା ।
ମନ୍ଦିର ଗାତ୍ର କୀର୍ତ୍ତିରାଜି କହେ
ଅୟୁତ ଯୁଗର କଥା
ଆଜି ବି ବଖାଣେ ଭଗ୍ନଶିଳା ଏଠି
ଅତୀତ ଜୀବନ ଗାଥା ।



# ଅମର କୀର୍ତ୍ତି

ଚକ୍ରଧର ରାଉତ

ପ୍ରାଚୀ-ନଦୀ ଦୂରେ ବହିଯାଉଥିଲା
ମନ୍ଦ-ମଧୁର ତାନେ
ଭାସ୍କର-ଜଣେ ଥିଲେ ତା'ର ତୀର
ଅଦୂର ପଲ୍ଲୀ ଗ୍ରାମେ;
ସନ୍ଧ୍ୟା ଆଗମେ ଆପଣା କୁଟୀର
ପ୍ରାଙ୍ଗଣେ ହୋଇ ଉଭା
ବିଲୋକୁ ଥିଲେ ସେ' ଦରଗଢ଼ା ଏକ-
ଅଶ୍ୱ-ମୂରତି ଶୋଭା ।
ନିହଣ ଆଘାତେ ମୂର୍ତ୍ତିର ଦେହୁ-
ପଡୁଥିଲା ଝରି, ଝରି...
ପ୍ରସ୍ତର-ଧୂଳି; ସଜଳ ମେଘରୁ
ବୃଷ୍ଟିର ଧାରା ପରି;
ନିହଣ ଶବଦ ଶାନ୍ତ ପହରେ-
ଶୁଭୁଥିଲା ରହି, ରହି
ଗୃହିଣୀ ସେଠାରେ ପ୍ରଦୀପଟିଏ ସେ'
ଚାଲିଗଲେ ରଖି ଦେଇ;
ଦୂରୁ ସେ ସମୟେ ଭାସି ଆସୁଥିଲା
ଅଶ୍ୱ ଖୁରାର - ନାଦ
ଦ୍ୱାର ଦେଶେ ଧୀରେ ଶବ୍ଦ - ଶୁଭିଲା
ଅଶ୍ୱାରୋହୀର - ପାଦ ।
କିଏ ଅଛ ଘରେ ? ଆଶ୍ରୟ ଦିଅ
ଆଜି ଏ ରାତ୍ରି ପାଇଁ

ପଥଶ୍ରମେ ବଡ଼          କ୍ଳାନ୍ତ ମୁଁ, ମୋର-
ଅଶ୍ୱ ବି ଚଳେ ନାହିଁ ।
'ଅତିଥି' ଆସିବା          ବାରତା ଦେବାକୁ
ଚାଲି ଯାଉଥିଲେ ଖରେ
ଗୃହିଣୀ ଯେ କାଳେ          ବାରଣ କରିଲେ
ଈସତ୍ ଇଙ୍ଗିତରେ
ଆଗନ୍ତୁକ ସେ-          ପରିଚୟ ହୀନ
ଇଚ୍ଛୁକ ହେଲେ ନାହିଁ
ଶିଳ୍ପୀର ନବ          ସୃଷ୍ଟିରୁ ତା'ର
ଧିଆନ ଭଙ୍ଗ ପାଇଁ ।
ପଦ ମାର୍ଜନେ          ଜଳ ପାତ୍ରଟି
ଥୋଇ ଦେଇ ଗଲେ ଚାଲି
ରଂଧନ ଶାଳେ;          ବସିବାର ପାଇଁ
ଆସନଟି ଦେଇ ପାରି
ଭାସ୍କର ତେଣେ          ତନ୍ମୟେ ଥରେ
ମୂର୍ତ୍ତିକୁ ଦେଇ ଚାହିଁ
ଅତୀତର ଦର-ହଜିଲା          ସ୍ମୃତିର
ଝିଅକୁ ଯୋଡ଼ିବା ପାଇଁ
ଅଧୀର ଆବେଗେ          ଦେଖୁଥିଲେ ଯେବେ;
ଗୃହିଣୀ ଏ କାଳେ ଆସି
ଭୋଜନର ପାଇଁ          ଅତିଥିଙ୍କୁ ଥରେ
ସବିନୟେ ଗଲେ ଭାଷି ।
ସେତିକି ବେଳରେ          ଶିଳ୍ପୀ କହିଲେ
ପତ୍ନୀକୁ ତା'ର ଡାକି
'ବଡ଼ ନିର୍ବୋଧ !          ଉତ୍କଳ-ରାଜା
ଆଉ କିସ ଅଛି ବାକି
ଗୌଡ଼-ଦେଶରେ          ଯୁଦ୍ଧ କରୁଛି
ମୋ' ଦେଶ 'ମଉଡ଼ - ମଣି'
ରକ୍ତ-ପାତରେ          'ଅମରତ୍ୱ' ସେ
ସତେ କି ପାରିବ ଆଣି ?

ଅତିଥି ରଭସେ ଉତ୍ତର ଦେଲେ-
ଯୁଦ୍ଧ ରାଜାର - ଧର୍ମ
ପ୍ରଜାର - ପାଳନେ ଶାନ୍ତିରେ ସିଏ
ସାଧଇ ମହତ କର୍ମ ।
ଅଜଣା କଣ୍ଠ ସ୍ୱର ଶୁଣି ଥରେ
ଅତିଥିର ପାଶେ ଯାଇ
କ୍ଷମା-ପ୍ରାର୍ଥନା ଲୋଡ଼ିଥିଲେ ନିଜ
ଅନବଧାନତା ପାଇଁ !
ଦରହାସେ ବାରେ ବୋଇଲେ ଅତିଥି
ଉତ୍ତର ଦିଅ ମୋତେ
କେଉଁପରି ରାଜା ଅକ୍ଷୟ ଯଶ
ରଖିଯିବେ କାଳ ସ୍ରୋତେ... !
ଭାସ୍କର ଧୀରେ ଉତ୍ତର ଦେଲେ
ଶୁଣ ଆହେ ମହାମତି !
ଆମ ରାଜାଙ୍କର ପୂର୍ବ ପୁରୁଷ
ପରିଚିତ ପରା ଅତି
ଭୁବନେଶ୍ୱର ଓ ପୁରୀ, ଯାଜପୁରେ
ତୁଙ୍ଗ-ଦେଉଳ ଗଢ଼ି
ଇତିହାସେ ରଖି ଅକ୍ଷୟ - ଯଶ
ଅମର ସେ ଆଜି, ମରି ।
ଉତ୍ତର - ଶୁଣି କରିଲେ ଅତିଥି
ମସ୍ତକ ଅବନତ
କ୍ଳାନ୍ତ-ଶରୀରେ ହୋଇଲେ କ୍ଷଣକେ
ନିବିଡ଼-ନିଦ୍ରାଗତ !
କୁଟୀର ବାହାରେ ପ୍ରଦୀପ ହସ୍ତେ
ଶିଳ୍ପୀ ଚମକେ ଦେଖି
ହଜିଲା ସ୍ମୃତିର ଅଶ୍ୱ ଗୋଟିକ
ସମ୍ମୁଖେ ଉଭା ସେ କି ?
ପ୍ରସ୍ତର ଦେହେ ନିହଣ, ମୁଗୁରେ
ଆଘାତ ସେ କରି କରି

ଶିଳ୍ପ-ସାଧନେ          ସଙ୍ଗୀତ ଅବା
ଯାଉଥିଲା ଝରି ଝରି...
କ୍ଳାନ୍ତ ଅତିଥି          ପାହାନ୍ତି ପହରେ
ନିଦ୍ରା ବରଜି ଖରେ
ପ୍ରାଙ୍ଗଣେ ଚାହିଁ          ଦେଖିଲେ ତ ଉଭା
ଅଶ୍ୱଟି ନୀରବରେ
ଗ୍ରୀବା ଦେଶେ ଛୁଇଁ          ସସ୍ନେହ ଭରେ
କଲେ ସେ ଆଲିଙ୍ଗନ
ନିମିଷକେ ହେଲେ          ବୁଝି ପାରିଥିଲେ
ଆପଣାର ବିଭ୍ରମ ।
ଶିଳ୍ପୀର ସେତ          ପାଷାଣ - ଅଶ୍ୱ
ଅଦ୍ଭୁତ ଏକ ସୃଷ୍ଟି
ଭ୍ରମ ଆଣି ଦେଲା          ବାସ୍ତବତାର
ଖୋଲି ଦେଇ ନବ ଦୃଷ୍ଟି ।

x          x          x

ଚୈତ୍ରର ଏକ          ସନ୍ଧ୍ୟାରେ ଦୁଇ
କଟୁଆଳ ଉପଗତ
ଭାସ୍କର ଦିନେ          ପତ୍ନୀ ସହିତ
ଯେ କାଳେ ଆଳାପ ରତ ।
'ମଣିମା' - ଆଦେଶ,          ଚାଲ ମହାରଣା
ସଙ୍ଗତେ ବେନିଜନ
ମଣିମା ତ ନିଜେ          ଅଳପ ଦୂରକୁ
କରିଛନ୍ତି ଆଗମନ ।
କଟୁଆଳଠାରୁ          ଶୁଣି ଏ ବାରତା
ଭାସ୍କର ଭୀତ ଅତି
ମନେ ବିଚାରଇ          ମହାରାଜା ନିଜେ
ସଦୟ ସେ ମହାମତି ।
ନାରୀକେଳ - ତରୁ          ବେଷ୍ଟିତ ଏକ
ଦେଉଳର ଚତ୍ୱରେ,

ମହାରଣା ନିଜ ପତ୍ନୀ-ସହିତ
ଉପଗତ ସତ୍ୱରେ ।
ଦେଖିଲେ ସେଠାରେ ସୁପୁରୁଷ ଜଣେ
କରୁଛନ୍ତି ବିଚରଣ
ଲକ୍ଷ-ଓଡ଼ିଆ 'ମଉଡ଼-ମଣି' ସେ
ମୁଖ ଦିଶେ ଅମ୍ଳାନ ।
ନରସିଂହ - ଦେବ; ପାଦେ ପଡ଼ିବାକୁ
ଉଦ୍ୟତ ମହାରଣା
ହେଉଥିଲେ ଯେବେ; କରଧରି ତା'ର
ମହାରାଜା ମହାମନା
ସମ୍ବୋଧି ତାକୁ କହିଥିଲେ 'ତୁମେ-
ମୋ'ଠାରୁ ତ ଅଟ ବଡ଼
ବିମଳ ତୁମର କୀରତି ନିକଟେ
ତୁଚ୍ଛ ମୋ' ରାଜପଣ
ଏ' ଜାତିର ଚିର- ନମସ୍ୟ ତୁମେ
ଅଶ୍ୱ ମୋ' ଯିବ ମରି
ପ୍ରତିମୂର୍ତ୍ତି ତା ଦିଅ ହେ ଶିଳ୍ପୀ
ସ୍ମୃତିରେ ରହିବ ଭରି ।
'ଅର୍କ-ଦେଉଳ' ନିର୍ମାଣ ପାଇଁ
ଆଦେଶ ଦେଉଛି ଆଜି,
କୋଣାରକେ ତୋଳ ମନ୍ଦିର ତାହା
ରଥ ପରି ଥିବ ସାଜି ।
ମୋ ଦେଶ ଅମର- ଶିଳ୍ପୀର ଦେଶ
ଜାତିର 'କୀର୍ତ୍ତି ଶାଳା'
ନିର୍ମାଣ କର ମୋ' ଦେଶର ଛବି
ବିମଳ କୀର୍ତ୍ତି ମାଳା ।
ନରପତି ମୁଖୁଁ ନଶ୍ୱରେ ବାଣୀ
ଚକ୍ଷୁରୁ ଧାର, ଧାର
ଆନନ୍ଦ ଅଶ୍ରୁ ଝରିପଡ଼ି ଅବା
ରଚିଲା ଅଲିଭା ଗାର ।

'ଜୀବନ୍ତ ରହୁ          ଜାତିର ପ୍ରତିଭା
ଜାତି-ଭାଇ ସାଥେ ମିଶି
ଗଢ଼ିଦିଅ ମୋର          ସ୍ୱପ୍ନର ଯଶ
ରାଜୁଥିବ ଦିଶି, ଦିଶି !'
ଗଦ୍ ଗଦ୍ ଭାଷେ          କହେ ମହାରଣା
'ପିଣ୍ଡରେ ଥିଲେ ପ୍ରାଣ'
ଗଢ଼ିବି ଦେଉଳ          ଶକ୍ତି ମତେ ମୋ
ରଖିବି ଜାତିର ମାନ ।
ବଡ଼ ଦାଣ୍ଡରେ          ଛାମୁଙ୍କ ଅଶ୍ୱ
ମାତ୍ର ମୁଁ ଥରେ ଦେଖି
ପାଷାଣର ବୁକେ          ପ୍ରତିମୂର୍ତ୍ତି ତା
ନିହଣେ ଯାଇଛି ଲେଖି ।
'ଛାମୁଙ୍କର          ପ୍ରତିମୂର୍ତ୍ତି ଗଢ଼ିବି
ନୃପତି ବାରଣ କଲେ
ମୋ ଦେଶର          ପ୍ରତିମୂର୍ତ୍ତି ଗଢ଼ ହେ
ଶିଳ୍ପୀ ! ତୁମରି କରେ
ତୁମର ଓ ମୋର          ବଂଶଧର ଯେ
ଦେଖିଥିବେ ଚିରକାଳ
କାଳର ବକ୍ଷେ          ଶିଳ୍ପ ତୁମର
କାଟିବ ସୁନେଲି ଗାର ।

x          x          x

ଦୂରେ କୋଣାରକ          ବାଲୁକା ତଳପେ
ଦେଉଳ ପଡ଼ିଛି ଭାଜି
ଶିଳ୍ପୀର ସେଇ          ଅମର କୀରତି
ଭାସ୍ୱର ଦିଶେ ଆଜି ।



# ଶିଳ୍ପୀ

ନୀଳକଂଠ ରଥ

x x x

ଅଙ୍ଗ ପ୍ରତିଅଙ୍ଗ
ଗତି ସୁଯତନେ
ଖଞ୍ଜିଲା ତହିଁରେ
କଳ କୌଶଳେ
ଜୀବିତମାନବ
ଅଙ୍ଗ ସଂଚାଳନ
କରଇ ଯେପରି
ପ୍ରକୃତି ବଳେ ।
ମସ୍ତକ ଖଞ୍ଜିଲା
ଅଦ୍ଭୁତ ଉପାୟେ
ସେ କେବଳ ଜାଣେ
ସେହି କୌଶଳ
ଟିପି ଦେଲେ ଛାତି
ବୁଲିଯାଏ ମଥା
ସତେକି ଏ ବିଶ୍ୱ-
କର୍ମା ବିଶ୍ୱର ।
ନେତ୍ରପାଇଁ କାଚ
ଡୋଳା ଖଞ୍ଜିଦେଲା
ମଧ୍ୟରେ ତାରକା
ଦ୍ୱୟ ବସାଇ

ଲମ୍ଫ ଯନ୍ତ୍ରବଶ୍ୟେ
ଅନିଳ ସ୍ପର୍ଶେ
ଡୋଳାଦ୍ୱୟ ସଦା
ଚହଲୁ ଥାଇ ।
ଚଳନ ଶକତି
ରଖି ଆଣ୍ଡୁ କତି
ତା ଚାବି ରଖିଲା
ପାପୁଲି ମଧ୍ୟେ ।
ଚାଲିଲେ ପାପୁଲି
ପ୍ରତିମା ଟହଲି
ଚାଲି ଯାଉଥିଲା
ଆଗକୁ ପାଦେ ।
ଆଚମ୍ବିତ କଥା
ଆଉ ଏକ ଶୁଣ
ଚିବୁକ ଚିପିଲେ
ଊର୍ଦ୍ଧ୍ୱକୁ ହସ୍ତ
ଉଠି ଯାଉଥିଲା
ବିଶ୍ୱାସ କେ ଯିବ
ଅଦେଖା ଲୋକକୁ
ହେବ ଅସତ୍ୟ ।
ଏହିପରି ନା ନା
ଯନ୍ତ୍ର ଖଞ୍ଜି ତା'ରେ
ଚଂଢ଼ାଇଲା ଖଳି
ଗଢ଼ା ଛାଞ୍ଚରେ
ସୁଷମା ଲହରୀ
ସୁକ୍ଷମେ ଖେଳାଇ
ଲଗାଇଲା ମନ
ଅବଶିଷ୍ଟରେ ।

ଡାଳିମ୍ବ ଦଶନ
ସ୍ୱହସ୍ତେ ନିର୍ମାଣ
କରି ମୁଖ ମଧ୍ୟେ
ଦେଲା ବସାଇ
ଦର୍ଶକର ଚିତ୍ତ
ମୋହି ଦେଲା ଛବି
ଦିଅନ୍ତେ ଅଧରେ
ସ୍ମିତ ଖେଳାଇ ।
ମୃଗବାଳ ଆଣି
ରୋପିଲା ମସ୍ତକେ
ଯୁବତୀ ନାରୀର
ଶୋଭା ଭଣ୍ଡାର
ସରୁ ଲୋମ ଚକ୍ଷୁ-
ପତାରେ ଦିଅନ୍ତେ
ବଢ଼ିଗଲା ମୁଖ-
ଶୋଭା ବିସ୍ତାର ।
ଭ୍ରୂଲତା ଯୁଗଳ
ମଦନ କାର୍ମୁକ
ଗଢ଼ି ରୋପିଦେଲା
ରୋମ ତହିଁରେ ।
ଜୀବନ୍ତ ରୂପକୁ
ଧଇଲା ପ୍ରତିମା
ଋଷି ମନ ଭାଙ୍ଗି
ଯିବ ଯହିଁରେ ।
ପ୍ରତିମାର ଅଙ୍ଗ
ରସାଣିଲା ଦେଇ
ହଳଦିଆ ରଙ୍ଗ
ଆମୂଳ ଚୂଳ

ଖେଳିଗଲା ଅଙ୍ଗେ
    କମନୀୟ କାନ୍ତି
ନ ରହିଲା ବିଶ୍ୱେ
    ତା ସମତୁଲ ।
ବକ୍ଷୋଜ ଜଘନ
    କନ୍ଦର୍ପ ସଦନ
ନିଶାଣିଲା ଆଦି-
    ରସକୁ ଦେଇ ।
ନୀଳୋତ୍ପଳ କାନ୍ତି
    ଫୁଟାଇ ନୟନେ
ଓଷ୍ଠ ଦୁଇଟିକୁ
    ଦେଲା ରଙ୍ଗେଇ ।
ତିଳପୁଷ୍ପ ସମ
    ନାସିକା ଗଢ଼ଣ
ବଦନ ଶୋଭାର
    ମୂଳ ଭଣ୍ଡାର
ବିକଚ ପଙ୍କଜ
    ବଦନର ଶୋଭା
କିବା ଅକଳଙ୍କ
    ଚନ୍ଦ୍ରମା ସାର ।
ଏହିପରି ଗଢ଼ି
    କନ୍ୟାର ସାଦୃଶ୍ୟ
ବିଭୂଷଣେ ତା'ର
    ବଳିଲା ମନ ।
ପାଶେ ଥିଲା ଯେତେ
    ଭେଲ ଆଭରଣ
ଆଣି ଏକତ୍ରିତ
    କଲା ବହନ ।

ବାଛି ବାଛି ତହୁଁ
　　କରିଲା ବାହାର
ମନୋନୀତ ହେଲା
　　ଯହିଁକି ଯାହା
ଗୋଟି ଗୋଟି କରି
　　ଖଞ୍ଜିଲା ତନୁରେ
ସ୍ମରି କନ୍ୟାରୂପ
　　ନେଇଣ ତାହା ।
* ଝୁମ୍ପା ଝରା କାଠି
　　ପ୍ରଥମେ ଖଞ୍ଜିଲା
ରୂପା ପାତିଆକୁ
　　ଖୋସାରେ ଦେଇ ।
ତା' ପରେ ରାଗିଡ଼ି-
　　ମାଳ ଖଞ୍ଜି ଦେଲା ।
ଯୋଷା ରତନର
　　ଭୂଷା ବଢ଼େଇ ।
ଝିଙ୍କାହାର ଦୁଇ
　　ଶ୍ରବଣେ ପିନ୍ଧାଇ
ଖୋସି ଦେଲା ଅଗ୍ର
　　ନେଇ ଖୋସାରେ ।

(* ଏଥିରେ ଯେଉଁ ଅଳଙ୍କାରଗୁଡ଼ିକର ନାମୋଲ୍ଲେଖ ରହିଛି, ସେଗୁଡ଼ିକ ଶପ୍ତଦଶ ଶତାବ୍ଦୀର ସାମାଜିକ ଆଭରଣ । ଆଜିକାଲି ସେଗୁଡ଼ିକର ବ୍ୟବହାର ଆଦୌ ନାହିଁ କହିଲେ ଚଳେ । କେବଳ ନିମ୍ନ ଶ୍ରେଣୀର ସ୍ତ୍ରୀମାନେ ସେଥି ମଧ୍ୟରୁ କେତେ ଅଳଙ୍କାର ବ୍ୟବହାର କରୁଥିବା ଜଣାଯାଏ । ଯେ ଅଳଙ୍କାର ଦିନେ ଭଦ୍ରମହିଳାମାନଙ୍କର ପ୍ରିୟତମ ଜିନିଷ ଥିଲା, ଆଜି ତାହା ପରିତ୍ୟକ୍ତ । ଏହି ତ ପରିବର୍ତ୍ତନଶୀଳ ପ୍ରକୃତିର ନୀତି ।)

ମସ୍ତକ ପୃଷ୍ଠରେ
ଖଞ୍ଜିଲା ରାଗିଡ଼ି
ହଳଦୀ ଫଡ଼ାକୁ
ରଖି ଆଗରେ ।
ତା' ଅଗ୍ରେ ଖଞ୍ଜିଲା
ନେଇ ପାନପତ୍ର
ଶିଖର ମଣ୍ଡନ
ହୋଇଲା ଶେଷ ।
ଶ୍ରୁତି ଯୁଗଳରେ
କର୍ଣ୍ଣଫୁଲ ଖଞ୍ଜି
ତା ଉର୍ଦ୍ଧ୍ୱେ ରଖିଲା
ଗୁଣା ବିଶେଷ ।
ଗୁଣାପାଶେ ମଲ୍ଲି-
କଡି ଲଗାଇଲା
ତଳେ ବାଡ଼ି ପେଣ୍ଡି
ଝଲକା ଦ୍ୱୟ ।
ଯତନେ ପିନ୍ଧାଇ
ଭାଳିଲା ମାନସେ
ଦୁହିତା ସରାଜ
ଭୂଷା ନିଚୟ ।
ନାସିକା ମଣ୍ଡନେ
ବଳାଇଲା ମନ
ରତ୍ନଶୋଭା ଢିଣା
ଦଣ୍ଡି ମଣ୍ଡିଲା ।
ଅପସରା ଶୋଭା
ନୁହେ ମନଲୋଭା
ଏ ଭାବନା ତା'ର
ମନେ ଜାଗିଲା ।
ନାକଚଣା ପାଶେ
ଲୋଥକୁ ପିନ୍ଧାଇ
ହଂସ ଗୁଣା ଯତ୍ନେ
ତହିଁ ଖଞ୍ଜିଲା ।

କାଳୋଚିତ ଶୋଭା
ନାରୀମନ ଲୋଭା
ଦେଖି ଧୈର୍ଯ୍ୟଯୁବା
ମୃତ୍ୟୁ ଭଜିଲା ।
କଣ୍ଠ ବିଭୂଷଣେ
ପ୍ରଥା ଭାଳି ମନେ
କୁମ୍ଭ କଣ୍ଠିହାର
ଦେଲା ପ୍ରଥମେ ।
ଆପଟା କଣ୍ଠିର
ହାର ତା'ର ତଳେ
ଲଗାଇ ହରଷ
ଲଭିଲା ମନେ ।
ସୋରସିଆମାଳ
ଧାନୁଆଁ ଆବର
କାନ୍ଧୁଲ ଫାଳିଆ
ହାରକୁ ନେଇ ।
କରି ତଳ ତଳ
ପିନ୍ଧାଇ ସକଳ
କଳି ନେଲା ଶୋଭା
ଚାହିଁ ବଙ୍କେଇ ।
ଦୁଇ କରେ କାଚ
ଶଙ୍ଖାକୁ ପିନ୍ଧାଇ
ତା'ର ଦୁଇପାଶେ
ଖଡୁ ଗୁଞ୍ଜର ।
ରଜତ ରଙ୍ଗର
ତାଡ଼ିକୁ ପିନ୍ଧାଇ
ବଢ଼ାଇଲା ଶୋଭା
ଅଧିକ ତର ।

ଅଣ୍ଟା ପାଟିଆକୁ
        କଟୀରେ ପିନ୍ଧାଇ
ଯୋଡ଼ି ଅଣ୍ଟା ସୂତା
        ଦେଲା ତା ତଳେ ।
* ତୈଲଙ୍ଗୀ ବାଳାର
        ଖ୍ୟାତି ନମ୍ର କରି
ନିତମ୍ବ ମାଧୁରୀ
        ବଢ଼ିଲା ଭଲେ ।
ପେଣ୍ଡାମୂଳେ ଦେଲା
        ପାହୁଡ଼ ପିନ୍ଧାଇ
ତା ତଳେ ବଳୟ
        ଶୋଭା ପାଇଲା ।
ସର୍ବୋପରେ ଅଙ୍କି
        ଦ୍ୱୟକୁ ପିନ୍ଧାଇ
ସୌନ୍ଦର୍ଯ୍ୟ ପାନରେ
        ତୁଷ୍ଟି ଲଭିଲା ।
ପାଦ ଅଙ୍ଗୁଳିରେ
        ନେଇ ଗଳାଇଲା
ଝୁଣ୍ଟିଆ ଚିଙ୍ଗୁଡ଼ି-
        ଚୋପାର ମୁଦି ।
ବିନ୍ଦୁ, ରୋହିମାଛ,
        ପିଆଜ ଫୁଲରେ,
ମଣ୍ଡିଲା ଅଙ୍ଗୁଳି
        ଖଟାଇ ବୁଦ୍ଧି ।
କପାଳରେ ଅଭ୍ର
        ତା ମଧ୍ୟେ ତାରକା
ଆନନର ଶୋଭା
        ଦେଲା ବଢ଼ାଇ ।

ଲାକ୍ଷାରସ ବେନି
ପୟରେ ଲଗାଇ
ସୌନ୍ଦର୍ଯ୍ୟ ଭଣ୍ଡାର
ଦେଲା ଫିଟାଇ ।
କୁମ୍ଭପକା ଲାଲ
କବେରୀ ପିନ୍ଧାଇ
ଅବ ଗୁଣ୍ଠନକୁ
ଦେଲା ମଥାରେ ।
ଓଡ଼ିଆ ସଂସ୍କୃତି
ପ୍ରତିରଖି ଦୃଷ୍ଟି
କଳି ନେଲା ଶିଳ୍ପ-
କଳା ସମ୍ଭାରେ ।
ପୁରାଣ ବର୍ଣ୍ଣିତ
ରମ୍ଭା ମେନକାର
ସୌନ୍ଦର୍ଯ୍ୟ ନିନ୍ଦିଲା
ଗଢ଼ା ପ୍ରତିମା ।
ରାଜଚିତ୍ର ଏହା
ଟଳାଇ ପାରିବ
ଜାଗିଲା ମାନସେ
ଏହି ଧାରଣା ।



(* ଭାରତର ବିଭିନ୍ନ ପ୍ରଦେଶର ରମଣୀମାନଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ବାତ୍ସ୍ୟାୟନ ଋଷି କେଉଁ ପ୍ରଦେଶର ରମଣୀ କେଉଁ ବିଶିଷ୍ଟ ଅଙ୍ଗ ପାଇଁ ଖ୍ୟାତି ଲାଭ କରିଛନ୍ତି, ତାହା ବର୍ଣ୍ଣନା କରିଛନ୍ତି । ତୈଲଙ୍ଗ ଦେଶର ରମଣୀମାନେ ଉତ୍ତମ ନିତମ୍ବ ପାଇଁ ଖ୍ୟାତି ଲାଭ କରିଥିବା କଥା ତାଙ୍କ ରଚନାରୁ ଜଣାଯାଏ ।)

(ଦୀର୍ଘ କାବ୍ୟର ସମ୍ପାଦିତ ଅଂଶ)

# କୋଣାର୍କ

କାର୍ତ୍ତିକେଶ୍ୱର ଲେଙ୍କା

କୋଣାର୍କ
ଲୁହ ଲହୁ ଝାଳ ପିଇ
ତନ୍ମୟ ହେଇ
ତୁମକୁ ଗଢ଼ିଥିବା
ବିନ୍ଧାଣୀମାନେ
ଦେଖ ହେଉଛନ୍ତି କିପରି
ଡହଳ ବିକଳ !

ତୁମକୁ ନେଇ ଚାଲିଛି
ତେଲ ଲୁଣର ସଂସାର
ଗର୍ବ କରୁଛି ଏ ଜାତି
ପାଷାଣରେ ଉଦ୍‌ଭାସିତ
ଏ ମାଟିର ଇତିହାସ, କଳା
ଗଉରବ ଗାଥା ଇସ୍ତାହାର ।
ତୁମ ଛବି ତୁମ ମଧୁଶାଳା
ପ୍ରୀତିର ଫୁଆର
ଛମ୍ ଛମ୍ ନୂପୁର
ମଦିରାର ଝରା
ନେସି ଯାଇଛି ଚାରୁ ଚିତ୍ରପଟ
ସ୍ୱପ୍ନିଳ ଆଖିର ନଜର

ପର୍ଯ୍ୟଟକ କବି ଚିତ୍ରକର
ବିଦେଶୀ
ମନ୍ତ୍ରମୁଗ୍ଧ
ଅଧୀର ବିଭୋର ।

ଆଉଜଣେ ଧରମାକୁ ପ୍ରତୀକ୍ଷିତ
ତୁମର ଏ ଅଲିଭା ଭାସ୍କର୍ଯ୍ୟ
ତୁମ ଅଶ୍ୱ ତୁମ ଚକ୍ର
ଅଫୁରନ୍ତ ଜୀବନ୍ତ ଆଶ୍ଚର୍ଯ୍ୟ
ତୁମ ରୂପ ତୁମ ସୂର୍ଯ୍ୟୋଦୟ
ମନେପଡ଼େ ହୃଦୟରେ
ସଞ୍ଚରିତ ହୁଅ, ଝରିଯାଅ
କହିଯାଅ, ରଚିଯାଅ
ମନ୍ମୟ ବିସ୍ମୟ
ସମୟର ମୂକସାକ୍ଷୀ
ଅସ୍ତରାଗ
ଅବିସ୍ମରଣୀୟ ॥



# କୋଣାର୍କ

ଚିନ୍ମୟ ରାୟ

ଏକ ଅମର ବେଳାରେ ତୋ'ର କାୟାକଳ୍ପ ସୃଜି
କଳିଙ୍ଗ ଶିଳ୍ପୀ ଅମର ହେଲେ ଯୁଗ ଯୁଗ ପାଇଁ
ତୁ ଏମିତି ସମ୍ପ୍ରଦାୟେ ଗୋଟାଏ ଜାତିର
ମନକୁ । ମାନକୁ ଦମ୍‌ଦେଉ
ବିଶ୍ୱ ସମକ୍ଷରେ...
ଚନ୍ଦ୍ରଭାଗା କୋଳରେ ତୁ ଖାଲି ବସିନାହୁଁ
ଲାଖିଛୁତୁ ଡ୍ରଇଁଗ୍ରୁମ୍ କାନ୍ଥରେ, କାହାର
ସାଇନ୍ ବୋର୍ଡରେ ଅବା ଗ୍ରିଟିଂ କାର୍ଡର
ସଙ୍କୁଚିତ ସ୍ଥାନରେ ଠାକି ଯାଇଛୁ
ନାଟ ମଣ୍ଡପରେ ତୋ'ର ଓଡ଼ିଶୀର
ଜନ୍ମଲଗ୍ନର ସ୍ମୃତି
ଧରମାର ଆତ୍ମୋତ୍ସର୍ଗ
ପୁଣି ବାର ବର୍ଷ ପାଇଁ, ବାସର ଶଯ୍ୟା ଛାଡ଼ି
ଆସିଥିବା ତରୁଣ ଶିଳ୍ପୀର ସ୍ୱୃତି, ଲୁହ,
ଉଷ୍ମ ଶ୍ୱାସକୁ ତୁ ଜୀର୍ଣ୍ଣ କରିଛୁ
କଳାର ମହତ୍ତ୍ୱ ଯୋଗୁଁ ରାଜାଟାକୁ
ପାନପାତ୍ର ଧରାଇ ରାତି ପୁହାଇଲୁ
ସମର୍ପିତ ଶିଳ୍ପୀପାଶେ ରାଜସିକ ଅହଂ ଝରାଇଲୁ
ତୁ ଅନନ୍ୟ, ତୁ ଅସାଧାରଣ

ସ୍ଖଳିତ, ପଳିତ ତୋ'ର ସତ୍ତା ଆଜି
ଯେମିତି ତୋତେ ଗଢ଼ିଥିବା ପ୍ରାଚୀନ ଜାତି
ଦୁର୍ବଳ ହୋଇ
ଫୁଲ, ଫଳ, ଶସ୍ୟ ସବୁ କରେ ଆମଦାନୀ
ଶିଥିଳ ପ୍ରାଣରେ ତା'ର ଭରିପାରିବୁ ସଞ୍ଜିବନୀ
ତୋ' ଗର୍ଭର ଦିଅଁ ପାଖୁ ଆଣି ସେହି
ଦିବାକରୀ ତେଜ
ସିଦ୍ଧି ଓ ଶକ୍ତିର ଦ୍ୟୋତକ
ବିଛାଡ଼ିଦେ ଏ ଜାତିରେ : ଗଢ଼ିବାକୁ
ଦ୍ୱିତୀୟ କୋଣାର୍କ
କୃଷ୍ଟିର ପୁଲକ ॥



# ସକାଳର ସୂର୍ଯ୍ୟାସ୍ତ

ବିଜୟ କେତନ ପଟ୍ଟନାୟକ

କୋଣାର୍କର ଝାଉଁବଣେ କାହାର ଏ କାନ୍ଦ କଇଁ କଇଁ
କା' ରକ୍ତର ନୀଳକଇଁ ଲୋଟିପଡ଼େ ସାଗର ଓଠରେ
କିଏ ସେ ସାଉଁଟେ ନିଦ, ମୁଠେ ଖାଲି ସ୍ୱସ୍ତିର ଶାମୁକା
କାହାର ଏ ଭଙ୍ଗା ଶ୍ୱାସ- ଯନ୍ତ୍ରଣାର ପ୍ରେତ କାକୁରିନା ?
ହେ ଶାଳ ଭଞ୍ଜିକା ଗଣ ! କୋଣାର୍କର ସୂର୍ଯ୍ୟ ଦେଉଳର;
ଚନ୍ଦ୍ରାହତା ରାତି ଯେବେ ଶୋଇପଡ଼େ ନିଝୁମ ନିଦରେ
ତୁମେ କି ପାରନା ଦେଖି ତା ଆଖିର ପୀଡ଼ିତ ଫଗୁଣ
ତୁମେ କି ପାରନା ଶୁଣି ତା କଣ୍ଠର ବିବର୍ଣ୍ଣ କୁନାଳ ?
ତା ସ୍ନାୟୁର ହାରେମ୍‌ରେ ଦେଖୁନାକି ଲାଲବତୀ ଜଳେ
ମମତାର ଝଡ଼ତଳେ ତା ନିର୍ମୋକ କେମିତି ଖସିଛି ।
ସିଏତ ଖୋଜୁଛି ଖାଲି ତା' ଅତୀତ ସୁବର୍ଣ୍ଣ ଅତୀତ;
ଧର୍ମପଦ, ତା ଧରମା ଯିଏ ତା'ର ଏକାନ୍ତ ନିଜର !
ନିଖୋଜ ଚେତନା ଈର୍ଷା, ଦେହମନ ଶବଠାରୁ ନିଦା
ବାରଶହ ବଢ଼େଇରେ ଭ୍ରାନ୍ତ ଏକ ବିବସ୍ତ୍ର ପାଗଳ,
ଖୋଜେ ଆଜି ତା' ରକ୍ତର କ୍ଲାନ୍ତ ଜବାଫୁଲ
(ଯାହା ଦିନେ ଧୋଇଗଲା ସାଗରର ଘନନୀଳ ବର୍ଷିଳ ଛାତିରେ)
ବିସ୍ତୀର୍ଣ୍ଣ ବାଲିର ଶେଯ, ଶବ ଏଇ ଧରିତ୍ରୀ ଆକାଶ
ଈଷତ୍ ହଳଦୀରଙ୍ଗ; ପରେ ପରେ ଜୀବନର ସୁଲଳିତ କାବ୍ୟ

ଶତାବ୍ଦୀର ବିଡ଼ମ୍ବନା; କାରୁଣ୍ୟର କୁମ୍ଭୀର କାନ୍ଦଣା
ଭାଙ୍ଗି ଦେଲା ମହାନିଦ୍ରା-ଜଗନ୍ନାଥ, ଅନନ୍ତ ଶୟନ !
ଆଞ୍ଜୁଳାଏ ରକ୍ତଚିତା ବସନ୍ତର ଆଦ୍ୟ-ଉତ୍ତରଣ
ଅନ୍ତଫାଡ଼ି ଆର୍ତ୍ତନାଦ କରେ । ସାମାନ୍ୟ ପ୍ରତୀକ୍ଷା କର ।
ବିଳମ୍ବ ସହେନା ଆଉ; ବାତ୍ସଲ୍ୟର ଅମ୍ଳାନ ସ୍ଫୁରଣ
କୋଟିଏ କାରୁଣ୍ୟ କରେ ଜଳଧିରେ ଆତ୍ମ ଉଲମ୍ଫନ !
ବିଷାକ୍ତ ଜଳଜ ଜନ୍ତୁ ତୀକ୍ଷ୍ଣଦନ୍ତେ କାରୁଣ୍ୟର ଭଗ୍ନ ଅବଶେଷ,
ରକ୍ତାକ୍ତ ପିତୃତ୍ୱ କିନ୍ତୁ ହସିଉଠେ ପ୍ରଶାନ୍ତିର ଚୁନି ଚୁନି ହସ ।।



# କୋଣାର୍କ ଅନୁଚିନ୍ତା

ଡା. ଉପେନ୍ଦ୍ର ପ୍ରସାଦ ନାୟକ

କଳ୍ପନାର କେଳିକୁଞ୍ଜେ
ମିଳିବା ପୂର୍ବରୁ
ଭାବନା ଚହଲିଗଲା
ଭୁଶୁଡ଼ି ପଡ଼ିଲା ମୋର
ଚିନ୍ତାର ମନ୍ଦିର,
ଶିଳ୍ପୀର ନିହାଣ ମୁନରେ ଗଢ଼ା
ଯେତେସବୁ ଚାରୁକଳା
କୋଣାର୍କର କାରୁକାର୍ଯ୍ୟ
ଅଚାନକେ କେମିତି ବା
ହେଲା ନାରଖାର ।

ବାରଶ କାରିଗରଙ୍କ
ବାରବର୍ଷର ତପସ୍ୟା ନିଷ୍ଠାରେ
କେମିତି ଯେ ରହିଗଲା ଦାଗ
ତଥାପି ତା' ସୌନ୍ଦର୍ଯ୍ୟ ଓ ଚାରୁଶୋଭା
ପ୍ରଚାରିତ ସର୍ବତ୍ର ଦିଗ ଓ ବିଦିଗ ।
ଏହି ଦୁଃଖରେ ଘାଣ୍ଟି ହେଲାବେଳେ
ପଛାତେ ଉଭା ଯେ ତୁମେ
ସମ୍ମାରେ ଦର୍ପଣ
ତୁମ ମୋ ନୀରବିତ ମୁହୂର୍ତ୍ତର

ବ୍ୟାପ୍ତ ବଳୟରେ
ପ୍ରସରିଗଲା ଲକ୍ଷେ ସଂଯୋଜନ ।

ତୁମ ଗୋଲାପୀ ହସର ନିମନ୍ତ୍ରଣେ
ମୁଁ ଉଦ୍‌ବେଳିତ ହେଲି
ସୁନେଲି ସମ୍ପର୍କର ଛନ୍ଦ ତୋଳି
କୋଣାର୍କ ସମୀକ୍ଷା ଭୁଲି
ଝାଉଁବଣେ ତୁମସାଥେ, ମୋହଗ୍ରସ୍ତ ହେଲି ।

ଆଙ୍କି ଦେଲି କୋଣାର୍କର ଚିତ୍ର
ପ୍ରେମର ବଳୟ ଢେଙ୍ଗ
ସମୀକ୍ଷା କରିଲି ନିଜେ
ସମାଜର ପ୍ରତିଟି ଚରିତ୍ର ।



# ଶିଳା ଓ ଶିଳ୍ପୀ

ନିର୍ମଳା ମହାପାତ୍ର

ହେ ନର୍ତ୍ତକୀ !    କେବେ ହେବ ଏ ନୃତ୍ୟର ଉଦ୍‌ଯାପନ ପର୍ବ ?
ବର୍ଷ ପରେ ବର୍ଷ ବିତେ ତାହାର ତ ନାହିଁ ପୂର୍ଣ୍ଣଛେଦ ।
ବିଚଳିତ ନୋହିଛତ ସୁଖ ଅବା ଦୁଃଖର ବାସରେ
ନାହିଁ ଶ୍ରାନ୍ତି, ନାହିଁ କ୍ଳାନ୍ତି ରତ ସେହି ନୃତ୍ୟ ଭଙ୍ଗିମାରେ ।
ନିକାଞ୍ଚନ ବାଲିବନ ତୁମକୁ କି ଦିଏ ନାହିଁ ଭୀତି ?
କେଉଁ ଆଶେ ଶିଳାବାସେ ବରିନେଲ ଦେଇତାରେ ସ୍ଥିତି ।
ମରୁମୟ ବାଲୁକାର ବାରମ୍ବାର ଅନୁରୋଧ କ୍ରମେ
ତୁମକୁ କିନରପତି ସମର୍ପିଲେ କୋଣାରକ ଧାମେ ?
ଦରବାର ଭରିବାକୁ ରୁମ୍‌ଝୁମ୍ ନୂପୁର ନିକ୍ୱଣେ
ହେଲକି ଅଯୋଗ୍ୟା ତୁମେ ବିଳାସୀ ସେ ରାଜଦୃଷ୍ଟି କୋଣେ ?
ସେଥିପାଇଁ ନିର୍ବାସିତା ହେଲକିବା ନିର୍ଜନ ପ୍ରାନ୍ତରେ
କହବାରେ ପ୍ରଶ୍ନବାଚୀ ଜାଗେ ଆଜି ଗହନ ଅନ୍ତରେ ?
ଶିଳାକନ୍ୟା ରୂପବନ୍ୟା ଛୁଟାଇଛ ତୁମରି ଅଙ୍ଗରେ
ଟାଣିନିଅ କଳାପ୍ରିୟ ଦର୍ଶକଙ୍କୁ ବେଳାଭୂମି ତୀରେ ।
ବୟସର ଅଙ୍କଗଣି ଶୋଣତ କି ହୁଏନି ଆକୁଳ ?
ଡାକି ଡାକି ଯାଏ ଥକି ଫଗୁଣର ମଞ୍ଜୁଳ ସକାଳ ।
ମଲ୍ଲିକାର ଗଂଧଭାର ବାସନ୍ତୀର ସନ୍ଧ୍ୟାଦିଏ ଭେଟି
ମଳୟର ମଧୁସ୍ପର୍ଶ ତୁମପାଶୁ ଫେରେ ମଥାପିଟି ।
ଜ୍ୟୋତ୍ସ୍ନାର ମଦିରା ପିଇ ବେଳାଭୂମି ନିଦେ ଯେବେ ଶୁଏ
ତରଳ ରଜତଛଳେ ଜହ୍ନଟା ଯେ ତୁମ ଅଙ୍ଗ ଛୁଏଁ ।

ବୈଶାଖର ବୈଶ୍ୱାନର ତମକୁ କି ଦିଏ ନାହିଁ ବ୍ୟଥା ?
ଫୁଟେ ନାକି ସ୍ମୃତି ପଟେ ମଧୁମୟ ଅତୀତର କଥା ?
ତୁମ କାନେ ବାଜେନା କି ଶ୍ରାବଣୀର ରିମ୍‌ଝିମ୍ ଗୀତି ?
ଉନ୍ମାଦିନୀ ଝାଉଁବଣେ କରେ ସିଏ ମନଭରି ପ୍ରୀତି ।
ତୁମେ କି ଖୋଜନା କେବେ ମନଛୁଆଁ ଜୀବନ ନାୟକ ?
ମନେ କି ବୋଳେନି ରଙ୍ଗ ସପ୍ତବର୍ଣ୍ଣୀ ଇନ୍ଦ୍ରର ଶାୟକ ।
ମନର ମଣିଷ ପାଇଁ ଅନ୍ତରକି କରେନି ଚିତ୍‌କାର
ସାମୁଦ୍ରିକ ଜଳକଣା ସମୀରଣେ ବୋଳେନି ସିତ୍‌କାର ?
ନାୟକର କୋଳେଥାପି ଆଲୁଳିତ କୁନ୍ତଳିତ ମଥା,
ଇଚ୍ଛାକି ଜାଗେନା ମନେ ଶୁଣିବାକୁ ସେ ଆଦିମ କଥା ?

ହେ ରୂପସି ! ବୁକୁର ସ୍ପନ୍ଦନ ତବ ସେ ପରଶେ ହୁଏ ନାକି ଦ୍ରୁତ ?
ଗଣିବାକୁ ସେ ବକ୍ଷର ଦ୍ରୁତତର ସ୍ପନ୍ଦନ ଉଦାତ୍ତ ?
କବରୀରେ ସାଜିବାକୁ ଆକାଶର ହୀରାତରା କଳି
ପ୍ରଣୟୀର ବାହୁବନ୍ଧେ ତୁମେ କେବେ କରିନାହଁ ଅଳି ?
ମୟୂର ନାଚଇ ଯେବେ ପୁଚ୍ଛମେଲି ବନାନୀର କୋଳେ
ଚାନ୍ଦରଚେ ଅଭିସାର ମେଘକନ୍ୟା ପଣତର ତଳେ
କଦମ୍ବର ରୋମାଞ୍ଚନ ଛୁଏଁ ନାକି ତୁମ ସୌମ୍ୟତନୁ ?
ବିଦଗ୍ଧ ବସନ୍ତ କେବେ ବାଏ ନାହିଁ ବିରହର ବେଣୁ ?
କାଳବଳେ ଧରାତଳେ ଲୀନ ଆଜି ନରସିଂହ ରାଜା
ଅମ୍ଳାନେ ଉଡୁଛି କିନ୍ତୁ ଅର୍କକ୍ଷେତ୍ରେ ତାଙ୍କ କୀର୍ତ୍ତି ଧ୍ୱଜା
ଯେଉଁ ଶିଳ୍ପୀ କେତେ କଳ୍ପି ଶିଳାଗାତ୍ରେ ତୁମକୁ ଖୋଳିଲେ
ଧୂଳିର ଧରଣୀପରେ ଧ୍ରୁବସତ୍ୟ ମୃତ୍ୟୁକୁ ବରିଲେ ।
ଶିଳାବକ୍ଷେ କାଳଲେଖେ ସେ ଯୁଗର ଭାସ୍ୱର କାହାଣୀ
କଳିଙ୍ଗର କାରିଗର ମରଦେହେ ଅମର ବିନ୍ଧାଣୀ ।
ରହିଥାଅ ପାଷାଣୀ ଗୋ ସେହିପରି ସେ ସୁଦିନ କଳ୍ପି
ଯୁଗେ ଯୁଗେ ସଂଯୋଜିତ କରିପଥ "ଶିଳା ଆଉ ଶିଳ୍ପୀ"



# କୋଣାର୍କ

**ରବୀନ୍ଦ୍ରନାଥ ମାଝି**

ସୂର୍ଯ୍ୟ ଉଠେ । ବୁଡ଼ିଯାଏ । ଜହ୍ନ ଉଠେ । ତାରା ଫୁଟେ ।
ଇନ୍ଦ୍ରଧନୁ ନାଚିଯାଏ ମୟୂର ପୁଚ୍ଛରେ ।
ବିଶୋଇର ହିସାବ ରହେନି
କେତେ ସବୁ ଦିନ ବୁଣିଗଲା, ହଜିଗଲା କେତୋଟି ଚଇତ !

ଠକ୍ ଠକ୍ - ନିହାଣର ଗୀତ ।
ପଥରକୁ ନିଜର ସେ କରି,
ଖୋଜୁଥିଲା ତା' ଭିତରେ...
ଦେଖୁଥିଲା-ପଥରରେ... ହୃଦୟ ନାଚୁଛି

'କୁଶୁନି ! ପାନଖଣ୍ଡେ ଦବୁଟି...
ଆଜି କରିବି ସୁତନୁକାର କଟିବନ୍ଧ !'
ସୁତନୁକା ଚଳଂତି ପ୍ରତିମା
ବିଶୋଇ ର ଅଲେଖା କବିତା ॥
ତା' ଓଠର ସରୁ ହସ ।
ତା କଟିର ଅବତଳ ଜ୍ୟା ।
ଭରାବୁକୁ ଓ ଲୋଟଣୀ କବରୀ ।
ତା' ପାଦର ଗୁଣୁଝୁଣୁ ନୂପୁର ମଦିରା
ବିଶୋଇର ଟାଣ ହାତ କ୍ଷିପ୍ରତର କଲା ।
ନିହାଣର ସ୍ପର୍ଶ କଲା ପଥରକୁ ପ୍ରୀତି ।
ଅରୂପ ସେ ପଥରରେ ରୂପ ଗଲା ଫିଟି ॥

ସୁତନୁକା : ପାଷାଣର ରୂପଲେଖା
ପ୍ରେୟସୀ ମୋ
ଅଚିହ୍ନା ଦିନର
ଲୁହରେ ମୁଁ ଭିଜି ଭିଜି ଆକୁଳେ ଡାକିଛି,
ଲବଣାକ୍ତ ଓଠର ମୋ ନିବିଡ଼ ଚୁମ୍ବନ'
ପାଷାଣର ଗାତ୍ରେ ଦିଏ ଆଜି ବି ନିରତ ॥

ସୁତନୁକା
ନୀରବେ ଝୁରୁଛି
କୋଣାର୍କ ମୋ ନୀରବେ ଝୁରୁଛି
ହୃଦୟଟା ପଥର ହୋଇଛି ॥



# କୋଣାର୍କର ଗଳ୍ପ

ବୀଣାପାଣି ପଣ୍ଡା

କୋଣାର୍କର ଗଳ୍ପ
ପଥରର ଗଳ୍ପ ।
ରାଜା, ରାଣୀ, ବାରଶହ କାରିଗର,
ବିଶୁ ମହାରଣା ଓ ବାରବର୍ଷର ବାଳକ
ଧର୍ମପଦକୁ ବାଦ ଦେବାପରେ
ରହେ ଯେଉଁ ଅବଶିଷ୍ଟାଂଶ
ସେତିକି ହିଁ କୋଣାର୍କର ଅସଲ ନିର୍ଯ୍ୟାସ
ତରଳ କୋମଳ ପଥରର
ସରଳ ଶ୍ୟାମଳ ସାରାଂଶ ।

ସମସ୍ତେ ଜାଣନ୍ତି
ପଥରକୁ ସିନ୍ଦୂର ଚନ୍ଦନରେ
ସଜେଇଦେଲେ
ପଥର ପାଲଟିଯାଏ ଦେବତା
ଏକମାତ୍ର କୋଣାର୍କ ହିଁ ଜାଣେ
ପଥରକୁ ଝାଳରେ ଗାଧୋଇଦେଇ
ନିଃଶ୍ୱାସରେ ପୋଛିଦେଲେ
ପଥରର ଛାତି ଚିରି ବାହାରିଆସନ୍ତି
ଜୀବନ୍ତ ନାୟକ ନାୟିକା ।

ନାୟିକାର ଅଙ୍ଗରେ ଝିନବାସ
ନିଃଶ୍ୱାସରେ ଅଣଚାଶ
ରକ୍ତରେ ଜହ୍ନରାତି
ହାଡ଼ରେ ହଂସଗୀତି
ନାୟକର ଅଙ୍ଗେ ଅଙ୍ଗେ
ଉତ୍ତାଳ ସମୁଦ୍ରର ଉନ୍ମତ୍ତ ଲହରୀମାଳା
ବେଳାଭୂମି ଅତିକ୍ରମ କରି
ଛୁଉଁଥାଏ ନାୟିକାର ସ୍ଖଳିତ ମେଖଳା ।

ଆଦି କବିତାର ଜନ୍ମ ଭଳି
କୋଣାର୍କର ଜନ୍ମ
ସୃଷ୍ଟିର ରହସ୍ୟରେ ସେଇ
ବିରଳ ଘଟଣା
ଶରାହତ କ୍ରୌଂଚ ମିଥୁନର କାତର କାନ୍ଦଣା
ସମୟ ସମୟାନ୍ତରେ
ମହାକାଳର ଅସରନ୍ତି ପ୍ରବାହରେ
ଏ କାନ୍ଦଣା
ଢେଉ ହୋଇ ଫେରୁଥାଏ ବାରମ୍ବାର
ପରିଶୋଧ କରିବାକୁ ଲୁହର ପାଉଣା ।

କାହା.କାହା ଦୃଷ୍ଟିରେ
କୋଣାର୍କ ଅତୀତ କି ଇତିହାସ ହୋଇପାରେ
ହୋଇପାରେ ସ୍ମୃତି କିମ୍ବା ପ୍ରତ୍ନତତ୍ତ୍ୱ
ହେଲେ ତ୍ରିକାଳକୁ ହାତ ମୁଠାରେ
ବନ୍ଦୀ କରିଥିବା ଲୋକ ହିଁ ଜାଣେ
ସେ ସବୁ ବର୍ତ୍ତମାନର ବର୍ତ୍ତମାନ
ଭବିଷ୍ୟତର ଭବିଷ୍ୟତ

ସ୍ୱପ୍ନ ଓ ଜାଗରଣର
ଜୀବନ୍ତ ସ୍ଥାପତ୍ୟ
କ୍ରୋଧ ଓ କାରୁଣ୍ୟର
ଅମଳିନ ଲିପିବଦ୍ଧ ସ୍ୱତ୍ୱ ।

କୋଣାର୍କ ସାଧାରଣ ଦର୍ଶକର
ପହଁରାଳି ଦୃଷ୍ଟିରେ
ଧରାଦିଏ ନାହିଁ,
ତାକୁ କବିତା ପରି
ତନ୍ନ ତନ୍ନ ପଢ଼ିବାକୁ ହୁଏ
ମୁଗ୍ଧ ପାଠକର ଏକନିଷ୍ଠ ମନ ନେଇ ।
ହୃଦୟର ତାମ୍ରପତ୍ରରେ ଉତାରି
ସମ୍ପାଦି ରଖିବାକୁ ହୁଏ
ଆତ୍ମାର ମଣିକୋଠରୀରେ,
କେଜାଣି କାଲି ସକାଳେ
କୋଣାର୍କ ଦେହ କି ଦେଉଳ ବୋଲି
କେହି ହୁଏତ ପ୍ରଶ୍ନ କରିପାରେ ।



# କୋଣାର୍କ

ଉଜ୍ଜ୍ୱଳ ପାଢ଼ୀ

ଏଠି ଖାଲି ସ୍ମୃତି ଆଉ ବାଲି
 ବାଲି ଆଉ ସ୍ମୃତି,
ସମୟ ବାଲିର ଶେଯେ ଚକ୍‌ମକ୍ କୀର୍ତ୍ତିର ଶାମୁକା !
ପାଦ ତଳେ ଝୁଣ୍ଟଇ ମୁଁ
କାହାର ଏ ଗର୍ବ ଗଉରବ ?

ପାଦର ଘୁଙ୍ଗୁର ଶୁଭେ
ରଣୁଝୁଣୁ ଝାଉଁ ବଣ ଆଡୁ
ଶିଳ୍ପୀଙ୍କ ମାନସୀସବୁ
ଆଖି ପିଛୁଳାକେ
ଦେଖା ଦେଇ ଫେର୍ ଲୁଚିଯାନ୍ତି
ବାଲିର ହରିଣୀ ଭଳି
ସାକ୍ଷୀ ଏଠି ସମୁଦ୍ରର ନେଳି ଶାଢ଼ୀ
 ଆକାଶର ଝିମ୍ ଝିମ୍ ତରା ।

ବାରଶ ବଢ଼େଇ ଏଠି ରୁଣ୍ଡ ହେଲେ
 ପଥରରେ ଆବରଣ ଖୋଲି
ନର୍ତ୍ତକୀ ଓ ଗାଉଣିଆ ଜମା ହେଲେ
ରାତି ସବୁ ମତୁଆଲା ହେଲେ
ନାଚ ଗାନ ଆସର ନିଶାରେ

ଏଠି ଖାଲି ବାଲି ଆଉ ସ୍ମୃତି
 ସ୍ମୃତି ଆଉ ସ୍ୱପ୍ନ ।



# ପୁନଶ୍ଚ କୋଣାର୍କ

ଡ. ବନମାଳୀ ବାରିକ

ସକାଳୁ ଝରୁଛି ବର୍ଷା । ଚନ୍ଦ୍ରଭାଗା । ସୂର୍ଯ୍ୟୋଦୟ ।
ବିଫଳ ପ୍ରତ୍ୟାଶା !
କାହିଁ ବ୍ରହ୍ମପୁର ? କାହିଁ କୋଣାର୍କର ପାନ୍ଥଶାଳା ?
ସାରା ରାତି 'ବସ୍ ଜାର୍ଣ୍ଣି' । କ୍ଲାନ୍ତ ଆଖି ।
ମନ୍ଦିରର ଚୂଡ଼ା ଛୁଏଁ ଆମର ପ୍ରଲୁବ୍ଧ ଦୃଷ୍ଟି ।
ପ୍ରଲୁବ୍ଧ ଜିଜ୍ଞାସା ।।
ଯୌବନର ଅଦମିତ ଉଲ୍ଲାସରେ ମୁଖରିତ ମାଟି ଓ ଆକାଶ
ବର୍ଷାକ୍ରମେ ଥମିଯାଏ । ଓଦା ବାୟୁ । ଓଦା ବାଲି ।
ଓଦା ଝାଉଁବଣ ।
କେଉଁ ପ୍ରାଣ ସଙ୍ଗିନୀର ସ୍ମୃତିର ଗନ୍ଧରେ ଏତେବେଳେ
ଓଦାହୁଏ ଦେହ ମନପ୍ରାଣ ।।
'ଆଇ.ବି.'ରେ ପିକ୍‌ନିକ୍ କ୍ୟାମ୍ପ୍ । ରୋଷେଇ ଧୁମ୍ ଲାଗେ ।
ଓଦା ଚୁଲି । ଓଦା କାଠ । ନାକ ଆଖି ସଡ଼ ସଡ଼
ନିଆଁରେ ଧୂଆଁରେ ।
ତା ଭିତରେ ହସ ଗୀତ । କିଏ କାହା ଦେହ ଛୁଏଁ । ମନ ଛୁଏଁ ।
କାହା ଆଖି ହଜିଯାଏ କାହାର ଆଖିରେ ।।
ସେ କେଉଁ ଉଦାସ କବି ପଢ଼େ ବସି ନିଜ ଇତିହାସ
ପ୍ରଥମ କୋଣାର୍କ ଦେଖା । ସମୟର
ମୁଗ୍ଧ ଅଭିସାର ।

ମାୟାବିନୀ ପୃଥିବୀର ରୂପ । ଆଜ ହାୟ କେଉଁପରି
ହୋଇଯାଏ ରଙ୍ଗହୀନ । ନିଃସଙ୍ଗ ଧୂସର ॥
ମନ୍ଦିର ବେଢ଼ାରେ ଆମେ । ଦଳ ଦଳ ଯୁବକ ଯୁବତୀ । ସ୍ୱପ୍ନ ଦେଖୁ
ବାରଶ ବଢ଼େଇ । ରାଜାର ଉତୁଙ୍ଗ ଇଚ୍ଛା ।
କାର୍ଯ୍ୟରତ ନିହାଣ ମୁଗୁର ।
ଶିବେଇ ସମୁଦ୍ର କୂଳେ ଠିଆ ହୋଇ ସ୍ୱପ୍ନ ଦେଖେ ।
ଆଉ କେତେ ଦିନ । ଆଉ କେତେ ଦିନ ଅନ୍ତେ
ଖଞ୍ଜାହେବ ମନ୍ଦିର ଦେହରେ
ଦଧି ନଉତି ପଥର ॥
ଶ୍ରୀଛାମୁରେ ଛିଡ଼ା ହୋଇ ଯୋଡ଼ହସ୍ତ ବିଶୁ ମହାରଣା ।
ଦେଉଥିବ କାର୍ଯ୍ୟ ବିବରଣୀ । ମଣିମାଙ୍କ ଜୟ ଧ୍ୱନି
କୋଳାହଳ ଶୁଭୁଥିବ । ପଡୁଥିବ
ଆଲଟ ଚାମର !
ତାପରେ ଦିନେ, ଉତ୍ସବ । ଉଲ୍ଲାସରେ । ରାଜା ପ୍ରଜା ପାରିଷଦ
ପୁରାଙ୍ଗନାମେଳେ । ବ୍ରାହ୍ମଣର ମନ୍ତ୍ରପୂତ
ହୋମଅଗ୍ନି ଜଳିଥିବ । ବିଧିମତେ
ବଢ଼ିଥିବ ପୂଜା ଉପଚାର ।
ସହସ୍ର ସଂଭାର ॥
ସ୍ୱପ୍ନ ଆମ ସରିଆସେ । ଆମେ ପଢୁ କୋଣାର୍କର
ଶିଳାରେ ଶିଳାରେ ଏ ଜାତିର ବିଗତ
ମହିମା । ଏକଦା ବିଶାଳ ରାଜ୍ୟ ।
ଦିଗ୍‌ବିଜୟୀ ରାଜା ଗଜପତି ।
ଅକଳନ ରାଜକୋଷ । ଉଦ୍ଦାମ ସେନାନୀ ।
ନୃତ୍ୟ ଗୀତ ପ୍ରଣୟର କେତେ ଅନୁରକ୍ତ ମୁଦ୍ରା ।
ତନ୍ତ୍ର ମନ୍ତ୍ର । ଯୋଗାଚାର । ଜୀବନର ରୂପରସ ।

ଦେହ ଆଉ ବିଦେହର
ବିବିଧ କାହାଣୀ ।।
ଆମେ ଦେଖୁ ପଥରରେ ଫୁଲ ଫୁଟା ମଉଛବ । ପ୍ରାଣର
ଆକୁଳ ଭାଷା । କୁସୁମିତ କଳ୍ପନାର
କୋମଳ ମଂଜରୀ ।
ମୋ ଆଖିର ଡାଏରୀରେ ନିଖୋଜ ଅତୀତ ନାଚେ ।
ହତଭାଗ୍ୟ ଫଗୁଣର ସତତ ସୁଖର ସ୍ମୃତି ।
କୋଣାର୍କ ଓ ହଜିଲା ମୟୂରୀ ।।
ଦଳେ ମିଛଖୋଳପିନ୍ଧା ବେରସିକ କବି । ମାଗିଅଣା
ବୁଦ୍ଧିର ଗୋଲାମ । କୋଣାର୍କରେ
ଢାଳିଦେଲେ ଲୁହ ଲହୁ
ଛାତିର ଦରଜ ।
ଅନ୍ଧ ଇସ୍ତାହାର ଆଗେ ହତ୍ୟାକରି ଅନାବିଳ
ଆତ୍ମାର ସ୍ୱୀକୃତି । ଗାଇଗଲେ ମିଛ ଶ୍ଳୋକ ।
ଲେଖିଗଲେ କବିତାର ମିଛ ଦସ୍ତାବିଜ ।।
ଆଜି ସିନା ରାଜା ନାଇଁ । ପାର୍ଟି 'ଓ' ପଲିଟିବ୍ୟୁରୋ
'ଡିମୋକ୍ରାସୀ' 'ବ୍ୟୁରୋକ୍ରାସୀ' । ସବୁଠିତ
କ୍ଷମତାର ଲଢ଼ାଲଢ଼ି, ଭିଡ଼ାଭିଡ଼ି ।
କେଉଁଠାରେ ମଣିଷର
ମୁକ୍ତିର ବାରତା ।
ଶୁଆ ଘୋଷା ପାଠ ଛାଡ଼ି ତେଣୁ ମୁଁ ତମକୁ ରାଜା
ତମର ଏ ସ୍ୱପ୍ନ ପାଇଁ ସମର୍ପିଲି
ହୃଦୟର ଗହନ ମମତା ।।



# କୋଣାର୍କ

ଗୋଲକ ଆଚାର୍ଯ୍ୟ

ମୋ ଅସନ୍ତୋଷର ଅପନ୍ତରାରେ
ଜଳଜଳ ଦିଶୁଥାଏ
ସବୁ ଅବସୋସ ଠାରୁ ତୃପ୍ତ
ଭିନ୍ନ ଏକ ଅବସୋସ
ଏକ ନୂତନ ଅପ୍ରାପ୍ତି
କିଛି ଲୁହ କିଛି କୋହ
ଧୋଉଥାଏ ତା'ର ଦେହ
ଗଭୀର ଅନ୍ୱେଷା କହେ
ଅପ୍ରାପ୍ତିର ପ୍ରାଚୁର୍ଯ୍ୟ ଏ; ନାଁ ବି ତା' ପ୍ରାପ୍ତି ।

ତୋ'ର କାଲି ସ୍ଥିର ରହିଯିବା
ଆପେକ୍ଷିକ ଗତି ଏକ
ମୋର ଏହି ଗତି ପୁଣି
ଅନିଚ୍ଛା ଓ ଅସ୍ୱୀକାର ସତ୍ତ୍ୱେ
ନୀରବ ସମ୍ମତି କେବେ
କେବେ ଅଟେ ବାଧ୍ୟବାଧକତା
ତଥାପି
ଭାଗ୍ୟକୁ ଆବୋରି ନେବା
ଏ ଜୀବନର ସୂକ୍ତି ।

ହୋଇଛି ଅନେକ ପୁଣି

ହୋଇନି ବି କିଛି
ଛିଃ ଛିଃ କି ଏକ କୋଣାର୍କ ମୁଁ ଯେ,
ଅଧାଗଢ଼ା ଅଂଶଟାବି ଲୋଭନୀୟ କା'ରେ
ହେଲେ
ନିଜ ପାଇଁ କ୍ଷତି;
ଚୂଡ଼ାର ଆଶାରେ ଆଶାରେ
ନାହିଁ ନିଦ୍ରା, ନ ଥାଏ ବି ଶାନ୍ତି;
ଅଗଢ଼ା ଅଧାକ ମୋ'ର
ପିଇନିଏ ସମସ୍ତ ପାର୍ଥିବ ସୁଖ
ଫୁଟିଉଠେ କେତେ ଅବସୋସ
ଜଳୁଥାଏ ସମଗ୍ର ଆୟୁଷ ।



# କୋଣାର୍କ

ବିଜୟ ବଳ

ଅଛ ରୁଗ୍‌ଣ ସେ ଲୋକଟି
କ'ଣ କରୁଥାଏ
ଆପଣା ପଶ୍ଚିମ ଦୁଆରୀ ଘର ବାରଣ୍ଡାରେ
ଭଙ୍ଗା ଚେୟାରଟି ପକାଇ
ନିର୍ଲିପ୍ତ ଆଖିରେ କ'ଣ ଖୋଜୁଥାଏ ?

ତୁମେ ଏମିତି ବି ଦେଖିବ
ଆଣ୍ଠୁ ଉପରଯାଏ ଉଠିଯାଇଥିବା
ଲୁଙ୍ଗିର ଖୋସଣି ଅଳ୍‌ପ ଖୋଲାଥିବ
ଏକଦମ୍ ସିଧା ବସିଥିବ ଲୋକଟି
ହାଡୁଆ ମୁହଁର ଥୋମଣି ଆଡ଼କୁ
ଅଛ କିଛି ଦାଢ଼ିରେ ହାତ ମାରୁମାରୁ
ଖୁସି ଖୁସି ଭାବ ସ୍ପଷ୍ଟ ବାରି ହେବ ।
ନାଲିଆ ଚା'ରେ ଚୁମକ୍ ଦେଉ ଦେଉ
ସୂର୍ଯ୍ୟାସ୍ତ ହୋଇଯିବ ଓ
ଘରକୁ ଲେଉଟି ପଡ଼ିବ ଲୋକଟି ।
ସଂଜ ହୋଇଗଲେ ଘରଭର୍ତ୍ତି ବଳହ ଅଂଧାର
କିଛି ଦିଶିବନି, କିଛି ଶୁଭିବନି
ଆପଣା ଦେହକୁ ଆପଣା ସତ୍ତାକୁ
ଖୋଜି ପାଇବନି

ନିଜସ୍ୱ ଘରକୁ ବୁଝିବି ହେବନି
ପୁଣି ଅପେକ୍ଷା ସେହି ଆଗାମୀ ସୂର୍ଯ୍ୟର ।
ସ୍ୱପ୍ନ ଦେଖାର ଆଖିପତାରେ ସେ ନିସ୍ତେଜ ହୋଇଯିବ
ଚେତା ଫେରିଲେ
ପାଟି ଖୋଲି କାନ୍ଦିବାକୁ ଚେଷ୍ଟାକରି
କାନ୍ଦି ପାରିବନି ସେ ନିଃସହାୟ ମଣିଷର ସ୍ୱର
ଆପଣା ତିଆରି ସ୍ୱପ୍ନରେ ସେ ନିଜେ ହଜିଯିବ
ସୁଖ ସୁଖ ଭାବ କିଛି ଉସୁକି ଆସିଲା ବେଳେ
ସ୍ୱପ୍ନ ଭାଙ୍ଗିଯିବ
ନିଜକୁ ଲାଗିବ କିଛି ବଦଳି ଯାଉଛି
ଘର, ବାରଣ୍ଡା, ଭଙ୍ଗା ଚେୟାର ଓ
ଘର ଭିତର ଅନ୍ଧକାର
ନିଜର ଯା' ଅତି ଆପଣାର ।

ସବୁକିଛି ବଦଳି ଯାଉଛି -
ବଦଳି ଯାଉଛି ନିଜେ ଶବ କଙ୍କାଳରେ
ପରିଣତ ହେଉଛି ସେ ବିଫଳ ସ୍ୱସ୍ତିରେ ।
ଅନ୍ଧାରରେ ଅଯଥାରେ ହାଇମାରି
ବୟସ୍କ ମୁହଁରେ ବିକୃତିର ମୁଦ୍ରା ଆଙ୍କି
ଅବଶେଷ ରହିଲାକି କିଛି
ସଙ୍ଗକରି ବଞ୍ଚିଯିବା ପାଇଁ ।
ତୁମେ ପୁଣି ଏମିତି ଦେଖିବ
ଅଳ୍ପ ରୁଗ୍ଣ ସେ ଲୋକଟି
ହସିବାକୁ ଚେଷ୍ଟା କରି ହସି ପାରୁନଥିବ ।



# ବିଶୁ ମହାରଣା ଓ ମୁଁ

ଦୁଃଖିଶ୍ୟାମ ପଟ୍ଟନାୟକ

୧

କିଏ ତୁମେ ମହାରଣା !
ଜାତିଭାଇ ବାରଶ' ବଢ଼େଇ
ତାଙ୍କ ସ୍ୱପ୍ନ ଚରିତାର୍ଥ ଲାଗି
ଚନ୍ଦ୍ରଭାଗା ବନ୍ୟା ମଧ୍ୟେ
ବଳି ଦେଲ ଏକୋଇରବଳା !
ଭାବିଲନି ତିଳେ ତା'ର ସ୍ନେହମୟୀ
ଜନନୀର କଥା !
କଲ ନାହିଁ କିଛି ସ୍ୱାର୍ଥ ରକ୍ଷା
ଖାଲି ତୁମ 'କୋଣାର୍କ' ଗୋଟିଏ
କଲ ସତ କିନ୍ତୁ କାହିଁ
ତୁମ କୀର୍ତ୍ତି ଗଉରବେ ମୁଗ୍ଧ ହୋଇ
'ମୋ ବାପର ବୋଲି'
କହିବାକୁ ପରେ ପଦେ
ହେବାପାଇଁ ତୁମ ପରି
ଏ ଜାତିର ନେତା ବିଶ୍ୱକର୍ମା ?

୨

ତୁମ ଲାଗି ଏବେ ଆମେ
ଅଶ୍ରୁ ଢାଳୁ, ଗୁଣ ଗାଉ
ତୁମ କଥା ସ୍ମରୁ ଥାଉ ସମାଜରେ ଖାଲି

୩୫୬ କବିତା  କୋଣାର୍କ

ତୁମ କୀର୍ତ୍ତି
ନିଜେ ଦେଖୁ ଅନ୍ୟରେ ଦେଖାଉ
କିଛି ଅବା ବିକି ଦେଉ ଦାୟ ସୂତ୍ରେ
ଅଧିକାର ସାବ୍ୟସ୍ତର ଲାଗି ।
ମୁଁ କିନ୍ତୁ ମୋ ପାଇଁ କରେ
ଡୋଳେ ମୁହିଁ ମୋ ନିଜ ଭବନ
ବଳି ଦେଇ ତୁମ ନାମ ଏ ଜାତି-ଯୂପରେ ।
ଯେଉଁମାନେ ପରେ ମୋତେ
ଥରେ ନୁହେଁ ଏ ବିଚ୍-ରାସ୍ତାରେ
ପୋଡ଼ି ପୋଡ଼ି ଜାଳି ଜାଳି ଜ୍ୟୋତି-ଯୂଇ
ପୀଡ଼ା ଦେବେ କୁମ୍ଭୀର କାନ୍ଦିବେ,
ପାରିବେନି ଦେଖି ରଖି
ବୁଝିବେନି କିଛି-
କହ କିଆଁ
ଗାଇବି ମୋ 'ଆତ୍ମକଥା'
ପଢ଼ି ଶୁଣାଇବି
'ଗୋ-ମହାତ୍ମ୍ୟ' କଂସେଇ ଆଗରେ
ବଧ ହେବ କିମ୍ବା 'ଧର୍ମପଦ' ?
ସେ ଥିଲେ
ମୋ ପରି ହେବ
ମୋର ପରେ ଜୀବନୀ ଲେଖିବ
ସ୍ମରଣିକା ପ୍ରକାଶ କରିବ ।



# ଧର୍ମପଦ

ମିନତୀ ଷଡ଼ଙ୍ଗୀ

ଥାପି ପାଦ କଳାର ପାବଚ୍ଛେ
ଆଙ୍କିଦେଲି ମଞ୍ଜୁଳ ପାଦପ
ଅଙ୍ଗେ ରଚି ଶାଖା ଓ ପ୍ରଶାଖା
କିଶଳୟେ ସଜାଇଲି ରୂପ ।
ଅନୁପମ କରିବା ନିମନ୍ତେ
ସରଜିଲି କଳିକା ନିକର
ମୁଷ୍ଟିମେୟ କୁସୁମ ମଣ୍ଡଣି
କରିଦେଲି ଶରୀରେ ତାହାର ।
ପୂର୍ଣ୍ଣତାରେ ହୋଇ ମୁଁ ଅଧୀର
ସୁଶୋଭିତ କରିଲି ଫଳରେ
ନିରେଖି ମୁଁ ଅବୟବ ତା'ର
ପହଞ୍ଚିଲି ଗରବ ଦୁଆରେ ।
ସଫଳତା ପରିତୃପ୍ତି ନେଇ
ଉତ୍‌ଫୁଲ୍ଲିତ ହୋଇଥିଲି ଯେବେ
ଦୀପ୍ତ ଏକ ପରିହାସ ସ୍ୱର
ଶ୍ରୁତିରେ ମୋ ପଡ଼ିଥିଲା ତେବେ ।
ହସ୍ତେ ଧରି ତୂଳିକା ସତ୍ୱର
ଉପଗତ ବାଳୁତଟି ଆସି
ଅସମ୍ପୂର୍ଣ୍ଣ ଅଟେ ତୁମ ଛବି
କହିଥିଲା ମୃଦୁ ହସି ହସି ।

ତାତ୍ସଲ୍ୟରେ ଉଡ଼ାଇ ତା ଭାଷା
ପୂର୍ଣ୍ଣତାକୁ ଆଦେଶିଲି ମୁହିଁ
ବିନୟରେ ଆଙ୍କିଲା ବାଳୁତ
　　　ବେନି ପକ୍ଷୀ ଶାଖା ପରେ ରହି ।
ଫଳପରେ ରଖି ସ୍ୱୀୟ ଚଞ୍ଚୁ
କରୁଛନ୍ତି ଭକ୍ଷଣ ଆହାର
ବୁଝିଲି ମୁଁ ସାର୍ଥକତା ଏଥି
　　　ବୃକ୍ଷ ସୃଷ୍ଟି ହୋଇଲା ସାକାର ।
ପ୍ରାଣେ ଲଭି ଅପୂର୍ବ ସ୍ପନ୍ଦନ
ବାଳୁତକୁ କଲି ଅଙ୍ଗୀକାର
ହୃଦତଳୁ ଶୁଭୁଥିଲା ଖାଲି
　　　ଧନ୍ୟ ତୁହି ଧର୍ମପଦ ମୋର ।



# କୋଣାର୍କ

ଚିନ୍ମୟ ବିବେକ

ପର୍ବତରୁ ଅତଡ଼ା ଖସିବା ପରି ପଥର
ସବୁ ଛାତିରୁ ଛିଣ୍ଡିଯାଉଚି ସମ୍ପର୍କ
ଶୁଖିଆସୁଚି ନଦୀର ଧାର
ଫୁଲର ପାଖୁଡ଼ା
ଲିଭିଆସୁଚି ଆକାଶରୁ ନୀଳ
ଆକାଶ ଦୀପ
ସବୁ ରାସ୍ତାରେ କଣ୍ଟା; ସବୁ ଅଣ୍ଟିରେ ଛୁରୀ
ସବୁ ମନ୍ଦିରରେ ଶୂନ୍ୟ ଓଁକାର
ସବୁଜ ଜଙ୍ଗଲ ଜଳୁଚି; ଶୁଭୁନି ପକ୍ଷୀର ଡାକ
ଘୂରୁଚି ଶକୁନ
ମାଟିରେ ପାଣିରେ ଆକାଶରେ ତପୋବନରେ
ଚରୁଚି ବିଷ; ବଡ଼ ବିଷମ ଜଗତ ।
କାହାକୁ ନିସ୍ତାରନାହିଁ
ସବୁ ରାସ୍ତା ବନ୍ଦ; ବନ୍ଦ ସବୁ ଫାଟକ
ଆମେ ସବୁ ଛାର୍ ଯେତେ ବିଶୁ ମହାରଣା
ଅପେକ୍ଷା କରିବା - ଏଇ ଦଣ୍ଡିରେ
କାଳେ ମୁଣ୍ଡି ମରାହେବ ସ୍ୱପ୍ନର କୋଣାର୍କ
ସତରେ ଫୁଟିବ ହସ
ଥାଅଥାଅ ଲହୁଲୁହ ସବୁକୁ ସମ୍ଭାଳିଥାଅ
ଆଉ ବାରବର୍ଷ ।



# କୋଣାର୍କ

ରାଜକିଶୋର ପାଢ଼ୀ

କୋଣାର୍କ କେଉଁଠି
ମୁଁ ଜାଣିନି,
କି ଦେଖିନି,
ଖାଲି ଭାବୁଚି
କୋଣାର୍କ କ'ଣ
ଭାଙ୍ଗି ଯାଇଥିଲା
ପଞ୍ଜରା ହାଡ଼ର କାରୁକାର୍ଯ୍ୟ !
ଫୁଲ ଫୁଟୁଥିବା
ତନିମାର ନୈସର୍ଗିକତା ।
ସମୁଦ୍ର ଛାତିରେ
ଉଇଁ ଆସୁଥିବା
ସୂର୍ଯ୍ୟଙ୍କ ତନ୍ଦ୍ରାଛନ୍ନ ସ୍ୱପ୍ନ ।
ଅସ୍ତଗାମୀ ତପନଙ୍କ
ଏଲିଜିର କାରୁଣ୍ୟ ।
ନା ମୋ ତପସ୍ୟାର
ଭୂଲୁଣ୍ଠିତ ଐଶ୍ୱର୍ଯ୍ୟ !
ଭିତରର ଅବିଭକ୍ତ ଅଂଶ
ବାହାରର ଭଗ୍ନ ମନୋରଥ ।
ମୋ ପରି
ବିଜୟୀ, ବିଜିତ ! !

■

# କୋଣାର୍କ

ଗୀତା ମିଶ୍ର

ହେ ସୂର୍ଯ୍ୟ କ୍ଷେତ୍ର କୋଣାର୍କ !
ତୁମର ପ୍ରସିଦ୍ଧି ସୂର୍ଯ୍ୟଦେବ ପାଇଁ ।
ଚନ୍ଦ୍ରଭାଗା ନଦୀ କୂଳ ପଦ୍ମକ୍ଷେତ୍ରେ
ଧ୍ୟାୟୀ "ଅର୍କଦେବେ" ଜବ କୁସୁମ ସଂକାଶ
କାଶ୍ୟପେୟଂ ମହାଦ୍ୟୁତିମ୍ ।
ଶାମ୍ବ ଯେବେ ହୋଇଥିଲେ ଶାପ ମୁକ୍ତ
ସେହି ଦିନୁଁ ନିବିଡ଼ ସମ୍ପର୍କ ସୂର୍ଯ୍ୟ ଆଉ କୋଣାର୍କର ।
ହେ ପଦ୍ମକ୍ଷେତ୍ର କୋଣାର୍କ
ତୁମ ଗାତ୍ରେ ଗାତ୍ରେ ଭରା
କଳାର ସେ ଅପୂର୍ବ ମାଧୁରୀ,
ସୂର୍ଯ୍ୟଦେବ ସତେ ଅବା ଉଭା ହୋଇଛନ୍ତି
ଅଶ୍ୱ ଯୋଚା ପବିତ୍ର ରଥରେ
ଧନ୍ୟ କରି ଉତ୍କଳୀୟ କଳାର ଚାତୁରୀ ।
ହେ ଅର୍କ କ୍ଷେତ୍ର କୋଣାର୍କ
ବିଶ୍ୱେ ଖ୍ୟାତ ତୁମେ 'କଳା ପାଗୋଡା'ର ନାମେ
ଶିଳ୍ପୀର ସେ ଅଦ୍ୱିତୀୟ
ଶିଳାର ଆଲେଖ୍ୟ ତପନଙ୍କ ପୂଜା ସ୍ଥଳୀ କାଳଜୟୀ,
ହେ କୋଣାର୍କ ! ଯୁଗେ ଯୁଗେ ବନ୍ଦନୀୟ ତୁମେ ।



# କୋଣାର୍କ

ବିଜୟଲକ୍ଷ୍ମୀ ପଟ୍ଟନାୟକ

ଅତୀତର ତୁହି ଅଟୁ ମୂକସାକ୍ଷୀ
ସୂର୍ଯ୍ୟ ମନ୍ଦିର କୋଣାର୍କ
ଅର୍କ କ୍ଷେତ୍ର ନାମେ ଖ୍ୟାତି ଯେ ତୋହରି
ଇତିହାସେ ଯାର ଟେକ ।
ଚନ୍ଦ୍ରଭାଗା କୂଳେ ରହିଛୁ ଅନାଇ
ଭଗ୍ନ ସ୍ଥାଣୁ ଶିଳାପରେ
ହାସ୍ୟମୟୀ ଗୋ କଳାର ବିଭବ
ପୁରିଛି ତୋହରି ଠାରେ ।
ତୋ ପ୍ରସ୍ତର ଗାତ୍ରେ ନିହାଣ ମୁନରେ
ଫୁଟାଇ କଳା ଭାସ୍କର୍ଯ୍ୟ
ନିଖୁଣ ଶିଳ୍ପୀ ଓ କାରିଗର ଗଣ
ସୃଷ୍ଟି କଲେ ସପ୍ତାଶ୍ଚର୍ଯ୍ୟ ।
ବାର ବରଷର ବାଳୁତ ପୁଅ ସେ
ଧରମା ନାମଟି ତା'ର
ମୁଣ୍ଡି ମାରି ତୋର ରଖିଗଲା ଯଶ
ଝାସ ଦେଇ ସିନ୍ଧୁ ତୀର ।
ସୂକ୍ଷ୍ମ କାରୁକାର୍ଯ୍ୟ କଳାର ସୌନ୍ଦର୍ଯ୍ୟ
ପାଇଁ ଏ ଉତ୍କଳ ଆଜି
ବିଶ୍ୱ ଦରବାରେ ପ୍ରତିଷ୍ଠିତ ଅଟେ
ଉତ୍କଳ କୀରତି ରାଜି ।

ଉତ୍କଳ ସଂସ୍କୃତି ମହାନ ସଂସ୍କୃତି
ଧନ୍ୟ ଉତ୍କଳୀୟ ଜାତି
ତୋ ନାମେ ନାମିତ କୋଣାର୍କ ଉତ୍ସବ
ସାରା ଜଗତରେ ଖ୍ୟାତି ।
ଓଡ଼ିଶାବାସୀଙ୍କ ଗରବ ଗୌରବ
ଅଟୁ ତୁହି କୋଣାରକ
ସ୍ମୃତିର ସ୍ମାରକୀ ବହନ କରି ତୁ
ରଖିଛୁ ଦେଶର ଟେକ ।



# କୋଣାର୍କ – ସ୍ୱର୍ଗ ପ୍ରତିରୂପ

ଡ. ମେଘନାଦ ପ୍ରଧାନ

ସ୍ୱର୍ଗର କଳ୍ପନା କେବେ ଥରେ କରିଥିଲା ଏ ମରତବାସୀ
ଯାବତୀୟ ଦୁର୍ବଳତା ଯହିଁ ନ ଥିଲା ତା' ଅଭ୍ୟନ୍ତରେ ପଶି ।
ଦେବତା ଯେ ମରେନାହିଁ କେବେ ଗ୍ରାସ ତାକୁ କରେନାହିଁ ଜରା
ରୋଗ ଶୋକ ଭୋକ ଶୋଷେ କେବେ ଅଥୟ ସେ ହୁଏ ନାହିଁ ପରା ।
ଭ୍ରମି ନିତି ନନ୍ଦନ କାନନେ ଅପ୍‌ସରୀଙ୍କ ମେଳେ ଖେଳେ ମାତି
ପାରିଜାତ ବାସେ ବିମୋହିତ ହୋଇ ତା'ର ବିତେ ଦିନରାତି ।
ଗୀତ ବାଦ୍ୟ ତାଳେ ତାଳେ ନାଚି କୋଳାକୋଳି ହୋଇ ପରସ୍ପରେ
ଅମୃତର ଆସ୍ୱାଦେ ଉନ୍ମତ୍ତ ହୋଇ ଦିନ ବିତାନ୍ତି ମଧୁରେ ।
ସ୍ୱର୍ଗର ଏ ମଧୁମୟ ରୂପେ ମୁଗ୍‌ଧ ନର ସ୍ନିଗ୍‌ଧ କଳ୍ପନାରେ
ତୃପ୍ତ ନୋହି ଦୃପ୍ତ ପ୍ରତିଭାର ଦୀପ୍ତ ଶିଖା ଜାଳିଲା ଧରାରେ ।
ଏବେ ସୁଦ୍ଧା ଜଳୁଛି ସେ ଶିଖା କୋଟି କୋଟି ହୃଦେ ଦେଇ ଚିଆଁ
ଯା' ଶୀତଳ ଛାୟା ତଳେ ବସି ପରସ୍ପରେ ଝୁରେ ପ୍ରିୟ ପ୍ରିୟା ।
ଶତ ଶତ କଳ୍ପନା କୋରକ ପଥରର ନିଥର ଗାତ୍ରରେ
ଦୋଳାୟିତ ମଳୟରେ ସତେ କୋଳାଗ୍ରତ ପାଇଁ ହାତ ଠାରେ ।
ଭୋକ ଶୋକ ଭୁଲି ଯହିଁ ସଦା ପ୍ରାଣେ ପାଇ ଅମୃତ ଆସ୍ୱାଦ
ନୃତ୍ୟରତ ପ୍ରତିମା ସୃଜିତ ତାଳେ ତାଳେ ନାଚି ଉଠେ ପାଦ ।
ଉତ୍କଳୀୟ କଳାର କୌଶଳ ଆରୋହିଛି ଯହିଁ ଶୀର୍ଷ ସୀମା
ଯୁଗେ ଯୁଗେ ଉଦ୍‌ଭାସିତ ତହିଁ ଶିଳ୍ପୀକୁଳ ଉଜ୍ଜ୍ୱଳ ଗରିମା ।
ଲୋଭନୀୟ ସେହି ମୋ କୋଣାର୍କ ଅଦ୍ୱିତୀୟ ସ୍ୱର୍ଗ ପ୍ରତିରୂପ
ଶୋଭେ ମୋର ମାତୃଭୂମି କୋଳେ ରୂପ ଯା'ର ଦିବ୍ୟ ଅପରୂପ ।



# କୋଣାର୍କ

ଧନେଶ୍ୱର ମହାପାତ୍ର

କୋଣାର୍କ
ଲୁହ ଲହୁ ଝାଳ ପିଇ
ତନ୍ମୟ ହୋଇ
ତୁମକୁ ଗଢ଼ିଥିବା
ବିନ୍ଧାଣୀମାନେ
ଦେଖ ହେଉଛନ୍ତି କିପରି
ଓହଳ ବିକଳ !

ତୁମକୁ ନେଇ ଚାଲିଛି
ତେଲ ଲୁଣର ସଂସାର
ଗର୍ବ କରୁଛି ଏଜାତି
ପାଷାଣରେ ଉଦ୍‌ଭାସିତ
ଏ ମାଟିର ଇତିହାସ, କଳା
ଗଉରବ ଗାଥା ଇସ୍ତାହାର ।
ତୁମ ଛବି ତୁମ ମଧୁଶାଳା
ପ୍ରୀତିର ଫୁଆର
ଛମ୍ ଛମ୍ ନୂପୁର
ମଦିରାର ଝରା
ନେସି ଯାଇଛି ଚାରୁ ଚିତ୍ରପଟ୍ଟ
ସ୍ୱପ୍ନିଳ ଆଖିର ନଜର

ପର୍ଯ୍ୟଟକ କବି ଚିତ୍ରକର
ବିଦେଶୀ
ମନ୍ତ୍ରମୁଗ୍ଧ
ଅଧୀର ବିଭୋର ।

ଆଉଜଣେ ଧରମାଙ୍କୁ ପ୍ରତୀକ୍ଷିତ
ତୁମର ଏ ଅଲିଭା ଭାସ୍କର୍ଯ୍ୟ
ତୁମ ଅଶ୍ୱ ତୁମଚକ୍ର
ଅଫୁରନ୍ତ ଜୀବନ୍ତ ଆଶ୍ଚର୍ଯ୍ୟ
ତୁମ ରୂପ ତୁମ ସୂର୍ଯ୍ୟୋଦୟ
ମନେପଡ଼େ ହୃଦୟରେ
ସଞ୍ଚରିତ ହୁଅ, ଝରିଯାଅ
କହିଯାଅ, ରଚିଯାଅ
ମନ୍ମୟ ବିସ୍ମୟ
ସମୟର ମୂକସାକ୍ଷୀ
ଅସ୍ତରାଗ
ଅବିସ୍ମରଣୀୟ ॥



# କୋଣାର୍କ

କିରଣବାଳା ମିଶ୍ର

ଖୋଜେ କୋଣାରକ ଅତୀତ ବିଭବ
ମୂକ ସାକ୍ଷୀ ଉତ୍କଳର;
କେତେ ଶିଳ୍ପୀ କୁଳ ଗଢ଼ିଥିଲେ ଏଠି
ପରମ୍ପରା ଏ ଜାତିର ।
ଋଷିର ଜୀବନ ବିତିଥିଲା ତାଙ୍କ
ଛାଡ଼ିଥିଲେ ଘରଦ୍ୱାର;
ଷୋଳ ବର୍ଷ କାଳ ବାରଶ ବଢ଼େଇ
ରଖି ଜାତି ସ୍ୱାଭିମାନ ।
ରାଜାର ଆଦେଶେ ନିର୍ମାଣ କରିଲେ
ଶ୍ରେଷ୍ଠ କଳା କୋଣାରକେ;
ଶିଳାର ଗାତ୍ରରେ ଗଢ଼ିଥିଲେ ସିଏ
କେତେ ଚିତ୍ର ପୌରାଣିକ ।
କେଳି କଉତୁକ ଗଢ଼ିଥିଲେ ସିଏ
କେତେ ଯୁଦ୍ଧ ଅଭିଯାନ;
ପଦ୍ମ ପାଖୁଡ଼ାରେ ଗଢ଼ି ଦେଇଗଲେ
ରଥାକୃତି ସୂର୍ଯ୍ୟଯାନ ।
ଯୁଗ ଯୁଗ ପାଇଁ ଓଡ଼ିଆ ଗର୍ବୀତ
ଦେଶେ ଦେଶେ ତା’ ବାରତା;
ଧନ୍ୟ କୋଣାରକ ଧନ୍ୟ ତୋ ମହିମା
ସୂଚୀ କାମେ ନିପୁଣତା ।

■

# କୋଣାର୍କ

ସୁରେନ୍ଦ୍ର ନାୟକ

ଏଇ ଦେଖ ବନ୍ଧୁ
ସାକ୍ଷୀ ଆମର
କୋଣାରକ ଭଗ୍ନ ମୁଖଶାଳା
ଜାଣିଛ କି ବନ୍ଧୁ
ଏଇ ରଥ ଚକ ତଳେ
ଆମରି ଅସ୍ତିତ୍ୱ
ଏବେ ମଧ ବିଳାପ କରେ
ଯେତେସବୁ କାରୁକାର୍ଯ୍ୟ
ଛାଞ୍ଚ ମୁନେ ଗଢ଼ା
ସେସବୁ ଆମକୁ
ହାତଠାରି ଡାକୁଛନ୍ତି
ଆମେ ଆଉ କେହି ନୁହେଁ
ତୁମ ଅତୀତର ବଂଶଧର
କିନ୍ତୁ ନାମନାହିଁ ଇତିହାସେ...
ଆମେ ଦେଲୁ କର
ଆମେ ଆସିଥିଲୁ ଛାଡ଼ି
ଭଙ୍ଗା କୁଡ଼ିଆରେ ଯୁବତୀଭାର୍ଯ୍ୟା
ମୁଣ୍ଡି ମାରିବାକୁ ଏଇ କୋଣାରକ
ଆସ ବନ୍ଧୁ ଆସ ଥରେ

ଦିଅ ଏକ ସ୍ନେହର ଚୁମ୍ବନ
ଏହି କ୍ଷୁଧିତ ପାଷାଣ ମୁଖେ
ଥରୁଟିଏ ହସି କୁହ
ଆମେ ତୁମେ ଭାଇ ଭାଇ
ସେଇ ଗୋଟିଏ ଗୋତ୍ରରେ
ଗୋଟିଏ ଜାତିରେ ।
ରାଜାର ଅୟସ ପାଇଁ
କରିଥିଲେ ଆମେ...
ଯମୁନାର ତଟେ ତାଜମହଲ
ମିଶରର ପିରାମିଡ଼ ତଳେ
ଅସଂଖ୍ୟ କଙ୍କାଳ
ଆମ ବଂଶଧର ସାକ୍ଷୀ
ଆମେ ସିନା ଭୂମିହୀନ
କିନ୍ତୁ ସୁଏଜ କେନାଲ କୂଳେ
ହିରାକୁଦ ଭାକ୍ରାନଙ୍ଗଲ
ବନ୍ଧ ଉପରେ
ଆମ ହାତ ପାଦ ଚିହ୍ନ
ଏବେ ବି ଅକ୍ଷତ
ଆମେ ତ ମରିଛେ -
ଅସଂଖ୍ୟ ସଂଖ୍ୟାରେ
ସବୁ ମହା ସମରରେ
ମଣିଷ ଜାତିର ଉଦ୍ଧାର ପାଇଁ
ସବୁ ଯୁଗେ ଆମେ ସ୍ରଷ୍ଟା ।
ଆମେ ଦ୍ରଷ୍ଟା
ସାହିତ୍ୟ ବିଜ୍ଞାନ କଳା
ତେବେ ଆମେ କାହିଁପାଇଁ

ନୀରବେ ମରିବା
କ୍ଷୁଧା ଯନ୍ତ୍ରଣା ନେଇ
ଆସ ବନ୍ଧୁ ଆସ...
ଆଜି ଏ ବଜ୍ର ଶପଥ ନେବା
ଲୁଚି ରହିଥିବା ନକଲି
ଶାସନ ମୁଖା ଖୋଲିଦେଇ
ଶୋଷଣ ବିହୀନ ନୂତନ ସମାଜ
ନିଖୁଣେ ତିଆରି କରିବା
ଆସି ବନ୍ଧୁ ଆସ...
ଆଜି ଏ ବଜ୍ର ଶପଥ ନେବା ।



# କୋଣାର୍କ

ଶ୍ୟାମ ସୁନ୍ଦର ମହାପାତ୍ର

(ସଚ୍ଚି ରାଉତରାୟଙ୍କ 'କୋଣାର୍କ' ପରେ)

ତୁମେ ଦେଖିଅଛ ଶିଳାରେ ତା'ର ତ
ରମ୍ୟ କଳାର ରୂପ
ମୁଁ ଦେଖିଛି ତହିଁ କୋଟି ଦର୍ଶକ
ଛାତିରୁ ଉଠେ ଯେ ବାମ୍ଫ ।
ତୁମେ ଚାଖିଅଛ ରସର ଝର୍ଣ୍ଣା
ଚାରୁ ମନ୍ଦିର ତଳେ
ମୁଁ ଜାଣେ କେମିତି ଦର୍ଶକ ଛାତି
ପାଳଗଦା ପରି ଜଳେ;
ଦରଦୀ ମୈତ୍ର ସାଜି
ମୁଁ ପୋଛିଚି ତହିଁ ଦର୍ଶକ ଲୁହ
ଗାମୁଛା ଯାଇଛି ଭିଜି ।
ମୁଁ ଦେଖିଛି ଆସେ ବ୍ୟର୍ଥ ପ୍ରେମିକ
ରାତିର ବକ୍ଷ ଚିରି
ଦେଉଳ ଗାତ୍ରେ ମୁଣ୍ଡ ପିଟେ ତା'
ପ୍ରିୟାର କୀର୍ତ୍ତି ସ୍ମରି
ଦୋହଲି ଉଠଇ ସାରା ମନ୍ଦିର
ପଥର ପଡ଼ଇ ଖସି
ଗବେଷକ ଦଳ ଏ ଭେଦ ନ ପାଇ
ହୁଅନ୍ତି ଭୂସାଭୁସି ।

ଆସନ୍ତି ତହିଁ          ଛାତ୍ର-ଛାତ୍ରୀ
ଏକ୍‌ସକାରସନ୍ ସାଜେ
ଭଙ୍ଗା ଦେଉଳ          ଦର୍ଶନେ ବୁକେ
ବ୍ୟଥାର ମୁଗୁର ବାଜେ,
ଝାଉଁବନେ ବସି          ଭାଳନ୍ତି ସେଇ
ଅତୀତ ଦିନର କଥା
ଜ୍ୟୋସ୍ନା ଧଉତ          ବାଲୁକାର ଶେଯ
ଦଶଗୁଣ କରେ ବ୍ୟଥା
ଭୂତଳେ ଯା'ନ୍ତି ଗଡ଼ି
ବେଦନାର ଶତ          କୋଣାରକ ଚକ
ଛାତିରେ ଯାଏ କି ମାଡ଼ି !
ଆସେ ଲୋକନେତା          ମନେ ପାଏ ବ୍ୟଥା
ମନ୍ଦିର ଆଡ଼େ ଚାହିଁ-
ଆଜିଯାଏଁ କିଆଁ          ଭଙ୍ଗା ଦେଉଳ
ବାଲିରେ ମିଶିଲା ନାହିଁ !
ଭୁଶୁଡ଼ି ଯାଆନ୍ତା          ମନ୍ଦିର ଯଦି
ପାହିବା ଆଗରୁ ରାତି
ସର୍କାରୀ ଦଳ          ଭାଗ୍ୟେ କାଳିକି
ଜଳନ୍ତା ନାଲି ବତି ।
ଆସେ କେ ବିଦେଶୀ          ଉଠଇ ଉଲସି
ଭାବେ ଦେଖି ଚାରୁକଳା
ଅନାଡ଼ି ଦେଶରେ          ଏଡ଼େ ମନ୍ଦିର
କାହିଁକି ରହିଛି ଭଲା !
ସଙ୍ଗତେ ଧରି          ସୁନ୍ଦରୀ ନଟୀ
ଚମ୍ପଟ ଦିଏ ରାତେ
ତଥାପି ଅନେକ          ରହିଗଲା ବୋଲି
ବ୍ୟସ୍ତ ହୁଏ ସେ କେତେ !

କହିଯାଏ ମନେମନେ
ଏହି ମନ୍ଦିର ଦେଖିବ ଓଡ଼ିଆ
ଇଉରୋପେ ଯାଇ ଦିନେ ।
ଆଧୁନିକ କବି ଆସେ ଭାବିଭାବି
କି ଗୀତ ଲେଖିବ ଆଉ
ଟଣାଟଣି କରି ନୂଆ ନ ଲେଖିଲେ
କମିଲା ତାହାର ଭାଉ
ନଗ୍ନ ମିଥୁନ ଲୀଳା ଦେଖି ଦେଖି
ଚିନ୍ତା ଜଳରେ ଭାସି
କହେ ମୁଁ ଦେଖିଲି ସେଠାରେ କେବଳ
କଙ୍କାଳ ରାଶି ରାଶି
ଦେଖି ଦର୍ଶକ ଲୀଳା
ମେଘାସନ କହେ ଅଧମ ଶିଳ୍ପୀ
ଏସବୁ ଯା ଛାଡ଼ିଗଲା !



# କୋଣାର୍କ

ଯନ୍ମୟ କୁମାର ମିଶ୍ର

ଉତ୍କଳ ଦୀପ୍ତି ଉତ୍କଳୀୟ ସ୍ମୃତି
ନାମଟି କୋଣାର୍କ ବହି
ଯୁଗ ଯୁଗ ଧରି ଦଣ୍ଡାୟମାନ
ସବୁ ଝଡ଼ଝଞ୍ଜା ସହି ।
କର୍ମ କୌଶଳ ଗନ୍ତାଘର ସିଏ
ଚନ୍ଦ୍ରଭାଗା ତଟେ ସ୍ଥିର
ଉଡ୍ଡୀୟମାନ ରଥର ସଦୃଶ
ସୂଚାଗ୍ର କଳା ତାହାର ।
ବାର ବର୍ଷରେ ବାରଶ ବଢ଼େଇ
ନିଜ ନିଜ କର୍ମ ଭ୍ରମି
କୀର୍ତ୍ତି ରଖିଲେ କାଳକାଳକୁ ରେ
ପ୍ରାଣପଣେ ଦେଇ ଶ୍ରମି ।
ସମୟ ସ୍ରୋତେ ଅଦୃଶ୍ୟ ସଭିଏଁ
ଏହା ସତ୍ୟ ଚିରନ୍ତନ ।
ସଦା ଜୀବନ୍ତ ଯଶ ଗୌରବରେ
ରହିଥାଏ ତା' ପ୍ରଯତ୍ନ ।



# କୋଣାର୍କ

ନମିତା ପାଇକରାୟ

ମୋର ଉନ୍ମୁକ୍ତ
ରୂପ ଲାବଣ୍ୟକୁ
ଶୀଳାରେ ବିଛାଇ
ଶୀଳାକୁ ଜୀବନ୍ତ କଲ
ତୁମ ଅମୂଲ୍ୟ ମୁହୂର୍ତ୍ତ
ମାନଙ୍କୁ ଦେଇ
ମୋ ନଗ୍ନ ସୌନ୍ଦର୍ଯ୍ୟକୁ
ପ୍ରକାଶିବାକୁ ଶୀଳାରେ
ତୁମେ ନିଶ୍ଚୟ ହୋଇଥିବ
କ୍ଷତାକ୍ତ, ରକ୍ତାକ୍ତ
ନିହାଣ ମୁନରେ
ମୁଁ ଯେ ଅକ୍ଷତ ଯୌବନ
ଶୀଳାରେ ଶୀଳାରେ ବିବସନା
ହେ ସୌନ୍ଦର୍ଯ୍ୟ ପୂଜାରୀ
ବା କାମାନ୍ଧ ପୁରୁଷ
ମୋତେ ଥରେ ଚାହିଁ ନିରେଖି
ମୋ ପାଦରୁ ମସ୍ତକ ଯାଏ
କେଶରୁ ନୂପରୁ ଯାଏ

ସବୁଠି ବାସନା
ସବୁଠି ଯାତନା
ପୁନଶ୍ଚ ଆଣିଦେବ
ଦିବ୍ୟ ଚେତନା
ମୋ ଯନ୍ତ୍ରଣା ଅବ୍ୟକ୍ତ
ତଥାପି ତୁମେ ଆସକ୍ତ
କାରଣ ମୁଁ ଦିବ୍ୟ ସୃଷ୍ଟି
କୋଣାର୍କ ॥



# କୋଣାର୍କ

ପୁରୁଷୋତ୍ତମ ମହାପାତ୍ର

ନଟୀଟିଏ
ନୃତ୍ୟରତା ବୟସୀର ପୃଷ୍ଠଭାଗେ
ସମୁଦ୍ରର କାନ୍‌ଭାସ୍
ଏଇତ
ବାରଶ ବଢ଼େଇର
ସ୍ମୃତି ଇମାରତ୍ !

ଖାଲି ଆଖିରେ
ପ୍ରସ୍ତର ସ୍ତୂପଟିଏ
କବିର କବିତାର ଉତ୍ସ
ଛୁଇଁଦେଲେ
ଲାଗୁଥାଏ ଜୀବନ୍ତ ଜୀବନ୍ତ !

ପାଖରୁ ଦେଖିଲେ
ଉଛୁଳିପଡ଼େ ମନ ସମୁଦ୍ର
ଏମିତିକି
କରୁଚି କେତେ ଭଙ୍ଗୀରେ
ଭାବ ବିନିମୟ
ଲାଗିଯାଏ ମଳୟର ଛୁଆଁ
ଯେବେ ଛୁଏଁ ପାଷାଣୀର ଦେହ !

ସତରେ
ଅନେକ ଅନେକ କଥାକୁହେ
କାନପାରି ଶୁଣିଲେ ନୀରବରେ
ତା' କରୁଣ କାହାଣୀ
ଆଘାତ କରେ ଛାତିତଳ
ଖାଲି ଖାଲି ବାଲିବନ୍ତ
ବେଳାଭୂଇଁ ଖାଁ ଖାଁ ବେଳ !



# କୋଣାର୍କ

ମାନସୀ ମିଶ୍ର

ହେ ଆକାଶ !
ହେ ପୃଥିବୀ !
ଦିଅମୋତେ, ଦିଅମୋତେ
ତୁମ ମରୁଝରା ପ୍ରାନ୍ତରରୁ କିଛି
ରଚିବି ମୁଁ କୋଣାରକ
ପିନ୍ଧି ମୁଖା ସୂର୍ଯ୍ୟ ବଂଶୀ
ଦାୟାଦଙ୍କ ଭଳି ।
ହେ ଚନ୍ଦ୍ରମା !
ହେ ଭାସ୍କର !
ଲୋଡ଼ା ନାହିଁ, ଲୋଡ଼ାନାହିଁ
ଉଚ୍ଚୈଶ୍ରବା ଅଶ୍ୱ
ଐରାବତ ହସ୍ତୀ
ଅବା
ଇନ୍ଦ୍ରଙ୍କର ପାରିଜାତ ପୁଷ୍ପ
ସହସ୍ର କମଳ ଫୁଟୁ - ଏ ଅର୍କ କ୍ଷେତ୍ରରେ
ଭରିଦିଅ ଅଜସ୍ର ଶତଦଳ
ମୋ ସୂର୍ଯ୍ୟ ମନ୍ଦିରରେ
ହେ ସାଗର !
ହେ ତଟିନି !
ବହିଯାଅ, ବହିଯାଅ

୩୮୦ କବିତା  କୋଣାର୍କ

କଳ କଳ ନାଦ କରି
ମୋ କୋଣାର୍କ ଧାରେଧାରେ
ତୁମ ସଙ୍ଗୀତ ସୁଧା ପାନ କରି
ପଲ୍ଲବୀ ଉଠିବେ ସେଠି ବୃକ୍ଷ ଅସୁମାରୀ
ସୂର୍ଯ୍ୟ ଉଇଁବେ ତୁମ ଗର୍ଭରୁ ରକ୍ତ ସ୍ନାନସାରି
ମୟୂର-ମୟୂରୀ
ପୁଚ୍ଛ ମେଲାଇଣ ନୃତ୍ୟ କରିବେ ଆହୁରି ।

ହେ ବାରିଦ !
ହେ ପବନ !
ଫେରିଗଲା, ଫେରିଗଲା
ତୃଷ୍ଣା ମୋର ସୂର୍ଯ୍ୟ ସ୍ନାନ ସାରି
ସେଦିନ ମୋ ଦେହ ଛୁଇଁ
ଶପଥ ବି କରିଥିଲ
ସର୍ତ୍ତଥିଲା ତୁମେ ଦେବ ମୋତେ
ପହିଲି ଆଷାଢ଼ ସାଥେ
ଶ୍ରାବଣର ଶେଷରଙ୍ଗ
ଗଡ଼ଖାଇ ହୋଇ ବହିଯିବ
କୋଣାର୍କର ଚତୁଃର୍ଦ୍ଦିଗ
ହେ ବସନ୍ତ !
ହେ ମଳୟ !
ପୂର୍ଣ୍ଣକର-ପୂର୍ଣ୍ଣକର
ଆଞ୍ଜୁଳାକୁ ମୋର
ତୁମବକ୍ଷ ଶୋଣିତରେ
ଶିଳ୍ପୀ ଦେହେ ମାଖିଦିଅ
ଅବିରର ରଙ୍ଗ ।
ସ୍ରଷ୍ଟା ଦେହେ ଭରିଦିଅ
ଅପୂର୍ବ ରୋମାଞ୍ଚ

କୋଣାର୍କର ଅଙ୍ଗେ ଅଙ୍ଗେ
ଫୁଟି ଉଠୁ ଶିଳ୍ପକଳା
ସ୍ଥାପତ୍ୟ ତରଙ୍ଗ
ହେ କଳା ପାହାଡ଼ !
ଫେରିଯାଅ, ଫେରିଯାଅ
ମଝିରାତିର ସ୍ୱପ୍ନରୁ
ଦିନ ଆଲୁଅର ସତ୍ୟରୁ
ତୁମର ଛାଇ ନପଡୁ
କୋଣାର୍କରେ ମୋର
ଏଇ ପଥର ଗାତ୍ରରେ
ପୁଣି ନିହାଣ ମୁନରେ
ନୃତ୍ୟରତା ନାୟିକା ଗୋ
ଦେବଟ କଳ୍ପନା
ତମେ ଶିଳ୍ପୀର ସୂଚନା
ରହିଯାଅ, ରହିଯାଅ
କୋଣାର୍କର ଅଙ୍ଗେ ଅଙ୍ଗେ
ଛନ୍ଦେ ଛନ୍ଦେ
ବିଭିନ୍ନ ଭଙ୍ଗୀରେ
ମୋ କୋଣାର୍କରେ ।



# କୋଣାର୍କ

ଶଶୀକାନ୍ତ ନାୟକ

ମାନବ ଜାତି ଜବାବ ମାଗେ
କୋଣାର୍କ ତୁମେ ଜବାବ ଦିଅ
କେଉଁ କରମୁଁ ଗରବ ବୋହି
ଜଗତେ ତୁମେ ମହାନ୍ ହୁଅ ?
କାଳ ଗରଭୁଁ ଜନମ ନେଲ
ବିତିଲା ଯେତେ ବିଷାଦ ଭୀତି
ବାର ବରଷ ଝଞ୍ଜା ଝଡ଼
ସହିଲା କେତେ ଓଡ଼ିଆ ଜାତି ।
ରୁଧିର ସ୍ୱେଦ ଆହୁତି ଦେଇ
ମଣିଷ ସିଏ ପାଷାଣ ହେଲା
ବାରଶତପୀ ତପସ୍ୟା ଫଳେ
କୋଣାର୍କ ତହୁଁ ଜନମ ନେଲା ।
ରାଜନ ନାମ କପାଳେ ଲେଖି
ଦେଉଳ ଶୀରେ ଉଡ଼ିଲା ଧ୍ୱଜା,
ଖଜଣା ଦେଇ କଷଣ ସହି
ପାଇଲା କିବା ନିରୀହ ପ୍ରଜା ?
ରାଜାର ଆଜ୍ଞା ସଂଚାର କଲା
ବାରଶ ପ୍ରାଣେ ଶମନ ଭୟ,
ନିଶାର ଅନ୍ତେ ନବ ପ୍ରଭାତେ
ଅସି ଆଘାତେ ଲଭିବେ ଲୟ ।

ରାଜନ ଭୟେ ଅଥୟ ଶିଳ୍ପୀ
ରଖିବା ପାଇଁ କୂଳର ଟେକ,
ବଢ଼େଇ ପୁଅ ଦେଲା ଅଭୟ
ଉଜ୍ଜ୍ୱଳ କଲା ଜାତିର ମୁଖ ।
ଧରମ ରୂପି ଧରମା ସିଏ
ଦୁର୍ଦ୍ଦିନରେ ହୋଇଲା ଉଭା
ନିହାଣ ହାତେ ଚଢ଼ିଲା ଶୀର୍ଷେ
ପୂର୍ଣ୍ଣକଲା ଦେଉଳ ଶୋଭା ।
ଜୀବନ ଡରେ ବଢ଼େଇ କୁଳ
ଶିଶୁ ଶିଳ୍ପୀକୁ ହତ୍ୟାକଲା
ଶ୍ରମଜୀବୀକୁ ତ୍ରସ୍ତ କରି
ରାଜନ କେଉଁ ମହାନ ହେଲା ?
କାଳ ସ୍ରୋତରେ ଘଟିଲା ଯାହା
ସମୟ ତା'ର ନୀରବ ସାକ୍ଷୀ
ସେଇ ସ୍ମୃତିକୁ ଅଥୟ ମନେ
କୋଣାର୍କ ବୁକେ ଧରିଛି ରଖି ।
ମରଣ କାଳେ କରୁଣ ଡାକ
କୋଣାର୍କ ବୁକେ ଦୀର୍ଘଶ୍ୱାସ
କଳଙ୍କ ବହି ରହିଛି ଜୀଇଁ
କାଳ କାଳକୁ ଏ ଇତିହାସ ।



# ହେ କୋଣାର୍କ କହ

ଡ. ସ୍ନିଗ୍ଧା ମହାପାତ୍ର

ହେ କୋଣାର୍କ !
ତୁମେ ଏକ ପ୍ରତୀକ୍ଷିତ ଅନୂଢ଼ାକିଶୋରୀ
ଛଳ ଛଳ ଯୌବନ
ପୂରିଅଛି ତୁମ ଦେହେ
ବୟସ ତ ତୁମ
ପାଶ ମୋଟେ ମାଡ଼ିନାହିଁ
କାହିଁକି ଯେ
ତୁମେ କ'ଣ ଚିରଯୌବନା
ତୁମ ପ୍ରେମ ପାଗଳ ପ୍ରେମିକ କେତେ
ସ୍ମୃତି ହୋଇ ରହିବେଣି
କାହିଁ କେତେ କାଳୁ
ତୁମ ପ୍ରତୀକ୍ଷାର କିନ୍ତୁ ଅନ୍ତ ନାହିଁ
ହେ କୋଣାର୍କ !
କିଏ ସେ ଭାଗ୍ୟବାନ ପୁରୁଷ ?
ଉତ୍‌ଫୁଲ୍ଲିତ ଅନନ୍ତ ଯୌବନ ତବ,
ପ୍ରତୀକ୍ଷିତ କହ କାହା ପାଇଁ ?



# କୋଣାର୍କ

ବିଷ୍ଣୁ ମହାପାତ୍ର

ଯିଏ ଯୁଆଡ଼େ ଅଛ ଆସ
ଦେଖ କେମିତି ଦିଗ୍‌ବଳୟକୁ ଚିରି
ଉଡ଼ିଯାଉଛନ୍ତି କପୋତ
ସେଇ ଇଲାକାକୁ
ଯାହା ଦିନେ ଉଜୁଡ଼ିଥିଲା
ଅକାଳ ଘୂର୍ଣ୍ଣିରେ ।

ତୁମର ମୋଟେ ବିଶ୍ୱାସ ନାହିଁ
ଚନ୍ଦ୍ରଭାଗାର ବୁକୁରେ ଭସେଇହେବ ପଥର
ଗଢ଼ିହେବ ପୁଣି ଥରେ ମୁଖଶାଳା
ପ୍ରତିଷ୍ଠା କରିହେବ ଗର୍ଭଗୃହରେ ଅଣାକାର,
ଯୋଡ଼ିହେବ ପୁଣି ଥରେ
ଅତୀତ ସଙ୍ଗେ ଆମ ଭାଗ୍ୟର ଡୋର ।

କାହିଁକି କହିବି ସବୁବେଳେ
ଅବିଶ୍ୱାସ କଥା !
ତୁମେ ହୁଏତ ଭାବିବ
ଅବିଶ୍ୱାସ କରିବା ମୋ ଦ୍ୱିତୀୟ ପ୍ରକୃତି,
କାହିଁକି ମୁଁ ଛାତି ଫାଡ଼ି ଦେଖେଇବି ଶୂନ୍ୟସ୍ଥାନ,
ତୁମେ ଭାବିବ

ଏଇ ଅବସ୍ଥାରେ ବି ମୁଁ
ଛାଡ଼ିନାଇ ଅହଂଭାବ ।
ଯିଏ ଯୁଆଡ଼େ ଅଛ ଆସ
ଦେଖ କେମିତି ନୀରବ ଉଚ୍ଛ୍ୱାସ
ଆବୋରିଛି ମୋ ପଥୁରିଆ ଦେହ,
ସମୁଦ୍ର କେମିତି ଲମ୍ବେଇଛି
ତା'ର ଫେଣୁଆ ବେକ,
ମୁଁ ଦିଗ୍‌ବଳୟକୁ ମୁହଁ କରି ଗୁଣୁଗୁଣେଉଛି
ସେଇ ପୁରୁଣା ଦରଭୁଲା ଗୀତ ।



# କୋଣାର୍କ ଜଗନ୍ନାଥ

ମଦନମୋହନ ମିଶ୍ର

ଶିଳା ଦିହେ କଳାବତୀ ଝିଅଙ୍କର କୁଆଁର ପୂନିଅଁ
ଥୋଇ ଦେଇ ଉପରକୁ ଆଖି ଦେଇ ଦେଇ
ଭାବୁଥିଲି ସୂର୍ଯ୍ୟ ମୋତେ କହିବ ଏଥର
ଟାଣିବାକୁ ତ୍ରିଭୁବନ ବିମୋହନ ରଥ ।

ରଥ ପଥ ଆଲୁଅର ଯାତ
ମୋ ଭିତରେ କେତେବେଳୁ ଉଠିଲେଣି ମାତି
ତଥାପି ସେ ଦିନମଣି... ମଥାମଣି ହେଲା ନାହିଁ
ଶିଳାଅଙ୍ଗେ ଅନଙ୍ଗ ସୁନ୍ଦରୀ କବରୀ ଭଙ୍ଗରେ ।

ରଥଟଣା ରସିକତା ମଉଳିବା ବେଳ
ଦିନାନ୍ତର ରମ୍ୟରଙ୍ଗ ଦୂରେଇ ଗଲାଣି
ଅସ୍ତରଙ୍ଗ ସରି ସରି ଆସେ
ମାଟି ପାଣି ସଙ୍ଗମିତ ବେଳାବନ
ମନ ମୋର ଉଦାସ... ଉଦାସ ।
ତଥାପି ଚାହିଁଲି ଊର୍ଦ୍ଧ୍ୱେ
ଗଗନର ନୀଳନୀଳ କୋଣ
ଅର୍କ ସେଠି ଅନ୍ଧାରୀ ଚେହେରା
ସିଏ ବି ଗଢୁଛି ରଥ... ଚମ୍ପାଫୁଲ ରଥ
ସୁନାପାଣି ଉଛୁଳିବା ଚନ୍ଦ୍ରମାର ରଥ

ଉତ୍ତାପ ପାସୋରି ଦେଇ
ସେଠି ଖାଲି ଉତ୍ତରଣ ଛନ୍ଦ ।

ସେ ରଥକୁ ପ୍ରଦକ୍ଷିଣ କରି
କୋଣେ କୋଣେ... ଅର୍କ ଡାକ-
ପାରିବ ତ ଉପରକୁ ଆସ
ଦେଖ... ଦେଖ... ଭଲକରି ଦେଖ
ଅମୃତ ଅନ୍ଧାର... ତା' ଭିତରେ ରଥ କାରିଗରୀ
ନିଜ ପାଖୁ ନିଜ ରଥ ନିଜେ ସେ ଟାଣୁଛି
କୋଣ ଅର୍କ ରଥ ବିହରଣ
ଏକା ଏକା ଅକାରଣ ନିଜେ ସେ ଖେଳୁଛି ।।



# ସଂପର୍କ-କୋଣାର୍କ

ବିପ୍ରଚରଣ ପାତ୍ର

ଏମିତି ହୁଏ
ଅନେକ ଦିନ ଲାଗେ ତଳରୁ ତାଳିଗା
ଚନ୍ଦ୍ରଭାଗାର ଛାତିପରେ
କେତେ ଉଦ୍‌ବେଳନ
ସମୟର ନିଥର ସୁଅରେ
ପ୍ରଚେଷ୍ଟାର ପଥର ଖଣ୍ଡ ଭାସିଯାଏ
ପୁଣି ଥାକ ଥାକ ଯୋଡ଼ାହୁଏ ଥରକୁ ଥର
ଆବେଗର ନିହାଣ ମୁନରେ
ଫୁଟି ଉଠେ ଭଲ ପାଇବାର ଫୁଲ
ତୋଳାହୁଏ ସଂପର୍କ ସୌଧ-କୋଣାର୍କ ।

କିଏ ଜାଣିଥିଲା
ଏହା ବିଡ଼ମ୍ବନା ନୁହେଁ ତ ଆଉ କ'ଣ ?
ଯାହା ବି କିଛି ଗୋଟେ ହରାଇବାକୁ ହେବ
ବାରଶହ ବଢ଼େଇ ଅଥବା ଧର୍ମପଦ
ସେଇଆ ହୁଏ
ପରିସ୍ଥିତିର ଅତଳ ସମୁଦ୍ରରେ
ଭାବପ୍ରବଣତାର ଧରମା ହଜିଯାଏ
ସବୁଦିନ ପାଇଁ ହତାଶବୋଧର କୁଇରେ
ବିଚରା କୁହୁଳୁଥାଏ ଅସହାୟ ବିଶୁ ମହାରଣା ।



# ବାପାଙ୍କ ପାଇଁ କୋଣାର୍କ

ବିମଳଚନ୍ଦ୍ର ପତି

ସ୍ୱପ୍ନମାନଙ୍କର ପ୍ରତାରଣାରେ
ଶରାହତ ହେଇଚି ବୋଲି ଡରିଗଲ କି ବାପା !
କାତରତାରେ ଥୋଇ ଦେଲକି
ବିଶ୍ୱାସକୁ ଦମ୍ଭକୁ ଢାକିଢୁକି
ସାତ ସିନ୍ଧୁକ ଭିତରେ
ତୁମର ସେ ମନ୍ତ୍ର ପୋଥିରେ ।

ତୁମେ ଦେଖ
ଏଯାଏ ବି ମୋ ଭିତରୁ ଯାଇନି
ଯୁଦ୍ଧ ଭୂଇଁକୁ ଉତୁରି ଯିବାର ନିଶା
ସମୁଦ୍ର ଜୁଆରକୁ ଲମ୍ଫ ମାରିବାର
ଅମାପ ବିଶ୍ୱାସ ।
ପରିଚିତ ଆଖିମାନଙ୍କରେ
ଆଉ ଆଗପରି ନାହିଁ ଆତ୍ମୀୟତା
ସବୁରି ଭିତରେ ଖାଲି ଛଳନା
ସ୍ୱାର୍ଥର ଯାଦୁକର କେମିତି
କାବୁ କରି ନେଇଛି ପ୍ରତିଟି
ହୃଦୟକୁ ।

ତଥାପି ମୋର ସାହସ ଅଛି
ପବନକୁ ବାନ୍ଧି ଦେବାକୁ

ତୁମ ଗାମୁଛା କାନିରେ;
କାପୁରୁଷମାନଙ୍କ ମେରୁ ହାଡ଼କୁ
ଏକାଠି କରି ପକେଇବି ମୂଳଦୁଆ
ଅପେକ୍ଷା କର
ତୁମ ସ୍ନେହର ସିମେଣ୍ଟରେ
ବିଶ୍ୱାସର ପଥର ଖଣ୍ଡକୁ ବାନ୍ଧି
ବନ୍ଦ କରିଦେବି ସମୁଦ୍ରର
ଡେଙ୍ଗାଡେ଼ଙ୍ଗା ଭାବ ।

ମନ୍ଦିର ତୋଳିବି
ଦଧିନଉତିରେ କବର ଦେଇଦେବି
ଅହଙ୍କାରୀ ରାଜାଙ୍କର ନାଲିଆଖି
ସବୁ ଗାତ୍ରରେ
ଥୋଇଦେବି ତୁମ ପ୍ରିୟ ଆତ୍ମୀୟଙ୍କ ପରି
ବାରଶ ବଢ଼େଇଙ୍କ ସ୍ୱପ୍ନ ।
ତୁମ ସ୍ନେହ, ଆଶୀର୍ବାଦ ଆଉ
ଦମ୍ଭରେ ତିଆରି ତିନିଖଣ୍ଡ
ପଶାକାଠି ଦେଇଦିଅ
ପାଲିରେ ବାଜିମାତ୍ କରି
ଆଣ୍ଠେଇ ଦେବି ପାତ୍ର, ମନ୍ତ୍ରୀ, କଟୁଆଳଙ୍କୁ
ମୁଖଶାଳାରେ ।



# କୋଣାର୍କର୍ ଆଦ୍ୟ ଇତିହାସ

ବସନ୍ତ କୁମାର ମହାପାତ୍ର

ଚନ୍ଦ୍ରଭାଗାର ମୁହାଣ ଗରଭ
ସାଗର ହେଉଛି ପୋତା
ଶିବେଇ ସାନ୍ତରା ପାଟ ମନ୍ତ୍ରୀ ମନେ
ଘୋଟିଛି ଅଥଳ ଚିନ୍ତା ।୧ ।
ପର୍ବତ ପ୍ରମାଣ ପଥର ପଡୁଛି
ଅହରହ ଦିବାରାତି
ଚାରି ପକ୍ଷ ଏବେ ଅତୀତ ହେଲାଣି
ମୁହାଣ ନୋହୁଛି ପୋତି ।୨ ।
ଗଜପତିଙ୍କର ଆଦେଶ ହୋଇଛି
ନୀଳ ସାଗରର କୋଳେ
ଗଢ଼ା ହେବ ଏକ ଅପୂର୍ବ ମନ୍ଦିର
ଉଦ୍ଦିଷ୍ଟ ସମୟରେ ।୩ ।
ବିଜେ ହେବେ ଏଥି ସୂରୁଯ ଦେବତା
ତେଜୋ ରାଶି ଜଗତପତେ
ବିରାଜିବ ଏଥି କଳା କାରୁକାର୍ଯ୍ୟ
ଓଡ଼ିଆ ଶୀଳିପି ହାତେ ।୪ ।
ଚିନ୍ତିତ ମନେ ଫେରୁଥିଲେ ଦିନେ
ଶିବେଇ ସାନ୍ତରା ମନ୍ତ୍ରୀ
ଘନ ବନପଥେ ଏକାକୀ ବିଷଣ୍ଣେ
ଘୋଟି ଆସୁଥିଲା ରାତି ।୫ ।

ପଥଧାରେ ଏକ କୁଡ଼ିଆ ନିରେଖି
ପିଣ୍ଡା ପରେ ଗଲେ ଶୋଇ
ଅବଶ ଶରୀର ଅସ୍ଥିର ହୃଦୟ
ଆଉ ନ ପାରିଲେ ଯାଇ ।୬ ।
କିଛିକ୍ଷଣପରେ ଜୀର୍ଣ୍ଣ କୁଟୀରୁ
ବୃଦ୍ଧା ଜଣିଏ ଆସି
ସେନେହେ ଡାକିଲେ ଆଦ ବାପ ଆସ
ଆହାର କରିବା ମିଶି ।୭ ।
ମହା ଦୁଃଖିନୀ ମୁଁ ଆମ୍ବିଳା ଜାଉ
ଶାଗ ଭଜା ଅଛି କରି
ଅତିଥି ଦେବତା ନଭୁଂଜିଲେ ତୁମେ
ଭୁଂଜିବି ମୁଁ କେଉଁ ପରି ।୮ ।
ଭୋକରେ ଆଉଟି ହେଉଥିଲା ପେଟ
ତରବରେ ମୁହଁ ଧୋଇ
ଥାଳି ପାରୁଶରେ ଆସନ ଉପରେ
ଶିବେଇ ବସିଲେ ଯାଇ ।୯ ।
ତତଲା ଜାଉରେ ଥାଳି ମଝିଟାରେ
ମାରି ଦେଉଁ ଦେଉଁ କର
ଆଙ୍ଗୁଳି ଜଳିଲା ପାଟିକୁ ନ ଗଲା
ଶିବେଇ ହେଲେ ଅସ୍ଥିର ।୧୦ ।
ହସି ହସି ବୁଢ଼ୀ କହିଲା ପୁଅରେ
ଏଡ଼ିକି ବାଇଆ ତୁହି
ମୂରୁଖ ଶିବେଇ ପରାଏ ତୋ ବୁଦ୍ଧି
ଜାଉ ନ ପାରୁଛୁ ଖାଇ ।୧୧ ।
ଗଜପତି ରାଜା ମନ୍ତ୍ରୀ ଶିବେଇ
ଦରିଆ ମଝିରେ ନେଇ
ପଥର ପକାଏ ନଦୀ ପାଣି ସୁଅ
ନେଉଛି ସବୁ ଭସାଇ ।୧୨ ।

କୂଳ ଆଡୁ ସିନା        ପଥର ପକାଇ
ଆରମ୍ଭି ଥାଆନ୍ତା କାମ,
ବଡ଼ ଲୋକ ସିଏ        କିଏ ବା କହିବ
ଓଲଟି ହୋଇବେ ବାମ ।୧୩।
ସେହି ମତେ ପୁଅ        ଥାଳିର କଡ଼ରୁ
ଧୀରେ ଖାଇଥିଲେ ଜାଉ
ମଝି ଥାଳି ଜାଉ        ଥଣ୍ଡା ହୋଇଥାନ୍ତା
ହାତେ ତେଣେ ଯାଉ ଯାଉ ।୧୪।
ଏଡ଼ିକି ବୋକା ଏ        ମନ୍ତ୍ରୀଙ୍କୁ ନେଇ
କେଉଁ ପରି ଗଜପତି
ପାଳିବେ ନିଶ୍ଚିନ୍ତେ        ଉତ୍କଳ ରାଇଜ
ରଖିବେ ଅକ୍ଷୟ କୀର୍ତ୍ତି ।୧୫।
ଏଡ଼ିକି ସାହସ        କିଏ ସେ କହିବ
ମୁଣ୍ଡ ତା ରହିବ ନାହିଁ
ସରଗକୁ ଯେହ୍ନେ        ସିଡ଼ି ନାହିଁ ବାପ
ବଡ଼ଙ୍କୁ ଉତ୍ତର ନାହିଁ ।୧୬।
ବୁଦ୍ଧିବଳେ ନର        ଜଗତ ଜିଣଇ
ସବୁଠି ଅରଜେ ଯଶ,
ବୁଦ୍ଧିହୀନ ଜନ        ବାଟବଣା ହୋଇ
ଲଭେ ସିନା ଅପଯଶ ।୧୭।
ଶୁଣୁ ଶୁଣୁ କଥା        ଚମକିଲେ ମନ୍ତ୍ରୀ
ଦେଲେ ନାହିଁ ପରିଚୟ
ଭାଳିଲେ ମଉନେ        ଧନ୍ୟ ଏହି ବୃଦ୍ଧା
ଦୂରକଲେ ମୋର ଭୟ ।୧୮।
ସୁଖ ନିଦ୍ରା ଏବେ        ବରିଲେ ଆନନ୍ଦେ
ରାତ୍ର ହେଲା ଗାଢ଼ତର
ସ୍ୱପନେ ଦେଖିଲେ        କାରୁକାର୍ଯ୍ୟଭରା
ଅପୂର୍ବ ଅର୍କ-ମନ୍ଦିର ।୧୯।

ପ୍ରତେ ହେଉଥିଲା ସପତ ଅଶ୍ୱର
ବଲ୍‌ଗା ନିଜ କରେ ଧରି
ଦ୍ୱାଦଶ ଚକରେ ମଣ୍ଡିତ ରଥରେ
ବିଜେ ପ୍ରଭୁ ଅଂଶୁମାଳୀ ।୨୦ ।
କଳା କଉଶଳ ଶୋଭାରେ ଅତୁଳ
ଓଡ଼ିଆ ବିନ୍ଧାଣୀ କୃତି
ଝଟକୁ ଥିଲା କି ପାଷାଣ ବକ୍ଷରେ
ଉତ୍କଳ ଜୀବନ - ଗୀତି ।୨୧ ।
ପରାଣ ଆନନ୍ଦେ ଭକ୍ତି ଗଦ ଗଦେ
ଯୋଡ଼ ହସ୍ତେ ହୋଇନତି,
ସହସ୍ରାଂଶୁ ପଦେ ପ୍ରଣତି ବାଢ଼ିଲେ
ଉତ୍କଳ ମହାମନ୍ତ୍ରୀ ।୨୨ ।
ରାତି ପାହିଗଲା ସପନ ଭାଙ୍ଗିଲା
ଚଉଦିଗେ ଆଖିଫେଇ
ଦେଖନ୍ତି ଶିବେଇ ଶୂନ୍ୟ ସେ କୁଡ଼ିଆ
ବୃଦ୍ଧା ତ କେଉଁଠି ନାହିଁ ।୨୩ ।
ମହା କୁତୁହଳେ ପୂରିଲା ହୃଦୟ
ଶିବେଇ ଭାଳିଲେ ବସି,
ସତେକି ସୂରୁଜ ଦେବ, ବୃଦ୍ଧା ବେଶେ
ବୁଦ୍ଧି ଦେଇଗଲେ ଆସି ।୨୪ ।



# କୋଣାର୍କ

ନାରାୟଣ ପ୍ରସାଦ ମିଶ୍ର

ମହନୀୟ ଭାସ୍କର୍ଯ୍ୟର ଶ୍ରେଷ୍ଠତମ କୃତି,
ଅପରୂପ ସୌନ୍ଦର୍ଯ୍ୟର ମୂର୍ତ୍ତ ପ୍ରତୀକ,
ଅର୍କପୀଠ, ହେ କୋଣାର୍କ ! ବିଗତ ଯୌବନା,
ବାର୍ଦ୍ଧକ୍ୟର କୃଷ୍ଣ ଛାୟା ଆବୋରିଛି ଅଙ୍ଗୁ,
ଯୌବନର ଉଦ୍ଦାମତା, ଚଳ ଚଞ୍ଚଳତା,
ତନୁ ବଲ୍ଲରୀରୁ ଲୁପ୍ତ, ଲୋଳିତ ବଦନା ।
ତଥାପି ଅଦ୍ଭୁତ ତୁମ କାଉଁରୀ ପରଶ,
ଦର୍ଶକର ମନ ପ୍ରାଣେ ଜଗାଏ ପୁଲକ,
ହୁଏ କବି କର ଲେଖନୀ ଚଳଚଞ୍ଚଳ,
ତୁମ ଅନୁପ୍ରେରଣାରେ, ତୁମରି ସ୍ମୃତିରେ,
ବର୍ଣ୍ଣିବାକୁ ବିସ୍ମୃତ ତବ ଅନନ୍ତ ମହିମା,
ବର୍ଣ୍ଣାଢ୍ୟ ସୁଷମା କାନ୍ତି, ମଧୁର, ସ୍ୱପ୍ନିଳ ।
ଇତିହାସ, ଶତ ମୁଖ, ତବ ଜୟ ଗାନେ,
ବର୍ଷ, ବର୍ଷ, କାଳ, କାଳ, ଯୁଗ, ଯୁଗ ଧରି,
ପାରାବାର ନିତି ବନ୍ଦେ, ତବ ପଦ ପ୍ରାନ୍ତେ
ଶିଳ୍ପୀ କୁଳର ନୟନ ଅଶ୍ରୁଳ, ପ୍ରଶ୍ନିଳ
ଅନ୍ୱେଷନ୍ତି ସତେ ଅବା ବିଶୁ, ଧରମାରେ
ଜରାଜୀର୍ଣ୍ଣ ତୁମର ଏ ପାଷାଣର ଗାତ୍ରେ ।

ଅନ୍ତର୍ଦାହେ ଜଳି ଜଳି କର ରୋମନ୍ଥନ,
ଗୌରବାବହ ଆପଣା ସ୍ୱର୍ଣ୍ଣାଭ ଅତୀତ,
ମ୍ରିୟମାଣ ଦୁଃଖ ଲଜ୍ୟା, ଅନୁଶୋଚନାରେ
ନୀରବ, ନିଥର ତୁମେ ନିସ୍ତେଜ ବିବର୍ଣ୍ଣା
ଗୁମରି ଗୁମରି କାନ୍ଦୁଅଛ ସଂଗୋପନେ
ଅନୁଭବି ମାନବର ତାଛଲ୍ୟ ବେଭାରେ ।
ସାଥୀ ତୁମେ ଝାଉଁବଣ ବୁଝେ ମର୍ମ ବ୍ୟଥା,
ଛାଡ଼େ ସମ ବେଦନାର ଉଷ୍ଣ ଦୀର୍ଘଶ୍ୱାସ,
ପବନ ହିଲ୍ଲୋଳେ ତା'ର କରୁଣ ମୂର୍ଚ୍ଛନା,
ଆନ୍ଦୋଳିତ କରିଥାଏ ସାଗର ହୃଦୟ,
ବ୍ୟଥାତୁରେ ମଥା ପିଟେ ବେଳା ଭୂମି ତଟ,
ଉପେଣେ ତରଙ୍ଗେ କରି ବିରକ୍ତି ବ୍ୟଞ୍ଜନା ।
କ୍ରୋଧରେ ଆରକ୍ତ ମୁଖ କରନ୍ତି ତପନ,
ଅସ୍ତଗାମୀ ହେବା ଆଗୁଁ, ବାରୁଣୀ ଗଗନେ,
ବିନ୍ଦୁ ବିନ୍ଦୁ ଝରି ତବ ବ୍ୟଥାର ଲୋତକ,
ଭିଜାଏ କାକର ରୂପେ ବାଲୁକା ଶଯ୍ୟାରେ,
ସୁବିସ୍ତୀର୍ଣ୍ଣ ବେଳା ଭୂମି, କରେ ସିକ୍ତ ଆର୍ଦ୍ର,
ନୁହେଁ କିଗୋ ଏହା ତୁମ ବେଦନା ବ୍ୟଞ୍ଜକ !
ଅଶେଷ ଯାତନା ସହି ତଥାପି ମଉନ,
ଦିନୁ ଦିନ କ୍ଷୀଣ ଆୟୁ, ହୁଏ ଶୀରୀ ହୀନ,
ବିବଶ ମାନବହୃଦେ, ତିଳେ ବି ଦରଦ,
ନାହିଁ କାହା ପାଇଁ, ସ୍ୱାର୍ଥେ, ସଦା ସିଏ ଅନ୍ଧ,
ଉପକାରୀ, ଅପକାରୀ; ବୁଝେ ନାହିଁ ଭେଦ,
କି ବୁଝିବ ବ୍ୟଥା ତୁମ, ବୁକୁତଳ ଖେଦ !



# ଅମର୍ ଶିଳ୍ପୀ

ମହେନ୍ଦ୍ର କୁମାର ମହାପାତ୍ର

ପ୍ରତ୍ୟୁଷରୁ ଦିନେ ହୁରି ପଡ଼ିଗଲା
ମନ୍ତ୍ରୀ କରିଛନ୍ତି ବିଜେ,
କୋଣାର୍କେ କଳସ ବସାଇଲା କିଏ
ତଦନ୍ତ କରିବେ ନିଜେ ।
ଦୁଃଖିନୀ ଜନନୀ ଆସିଛନ୍ତି ସାଥେ;
ମିଳିଲେ ମନ୍ଦିର ପାଶେ,
ଦେଖିଲେ ପାଷାଣ ହସୁଛି କିପରି
ଉତ୍କଳଶିଳ୍ପୀ ପରଶେ ।
ପାଷାଣେ ଦେଖିଲେ ନିଜ ପତି ହସ୍ତ-
ନିର୍ମିତ କଳାକୌଶଳ,
ମନପ୍ରାଣ ତାଙ୍କ ତୃପ୍ତି ଲାଭ କଲା
ଚକ୍ଷୁ ହୋଇଲା ସଜଳ ।
ମନେ ପଡ଼ିଯାଏ ଗୃହ ଅଗଣରେ
ପତିଙ୍କ ଶିଳ୍ପଚାତୁରୀ,
ଏଇ ଶିଳ୍ପକଳା ଦିଶୁଅଛି ଆଜି
ଅବିକଳ ସେହିପରି ।
ଦୁଃଖିନୀ ଜନନୀ- ଗନ୍ଧ ବାରି ବାରି
ବଳିଆ କୁକୁର ଉଠି,
ଧୀରେ ଧୀରେ ଆସି ଅଚାନକେ କାହୁଁ
ଜନନୀ ପଦରେ ଲୋଟି ।

ବଳିଆକୁ ଦେଖି ଦୁଃଖିନୀ ଜନନୀ
ଆବେଗରେ କୋଳ କରି,
"କହରେ ବଳିଆ ମୋ ଧରମା କାହିଁ ?
କେଉଁଠି ଅଛି କପରି ?"
କୁକୁର ବୁଝିଲା ଜନନୀ ବେଦନା
କୁଉଁ କୁଉଁ ଭାଷା ତାର,
ଜନନୀ ମନରେ ଅବିଳମ୍ବେ ତାହା
କରଇ ଭୀତି ସଞ୍ଚାର ।
ଶିବେଇ ସାନ୍ତରା ଦେଖନ୍ତି ବିସ୍ମୟେ
ପଶୁ, ମଣିଷର ଭାବ,
ଏତେ ଲୋକ ମଧ୍ୟେ ବିଶ୍ୱାସୀ କୁକୁର
ଜନନୀକୁ କରେ ଠାବ ।
ଧୀରେ ଧୀରେ ଚାଲେ କୁକୁର, ପଛରେ
ଚାଲନ୍ତି ବୃଦ୍ଧା ଜନନୀ,
ଅନ୍ୟକୁ ନିବାରି ଶିବେଇ ସାନ୍ତରା
ପଛେ ଯା'ନ୍ତି ହୋଇ ତୁନି ।
ଅଦୂରେ ଦିଶିଲା ମନ୍ଦିର ଗାତ୍ରରେ
ଆଉଜିଣ କେହି ଜଣେ,
ବସିଛି ନୀରବେ, ବାରି ହୁଏ ନାହିଁ
ଅଛି କି ନ ଅଛି ପ୍ରାଣେ ।
ନିକଟକୁ ଯାଇ ବୃଦ୍ଧର ଉପରେ
ପଡ଼ିଲା ପତ୍ନୀର ଦୃଷ୍ଟି,
'ସ୍ୱାମୀ' ବୋଲି କହି ଅଜ୍ଞାନ ହୋଇ ସେ
ପାଦତଳେ ଗଲା ଲୋଟି ।
ସେ କର ପରଶେ ଭାଙ୍ଗିଗଲା ଧ୍ୟାନ
ଶିହରି ଉଠିଲା ଦେହ,
ପାଦତଳେ ଦେଖି ଦୁଃଖିନୀ 'ମାତା'କୁ

ସମ୍ଭାଳି ହେଲାନି କୋହ ।
ପିଲାଙ୍କ ପରାୟେ କଇଁ କଇଁ ହୋଇ
କାନ୍ଦି କାନ୍ଦି ଗଲା ପଡ଼ି,
ଦେଖି ସେହି ଦୃଶ୍ୟ ଶିବେଇ ସାନ୍ତରା
ନୟନୁ ଲୋତକ ଗଡ଼ି ।
"କୁହ କୁହ ମୋର ଧର୍ମପଦ କାହିଁ
କେଉଁଠି ଅଛି ମୋ ଧନ,
ଏକୁଟିଆ ତାକୁ ପଠାଇ ଦେଇ ମୋ
ବିକଳ ହେଉଛି ମନ ।"
ଏକାଳେ ଅରୁଣ ଚକ୍ରବାଳ ତଳୁ
ଧୀରେ ଧୀରେ ଦେଲେ ଦେଖା,
ଦରିଆ ବୁକୁରୁ ଉର୍ଦ୍ଧ୍ୱେ ବିକଶିଲା
ଉଜ୍ଜ୍ୱଳ ଲୋହିତ ଶିଖା ।
ସେ ଶିଖାକୁ ଦେଖି ବିଶୁ ମହାରଣା
ଅଙ୍ଗୁଳି କାଢ଼ି ଦେଖାଇ,
"ଧରମାର ଚିତା ଜଳୁଛି ସେଠାରେ
ଧୈର୍ଯ୍ୟ ଧରି ଦେଖ ରହି ।
ଧରମାର ଚିତା ଜଳିବା ପାଇଁ କି
ଏ ଧରାରେ ନାହିଁ ସ୍ଥାନ,
ଏ ଦେଶର ଶିଳ୍ପୀ ପୁରସ୍କାର ପାଏ
କ୍ରୂର ଅକାଳ ମରଣ ।"
ଏହା କହି ବୃଦ୍ଧ ଉଠିଲା ଆବେଗେ
ପତ୍ନୀର ଅଞ୍ଚଳ ଧରି,
ଡାକେ "ଆସ ଆସ ଧରମାକୁ ନେଇ
ଯିବା ଗୋ ଘରକୁ ଫେରି ।"
ଶିବେଇ ସାନ୍ତରା ପଥ ଉଗାଳନ୍ତି
"ରୁହ ରୁହ ମହାରଣା,

ଏତେ ବଡ଼ ଶିଳ୍ପୀ    ଏ ବୃଦ୍ଧ ବୟସେ
ହୁଅ ନାହିଁ ବାଟବଣା ।
ତୁମ ହାବଭାବ    ତୁମରି ସ୍ୱଭାବ
ସନ୍ଦେହ ଦେବାରୁ ଆଣି,
ରାଜାଙ୍କ ଆଦେଶେ    ଆସିଛି ଏଠାକୁ
କିଛି ନ ପାରୁଛି ଜାଣି ।"
"ଜାଣିଲେ ବି ଅବା    ଆଉ କି କରିବେ
ଧରମା ତ ଫେରିବନି,
ବଳିଆ କୁକର    ବିକଳ ଡାକରେ
ଏ ଦରିଆ ଥରିବନି ।
ମାଆ ଆସିଥିଲା    ପୁଅକୁ ଦେଖିବ
ଦେଖିଲା ତା ସର୍ବନାଶ,
ବାରବର୍ଷ ପୁଅ    ହେଲେ ବସାଇଲା
ମନ୍ଦିର ଚୂଡ଼ାକଳସ ।
ବାରଶ ବଢ଼େଇ    ମୁଣ୍ଡ ରଖିବାକୁ
ମନ୍ଦିର ଚୂଡ଼ାରେ ଚଢ଼ି,
ଉଲ୍କାସମ ଖରେ    ଡେଇଁଲା ଜଳକୁ
ସିନ୍ଧୁ ମଧ୍ୟେ ଗଲା ବୁଡ଼ି ।
ଏ ଦେଶ ତ ତା'ର    କରଣୀ ଦେଖିବ
ତାକୁ ତ ଦେଖିବ ନାହିଁ,
ସରଗର ତରା    ସରଗକୁ ଗଲା
ରାତି ଯେଣୁ ଗଲା ପାହି ।"
"ଅତି ସରାଗରେ    ପଠାଇଲ ତାକୁ
ବାପକୁ ଆସିବ ଦେଖି,
ବାପର ମୁଣ୍ଡକୁ    କିଣି ଦେଇଗଲା
ଆପଣାର ମୁଣ୍ଡ ବିକି ।
ଖାଲି ବାପ ନୁହେଁ,    ବାରଶ' ବଢ଼େଇ

ମୁଣ୍ଡକୁ ରଖିବି ବୋଲି;
ଏଇହାତେ ତା'ର     ସୁକୁମାର ତନୁ
ଦରିଆକୁ ଦେଲି ଠେଲି ।
ରାଜା ଦେଉଥିଲେ     ପୁରସ୍କାର ମୋତେ
ପୁଅକୁ ମାରିଚି ବୋଲି,
ଧରମ ଦେବତା     ଉପହାର ମୋତେ
ଦେଇଚି ଦରିଆବାଲି ।
ଏ ବାଲିରେ ଆଉ     ସାଇ ଭାଇ ବନ୍ଧୁ
ରାଜାଘର ଭୟ ନାହିଁ,
ଏ ବାଲିରେ ଆମେ     ଅନାଇ ବସିବା
ଧରମାର ପଥ ଚାହିଁ ।
ରାତି ପାହୁଥିଲା,     ପାହି ତ ନ ଥିଲା
ବାରଶହ ମୁଣ୍ଡ ରହୁ,
ଧର୍ମପଦ ନାମ     ଲୋପ ପାଇଗଲା,
କେହି ନ ଜାଣିବେ ଆଉ ।"
ଦୁଃଖିନୀ ଜନନୀ     ଚକ୍ଷୁ ଛଳ ଛଳ
କହିଲା, "ଧର୍ମଦେବତା,
ଧର୍ମପଦ ମୋର     ଧର୍ମପଥେ ଗଲା
ସେଥିକି ନାହିଁ ମୋ ଚିନ୍ତା ।
ପ୍ରକୃତରେ ଯଦି     ଜନନୀ ମୁଁ ତା'ର
ଗର୍ଭେ ଧରି ଦଶମାସ,
ପ୍ରକୃତରେ ଯଦି     ଧରମ ଦେବତା
ନେଲ ତାକୁ ତୁମ ପାଶ ।
ସତେ ଯେବେ ଏଇ     ନୀଳ ପାରାବାର
ସାକ୍ଷୀ ଏଇ ଘଟନାର,
ପ୍ରାଣୀଙ୍କୁ ତାରିବା     ପାଇଁ ପୁଣ୍ୟମୟ-
ତୀର୍ଥ ଚନ୍ଦ୍ରଭାଗା ତୀର ।

ଯେଉଁଠାରେ ଯାଇ ଲୁଚିଛି ମୋ ଧନ
ସେଠାରେ ଦେଖିବି ତାକୁ,
ଜୀବନରେ ଆଉ ଥରେ ମୁଁ ଦେଖିଲେ
ତୃପ୍ତ ହେବ ମୋର ବୁକୁ ।"
ଜନନୀର ମୁଖୁ କଥା ନ ସରୁଣୁ
ଦରିଆ ଜଳକୁ ଦେଖ,
ଢେଉ ରାଶି ତା'ର ସ୍ତବ୍ଧ ହୋଇଗଲା
ସ୍ଫୀତ ହେଲା ତା'ର ବକ୍ଷ ।
ଜଳରାଶି ମଧ୍ୟୁ ଉଠିଲା ଊର୍ଦ୍ଧ୍ୱକୁ
ଉଜ୍ଜ୍ୱଳ ଆଲୋକଶିଖା,
ସେ ଶିଖା ମଧ୍ୟରେ 'ଧର୍ମପଦ' ଦେଖ
ପରିଷ୍କାର ଯାଏ ଦେଖା ।
ମୁଖରେ ଫୁଟିଛି ବିଲୋଳ ହାସ ତା
ଦେବଶିଶୁ ସମ ଦିଶେ,
ସେ ଦୃଶ୍ୟକୁ ଦେଖି ଶିବେଇ ସାନ୍ତରା
ସ୍ତବ୍ଧ ହୋଇଲେ ନିମିଷେ ।
ବଳିଆ କୁକୁର ଧର୍ମପଦେ ଦେଖି
ସରାଗରେ ଯାଏ ଧାଇଁ,
ଦୁଃଖିନୀ ଜନନୀ 'ଧନ' ବୋଲି କହି
କର ପ୍ରସାରି ଚଳଇ ।
ପଛେ ପଛେ ବୃଦ୍ଧ ଧାଏଁ ଖରତରେ
ଜ୍ଞାନ କିବା ନାହିଁ ଆଉ,
ସାନ୍ତରା ଦେଖନ୍ତି ପାହାଡ଼ ପରାୟେ
ମାଡ଼ି ଆସେ ଏକ ଢେଉ ।
ଢେଉ ଭାଙ୍ଗିଗଲା ଲୁଚିଗଲା କାହିଁ
ସେ ତିନି ମରଶରୀର,
ଶିବେଇ ସାନ୍ତରା ବେନି ନୟନରୁ

ଝରୁଛି ଲୋତକ ଧାର ।
"ଧନ୍ୟ ଧନ୍ୟ ଶିଳ୍ପୀ    ଧନ୍ୟ ଗୋ ଜନନୀ
ମୋ ପ୍ରାଣ ଆଜି ସାର୍ଥକ,
'ଧର୍ମ' ପ୍ରଭାବରେ    ସତ୍ୟ ଘଟନାର
ହେଲି ମୁଁ ଆବିଷ୍କାରକ ।"
ଉତ୍କଳ ନରେଶ    ନରସିଂହ ଦେବ
ମନ୍ତ୍ରଣାକକ୍ଷରେ ବସି,
ଅପେକ୍ଷା କରନ୍ତି    ଶିବେଇ ସାନ୍ତରା
କି ସମ୍ବାଦ ଦେବେ ଆସି ।
କନକ ଥାଳିରେ    ପାଟ ଉତ୍ତରୀୟ
ତଳେ ତାଳପତ୍ର ପୋଥି,
କହନ୍ତି, "ଭୋ ଛାମୁ!  ଗ୍ରହଣ କରନ୍ତୁ
ମୋର ଏ ତଦନ୍ତ ନଥି ।
ଅଶ୍ରୁତପୂର୍ବ ଏ    ତଦନ୍ତ କାହାଣୀ
ପୁଣ୍ୟ ଅର୍କତୀର୍ଥ କଥା,
ଏ କାହାଣୀ ତଳେ    ଲୁଚି ରହିଅଛି
ବାରଶ' ବଢ଼େଇ ମଥା ।
ଅର୍କକ୍ଷେତ୍ର ଆଜି    ପବିତ୍ର ହୋଇଛି
ବୀର ଧର୍ମପଦ ପାଇଁ,
ଯେ ଶିଳ୍ପୀ ମନ୍ଦିରେ    ଶେଷ ସ୍ପର୍ଶ ଦେଲା
ସେ ଶିଳ୍ପୀ ତ ଆଉ ନାହିଁ ।"
ଚମକି ଉଠିଲେ    ବୀର ଗଜପତି
ଶୁଣି ଏହି ଦୁଃସମ୍ବାଦ,
ତାଙ୍କରି ଶାସନ-    କାଳେ ଘଟିଗଲା
ଏତେ ବଡ଼ ପରମାଦ ।
ବୁଝାଇ କହନ୍ତି,    ଶିବେଇ ସାନ୍ତରା
ଶିଳ୍ପୀ ଧର୍ମପଦ କଥା,

"ଶିଳ୍ପୀକୁଳ ମାନ ରଖିବାକୁ ଯାଇ
କରିଛି ସେ ଆତ୍ମହତ୍ୟା ।
ଧର୍ମପଦ ଆତ୍ମ- ଦାନ ମଧ୍ୟେ ଅଛି
ଯେ ଗୁଢ଼ ରହସ୍ୟମାଦ,
ରହିଥାଉ ସଦା ରହସ୍ୟ ହୋଇ ସେ
କରୁଛି ମୁଁ ନିବେଦନ ।
ଶିଳ୍ପୀ ଶେଷଇଛା ପୂର୍ଣ୍ଣ ହେଲେ ତା'ର
ହେବ ଯୋଗ୍ୟ ପୁରସ୍କାର,
ଏ ଘଟନା ଲୋକ- ଲୋଚନେ ନ ଆସୁ
ରହିଥାଉ ଏ ପ୍ରକାର ।
'ଗୋପନ-ପେଟିକା ଖୋଲିଦେବ ଦିନେ
ସମୟ, ତା ବେଳ ଜାଣି,
ସତ୍ୟ ଯାହା, ତାହା ଲୁଚିବନି କେବେ
ଯେତେ ଲୁଚାଇଲେ ପୁଣି ।'
ଛାମୁଙ୍କ ପାଖରେ ରହିବ ଏ ପୋଥି
ଉତ୍ତର ପୁରୁଷ ପାଇଁ,
ଛାମୁ ଯାହା ଆଜି ଜାଣିଲେ ସେ କଥା
ଆନେ ଜଣାଇବେ ନାହିଁ ।
'କୋଣାର୍କ ମନ୍ଦିର' 'ନରସିଂହ' ନାମ
ରହିବ ଅମରାକ୍ଷରେ,
ଉତ୍ତର ପୁରୁଷେ 'ଧର୍ମପଦ' ନାମ
ଯୋଡ଼ିବେ ତାହା ସଙ୍ଗରେ ।"
ଶିବେଇ ସାନ୍ତରା ପୋଥିରେ ଲେଖିଲେ
ଦେ ପୋଥି ହେଲା ସାଇତା,
କାଳକ୍ରମେ ଲୋକ- ଲୋଚନେ ଆସିଲା
ସେ ଅମର ଶିଳ୍ପୀ ଗାଥା ।



('ଅମର ଶିଳ୍ପୀ' କାବ୍ୟର ସଂପାଦିତ ଅଂଶ)

# କୋଣାର୍କ

ନରହରି ମିଶ୍ର

ହେ କଳା ଭାସ୍କର୍ଯ୍ୟର ଲଗ୍ନ ଶିଳାସ୍ତୂପ
ସ୍ମୃତି ଓ ସ୍ୱପ୍ନର ମନ୍ଦିର, କୋଣାର୍କ !
କୋଣାର୍କ !
ଘେନାକର ଏ ସୁପ୍ତଜାତିର
ପ୍ରୀତି ଅର୍ଘ୍ୟ, ସହସ୍ର ପ୍ରଣାମ ।
ତୁମେ ତ ଗାଉଛ ଆଜି
ଉତ୍କଳର ଅତୀତ ଗୌରବ
ବିରହର ଅନ୍ତିମ କାହାଣୀ
ତୁମେ ତ ସାଜିଛ ଆଜି
ସ୍ଥାପତ୍ୟର ମୂକ ସାକ୍ଷୀ
ପାଷାଣର ଅଶ୍ଳୀଳ ଆଲେଖ୍ୟ
ତେବେ ତୁମ ଦେହେ ହଜିଯାଏ କିଆଁ
ସତ୍ୟ-ନ୍ୟାୟ-ଧର୍ମର ପ୍ରତୀକ ?

କହିକି ପାରିବ ତୁମେ, କ'ଣ ପାଇଁ
ତୁମ ଦେହେ ମରିଯାଏ ଆଜି
ବାରଶ' ବଢ଼େଇର ତପ୍ତସ୍ୱେଦବିନ୍ଦୁ
ଶିବେଇ ସାନ୍ତରାର ଖଡ୍‌ଗ ବାହୁବଳ
ଲାଙ୍ଗୁଳା ନରସିଂହଙ୍କର ଅର୍ଜିଥିବା କୀର୍ତ୍ତି
ଏବଂ ବୀର ଧର୍ମପଦର ସ୍ୱପ୍ନିଳ ସକାଳ ?
ଚିତ୍ରିତ ଆକାଶତଳେ ତୁମ ଭଗ୍ନ ଦେହ

ଆହା କେଡ଼େ ବିଦୀର୍ଣ୍ଣ-ବିବର୍ଣ୍ଣ
ଖଣ୍ଡଖଣ୍ଡ ହୋଇ ଖସିପଡ଼େ ଶିଳା
ହତାଶାର ଚନ୍ଦ୍ରଭାଗା କୂଳେ
କଳାର ପିତୁଳା ଗାଏ ବେସୁରା ରାଗିଣୀ
ଦେଖି ଅବା ତୁମ ଶୁଷ୍କ ମୂର୍ଚ୍ଛିତ ଯୌବନ !

ସହସ୍ର ଶିଳ୍ପୀଙ୍କର ତତଲା ଲୁହରେ
ପାଇଥିଲ ତୁମେ ଦିନେ ପ୍ରାଣ
ବୁଭୁକ୍ଷୁ କଙ୍କାଳର ଆର୍ତ୍ତ ଚିତ୍କାରରେ
ଶୁଖିଥିଲା ପାଦତଳ ଫେନିଳ ସାଗର
ଯନ୍ତ୍ରଣାର ଜତୁଗୃହେ ଜଳିଥିଲା
ସ୍ୱପ୍ନସବୁ ମୃତ ଆତ୍ମାଙ୍କର
ସେପାଇଁକି ଶାପଗ୍ରସ୍ତ ହୋଇ
ଭୋଗୁଅଛ ଶେଷ ପରିଣାମ !

ମନର କୋହରେ ଆଜି ବାଜି ଉଠେ
କରୁଣର ବ୍ୟର୍ଥ ଶଙ୍ଖ ଧ୍ୱନି
ଅନ୍ତରାତ୍ମା କରୁଛି ବିଳାପ
ଦେଖି ତୁମ ଜୀର୍ଣ୍ଣ-ଶୀର୍ଣ୍ଣରୂପ
ତୁମର ଦାୟାଦ କ'ଣ ନିଷ୍କ୍ରିୟ ପୁରୁଷ
ଯୁ ନାହିଁ ତୁମ ଦେହେ ବୋଳିବାକୁ
ମୁଠାଏ ବାଲି ଓ ସିମେଣ୍ଟ
ନୀରବ ଦର୍ଶକ ସାଜି ଦେଖୁଛନ୍ତି ଖାଲି
ତୁମ ଅବଶେଷ ।



# ଶବ୍ଦ କୋଣାର୍କ

ବିମଳ ଜେନା

ତୋଳିବାକୁ ଶବ୍ଦରେ ସୂର୍ଯ୍ୟ ମନ୍ଦିର
କୋଣାର୍କ ଗଢ଼ିବା ପାଇଁ କବିତାରେ
ହୃଦୟରେ ହାତୁଡ଼ି ମାରିବା ପାଇଁ
ପଡ଼ିଥାଏ ବାରମ୍ବାର ନିଃଶବ୍ଦରେ ।
ନିଖାରିବା ପାଇଁ ହୁଏ ନିରବରେ
ନିଃଶ୍ୱାସକୁ ନିହାଣ ମୁନରେ ।
ତେବେ ଯାଇ ତୋଳିହୁଏ ଶିହରଣ
ଶିଳା ଏବଂ ଶବ୍ଦର ସ୍ନାୟୁରେ ।
ବର୍ଜନ କରି ପାରିଲେ ବାର ବର୍ଷ
ସମ୍ଭୋଗର ସୁଖ
ତେବେ ଯାଇ ଆଙ୍କିହୁଏ
ସମ୍ଭୋଗର ଦୃଶ୍ୟ
ଶିଳା ଓ ଶବ୍ଦରେ ।
କେତେବେଳେ ପବନ-ପାଲିଙ୍କି ପରେ
କେବେ ପୁଣି ଶୂନ୍ୟ ସବାରୀରେ
ଶବ୍ଦ ଆସେ ଚନ୍ଦ୍ରଭାଗା ବାଲୁକା ଶେଯରେ
ନିଛାଟିଆ ଜହ୍ନ ଆଲୁଅରେ
କେତେବେଳେ ସମ୍ରାଟ ଓ
କେତେବେଳେ ସୁନ୍ଦରୀ ବେଶରେ ।
ଶବ୍ଦ ବାନ୍ଧି ଦେଇ ପାରେ

କୋଣାର୍କର ରଙ୍ଗନଟୀ ପାଦରେ ଘୁଙ୍ଗୁର
ଶବ୍ଦ ହିଁ ପିନ୍ଧେଇ ପାରେ
କୋଣାର୍କର କୁଳବଧୂ ମଥାରେ ସିନ୍ଦୂର ।
କୋଣାର୍କର ସବୁ ତନ୍ୱୀ ସବୁ ନିତମ୍ବିନୀ
ବିବସ୍ତ୍ର ହୋଇଯାଆନ୍ତି ବାରମ୍ବାର
ଗୋଟିଏ ଶବ୍ଦରେ ।

ପାଲଟି ଯାଆନ୍ତି ପୁଣି ତପସ୍ୱିନୀ
ସେଇ ଶବ୍ଦଟିରେ ।
ପଥରକୁ ଅହଲ୍ୟା କରିବା ପାଇଁ
ଖାଲି ଯାହା ଶ୍ୟାମଳ ସ୍ପର୍ଶଟେ ଲୋଡ଼ା
ରାମଚନ୍ଦ୍ରଙ୍କର ।
ସେଇ ଶିଳ୍ପୀ ସେଇ କବି ସେଇ ହିଁ ଈଶ୍ୱର ।
ମୁଁ ତ କେବେ କାକୁସ୍ଥ ଓ କେବେ କାମାସକ୍ତ
କେବେ ରିକ୍ତ କେବେ ବି ରକ୍ତାକ୍ତ ।
କେମିତି ବା କବିତାରେ ଗଢ଼ିବି କୋଣାର୍କ !
ଖାଲି ଯାହା ଝାସ ଦେଇପାରେ
ଧର୍ମପଦଟିଏ ହୋଇ ସମୁଦ୍ରରେ
ଶବ୍ଦ ସଂଧାନରେ ।



# କଳାମନ୍ଦିର୍

ତପନ କୁମାର ମାଝୀ

କଳା ମନ୍ଦିର ସେ କୋଣାର୍କ
ତା କଳା, କୀର୍ତ୍ତିକୁ ନେଇ
ଏ ମାଟିର ସମ୍ମାନ, ସ୍ୱାଭିମାନ
ଲମ୍ବା ଅତୀତ, ଇତିହାସର ଜୀବନ୍ତ ପ୍ରତୀକ
ଓଡ଼ିଆ ଜାତିର ଗର୍ବ ଗୌରବର 'ସପ୍ତାଶ୍ଚର୍ଯ୍ୟ'
ଅଭୁଲା ତା' କଳା କୃତି ଭାସ୍କର୍ଯ୍ୟ ।

ସାଗର ଶେଜରୁ ସୂର୍ଯ୍ୟ ଉଇଁଲେ
ଅର୍କକ୍ଷେତ୍ରେ ସେ ବିଞ୍ଚେ ମନଭୁଲାଣିଆ
ତା' ପହିଲି ଚୁମ୍ବନ ।
ତା' ବେଳାଭୂଇଁର ଝାଉଁବନ ଅଙ୍ଗନେ ନିତି
ସମୀର ଛିଞ୍ଚେ ଶୀତଳ ଚନ୍ଦନ ।
ବାରଶହ ବଢ଼େଇ ମଗ୍ନମଉନ
ନିହାଣ ମୁନରୁ ଜନ୍ମ ଦେଇଚି
ପ୍ରତିଟି ହୃଦୟେ ଆକାଶସ୍ପର୍ଶୀ
ଅସୁମାରୀ ଉଚ୍ଛୁଳା ତା' ପ୍ରୀତିର କଂପନ ଉଚ୍ଛ୍ୱାସ ।
କାଳଜୟୀ ସେ କାଳର ବକ୍ଷ ବିଦାରୀ
କଳା ବୋଲି ବୋଲି କଳା କୀର୍ତ୍ତିରେ ସେ ପରା
କଳାପାଡ଼ର ଭଙ୍ଗା କଳା ମନ୍ଦିର ।

ଅଉଣା, ବାଲେଶ୍ୱର



# ଧରମା

ରମାକାନ୍ତ ବାନାର୍ଜୀ

ଅତୀତର ମୂକଚିତ୍ର ଅସ୍ପଷ୍ଟ ସାଗର
ଜୀବନର ଗତିପଥ, ଯେମିତି କି
ସୂର୍ଯ୍ୟଚକ୍ର, ଭଗ୍ନ ମୁଖଶାଳା ଆଉ
ଜୀର୍ଣ୍ଣ ମନ୍ଦିର,
ବାଲିସ୍ତୂପ ପୁଣି ବିଖଣ୍ଡିତ ପାଷାଣ
ନିର୍ଜନ ବାଲୁକା ଭୂମି - ଆସୁରିକ ଦିଗନ୍ତ ପବନ ।।

ମୁଁ ସିନା ପଳାୟନପନ୍ଥୀ
ଦେଖୁଚି ମୁଁ ମୋହରି ଅତୀତ
ମୁଁ ସିନା କାପୁରୁଷ ପାରୁନାହିଁ ବଞ୍ଚି
ମୋହରି ମନ୍ଦିରେ ସିନା ବାଜୁନାହିଁ କେବେ
ପ୍ରେମ-ସୁଧା-ମଧୁର-ସଙ୍ଗୀତ
ମୋ ହୃଦୟେ ସିନା ଉଠୁନାହିଁ କେବେ
ବେଦନାର ଅସ୍ପଷ୍ଟ ଇଙ୍ଗିତ ।

ତଥାପି ମୁଁ ପାରୁନାହିଁ ଦେଖି
ସତ୍ୟ ସେହି ଜୀବନର
ପ୍ରତିଷ୍ଠିତ ଶିଳା ଗାତ୍ରେ
ଯୁଗ୍ମ ପ୍ରତିମା ମଧ୍ୟେ
ଯୌବନର ଉନ୍ମାଦନା

ଆନମନା କରିଦିଏ ଉଦାସିଆ ଆଖି ।
ବିଖଣ୍ଡିତ ବାଲୁକା ପ୍ରାନ୍ତର
ଜର୍ଜରିତ ଜୀବନର ପଥ
ମୁଖରିତ ବେଳାଭୂମି
ଭଙ୍ଗା ମଧ୍ୟେ ବିଚ୍ଛୁରିତ ।

ଧର୍ମଭୀରୁ କର୍ମହୀନ ଅଳୀକ ଜୀବନ
ମୃତ୍ୟୁ ପାଶେ କରେ କିଆଁ ନୀରବ ରୋଦନ
ମୋ ଆଖିରେ ଭରିଆସେ ଅଶ୍ରୁ –
ମୁଁ କାନ୍ଦେ ଧ୍ୱଂସ ପାଇଁ –
ପ୍ରତିଷ୍ଠାର ନବ ଉନ୍ମୋଚନ ।

ମୁଁ ବୁଝୁଚି ବହୁ ଦୂରେ ଲୁଚିଛି ମୁଁ
କେଉଁ ଏକ ବକୁଳ ବନରେ
କେଉଁ ଗ୍ରୀଷ୍ମ ଆମ୍ବତୋଟା ମୂଳେ
ମୁଁ ଖୋଜୁଚି ବହୁଦୂରେ ଖୋଜୁଚି ମୁଁ
କେଉଁ ଏକ ସନ୍ଧ୍ୟାତାରା କୋଳେ ।

ଧରମା ମରିଚି ସିନା ରକ୍ତ ଦେଇ
ଲୁହ ସବୁ ଲୁଚେଇ ବୁକୁରେ
ଏ ଜାତିର ଇତିହାସ ପୃଷ୍ଠାରେ
ବିଞ୍ଚିଛି ସିନା ବାରଶ ବଢ଼େଇ ।

ଗଢ଼ିବାକୁ କେତେ କେତେ ସୂର୍ଯ୍ୟଚକ୍ର
ଯୋଡ଼ିବାକୁ ଜୀବନର ଅବୁଝା ଚରିତ୍ର
ଆଣିବାକୁ ଧର୍ମଭାବ ଅନ୍ତର ମଧ୍ୟରେ
ମନେହୁଏ ତେଣୁ ମିଳିଗଲା
ସବୁକିଛି ମିଳିଗଲା
ହଜିଥିବା ସତ୍ୟ ମୋର – ପ୍ରସ୍ତର ଦେହରେ ।

ଲିଭିଗଲା ସିନା ଏକ ନରସିଂହ ଦେବ
ଧୋଇଗଲା ସିନା ବିସ୍ମୟ ପ୍ରତିଭା
ଧର୍ମ କିନ୍ତୁ ଅପୂର୍ଣ୍ଣ ରହିଲା ।

ସାକ୍ଷୀ ସେଇ ଧର୍ମ ସୂର୍ଯ୍ୟଦେବ
ମୋ ଦେଉଳ ଗଢ଼ା ହେଲା ଯା'ର ଦୟା ନେଇ
ତା' ପ୍ରତିଜ୍ଞା ମଧ୍ୟେ ମିଶିଥିଲା
ରକ୍ତ ମୋର ଝାଳ ହେଇ
ମୁଁ କିନ୍ତୁ ମରିଗଲି
ସମୟର ଶିଉଳୀ ଉପରେ
ମୁଁ କିନ୍ତୁ ରହିଗଲି
ଜୀବନର ଚଲାପଥ ପରେ ।

ଲୁହାର ପାହାଚେ ଚଢ଼ି
ଯେତେ କଲେ ତାକୁ ପରିଷ୍କାର
ଲୁହର ଚାବୁକ ନେଇ
ଯେତେକଲେ ତାକୁ ତିରସ୍କାର
ନ ଲିଭିବ ମୋ ସମୟ
ନ ହସିବ ମୋ ହୃଦୟ
ଅବା, ନ ଶୁଖିବ ଢାଳିଥିବା ଝାଳମୋର ।

କେତେ ଇତିହାସ ମୋର ପ୍ରତିଷ୍ଠାକୁ ନେଇ
ପ୍ରଶଂସାର ପତ୍ର ସବୁ ରହେ ସ୍ଥିତି ହେଇ
ତେଣୁ ଆଜି ମୁଁ ହେଲି ମହାନ୍
ହେଲି ମୁହିଁ ଧର୍ମବୀର -
ଅହିଂସା ରହିଲା ମୋର ମନ୍ତ୍ର ହେଇ
ମୁଁ ସାଜିଲି ଶାନ୍ତିର ପ୍ରବର ।
ସବୁ ଧର୍ମ ଲୁଚିଗଲା

ସବୁ ମନ୍ତ୍ର ଲୀନ ହେଲା
ଯେତେସବୁ ଅଣବାହୁଡ଼ା ବଢ଼େଇ ମଧ୍ୟରେ
ଯେତେସବୁ ଅଜଣା ନାରୀର ପ୍ରତୀକ୍ଷା ସଙ୍ଗରେ ।

ଧରମା ମରିଛି ସିନା
ମରିଛି ବା ଦେହଟା ତାହାର
ଶୁଣାଯାଏ ବହୁଦୂରେ
ସାଗରର ଅସ୍ପଷ୍ଟ ଢେଉରେ
ବଞ୍ଚିଥିବା ଅଭୀପ୍ସା ତାହାର ।

ସେ କହୁଚି - କହୁଥିବ କାଳ କାଳ ଧରି
ସେ କରୁଚି - କରୁଥିବ ସତ୍ୟର ପ୍ରତିଷ୍ଠା ।
ପାଷାଣର ଉନ୍ମାଦନା
ଅତୀତର ସ୍ନେହସବୁ
ବର୍ତ୍ତମାନ ଜୀବନର
ଯାହାସବୁ ମାନବର ।



# କୋଣାର୍କର ଇତିହାସ

ମୋହନ କୁମାର ସ୍ୱାଇଁ

ଆମ ରାଜ୍ୟ ଓଡ଼ିଶାରେ ପୁରୀ ଏକ ସହର
ଚନ୍ଦ୍ରଭାଗା ତୀରେ ଉଭା କୋଣାରକ ମନ୍ଦିର ।
ସୂର୍ଯ୍ୟ ମନ୍ଦିର ନାମରେ ପୃଥିବୀରେ ବିଖ୍ୟାତ
ବହୁ ଲୋକ ଆସୁଥାନ୍ତି କରିବାକୁ ସାକ୍ଷାତ ।
କଳା ମୁଗୁନି ପଥରରେ ରଥଟିଏ ବନିଛି
ତା' ଉପରେ ମନ୍ଦିରର କାରୁକାର୍ଯ୍ୟ ହୋଇଛି ।
ଓଡ଼ିଶାର କଳା ଶିଳ୍ପ ପାଇଁ ଏହି ମନ୍ଦିର
ମୂକସାକ୍ଷୀ ହୋଇ ରହିଅଛି ଯୁଗ ଯୁଗର ।
ମହାରାଜା ଲାଙ୍ଗୁଳା ନରସିଂହ ଦେବଜୀ
ନିର୍ମାଣ କରାଇଥିଲେ ଦ୍ୱାଦଶ ଶତାବ୍ଦୀ ।
ଷୋଳ ବରଷରେ ତାହା ଥିଲା ତିଆରି ହୋଇ
ଦିନରାତି କାମକରି ବାରଶହ ବଢ଼େଇ ।
ମନ୍ଦିରଟେ କଲେ ସିନା ଚୂଳ ତା'ର ହେଲାନି
ସେଥିପାଇଁ ବଢ଼େଇଙ୍କ ମଧ୍ୟେ ହେଲା ଭାଳେଣି ।
ରାଜା କହିଗଲେ ଯେବେ ନ ଲାଗିବ ଚୂଳଟି
ରାତି ପାଇଲେ ସଭିଙ୍କ ମୁଣ୍ଡକଟା ହେବଟି ।
ବାର ବରଷର ପିଲା ନାମ ତା'ର ଧରମା
ସେ ମନ୍ଦିର ଚୂଳ ମାରି ରଖି ଯାଇଛି ତା ନା' ।
ଯେତେ ଦିନଯାଏ ଥିବ ଏ ମନ୍ଦିର ଭାସ୍କର୍ଯ୍ୟ
ବଞ୍ଚି ରହିଥିବ ଆମ ଚାରୁକଳା ପ୍ରାଚୁର୍ଯ୍ୟ ।



# କୋଣାର୍କ

ଶକୁନ୍ତଳା ମିଶ୍ର

ଯାଇଥିଲା ମୋର କୁନି ପୁଅ
ବୁଲିବାକୁ ତହିଁ ମୋର ସାଥେ,
ବିଶ୍ୱପ୍ରସିଦ୍ଧ କୋଣରକ ଯହିଁ
ଚାରୁକଳା ବୁକେ ଧରି ଉନ୍ନତ
ଗର୍ବେ ହୋଇଛି ଛିଡ଼ା ସତେ ।

'କି ଦେଖିଲୁ' ବୋଲି ପଚାରିଲେ
ଘରେ ଗୁରୁଜନେ
ନିର୍ବିକାରରେ ଉତ୍ତରିଲା ମୋ ଶିଶୁପୁତ୍ର
'ଭଙ୍ଗା ମନ୍ଦିର ଛଡ଼ା ସେଠି କିଛି
ନାହିଁ ଜେଜେ'
ଏତେ ଦିନ ପରେ କୋଣାର୍କ ଦେଖିବା
ଆଶା ମୋ ପୂରିଲା ବେଳେ
ଏ କି ହତାଶାର ଭାବ ଖେଳାଇଲା ପୁଅ
ଅଦ୍‌ଭୁତ ଦୁଃଖ ଭରିଲା ମରମ ତଳେ ।

ରକ୍ତ ନିଗାଡ଼ି ଜୀବନ ଉଜାଡ଼ି
ଗଢ଼ିଲା ଯେ କୋଣାରକ
ଭଗ୍ନ ମନ୍ଦିରେ ପରିଣତ କିଆଁ ?
ଶିଳ୍ପୀ ହାତର ଶ୍ରେଷ୍ଠ ନମୁନା

ତଥାପି ତା' ବୁକେ ଥୁଆ
ହେଲା ଏ କି ବିଡ଼ମ୍ବନା
ଭଙ୍ଗା ମନ୍ଦିର ବୋଲି ହେଲା ତା'ର ନାଁ ।
ପୁଣି କିଏ ଦେଖେ
ତୃଷିତ, କ୍ଷୁଧିତ, ଶୋଷିତ ଶିଳ୍ପୀ ତହିଁ
ଜୀବନ ଯୌବନ ଦେଲା ଯେ ବିତାଇ
ବାଲୁ ପ୍ରାନ୍ତରେ ରହି
ତା ମରମ ତଳ ବ୍ୟଥା ଏ ପରାଣ ଘାରେ
ସେଇ ବ୍ୟଥା ପୁଣି ଫୁଟି ଉଠେ ଆଖି ଜଳେ
ସେ ଜଳ ରୋଧଇ
ଦୃଷ୍ଟି ପଥକୁ ଶେଷେ
କୋଟିକମ୍ ଖୋଳା ଶିଳ୍ପୀର କୃତି
ପ୍ରସ୍ତର ପରି ଦିଶେ ।

ରାଜତନ୍ତ୍ରର ଶୋଷଣର ମୂକ ସାକ୍ଷୀ
ଭାବି କାହା ମନେ ଜାଗି ଉଠେ କ୍ରୋଧ
ଏଇ କୋଣାରକ ଲାଗି ।
ହେ ମୋର ଦରଦୀ ବନ୍ଧୁ !
ଥରେ ଝାଙ୍କି ଦେଖ ଶିଳ୍ପୀ ଅନ୍ତରେ
ଦେଇଛି ଯେ ସ୍ୱେଦ ବିନ୍ଦୁ ।

କଳାକାର ଚାହେଁ
ସବୁ ପଛେ ତା'ର ଯାଉ
କଳାଟି ତାହାର ଚିରଦିନ ଜୀଇଁ ରହୁ
ପ୍ରାଣ ବିନିମୟେ ଗଢ଼ି ଯେ କୀର୍ତ୍ତି
ଥରେ ତାକୁ ଦେଖ ସଖା
କାଳର କୋଳରେ ହଜଛି ଯେ ଶିଳ୍ପୀ
ଇତିହାସ ତା'ର ଲେଖା ।

ମଉନେ ନିହଁଣ ଚଳାଇଲେ ଯହିଁ
ପାଷାଣେ ଫୁଟିଲା ଭାଷା
ସେଇ ଭାଷା ଆଜି ବିଶ୍ୱ ଦରବାରେ
ହୋଇଛି ପ୍ରଥିତଯଶା
ଅନ୍ତରୁ ମୋର ଯେତେ ସ୍ନେହ ପ୍ରେମ
ଆଦର ତୋଳି
ଦେଇଛି ଶିଳ୍ପୀ ତୁମରି ତିଆରି
କଳାର ବେଦୀରେ ଢାଳି ।

ଧନ୍ୟ ହେ କଳାକାର
ଧନ୍ୟ ହୋଇଛି କୋଣାରକ ଆଜି
ଗର୍ବ ଏ ଓଡ଼ିଶାର ॥



# କୋଣାର୍କ

ଉମେଶ ଚନ୍ଦ୍ର ବାରିକ

କେଉଁ କୋଣାର୍କର
ଭାସ୍କର୍ଯ୍ୟ
ତୁମ ସ୍ନାନରତ
ଦେହପରି
ଏତେ କାରୁକାର୍ଯ୍ୟ
ବିମଣ୍ଡିତ ଯେ ?

ଯାହାକୁ ଗଢ଼ିବା ପାଇଁ
ବାରକୋଟି
ବିଶ୍ବ ମହାରଣାଙ୍କୁ ଲାଗିବ
ଅର୍ବୁଦ ଅର୍ବୁଦ ବର୍ଷ ।



# କୋଣାର୍କ

ବିଷ୍ଣୁପ୍ରିୟା ଷଡ଼ଙ୍ଗୀ

କୋଣାର୍କ ମୁଁ ଯେ ବକ୍ଷ ବିସ୍ତାରି ଉର୍ଦ୍ଧ୍ୱେ ରହିଛି ଚାହିଁ
କେତେ ଦୁର୍ବିପାକ କେତେ ଝଡ଼ଝଞ୍ଜା ମୋ ଦେହେ ଯାଇଛି ବହି ।।
ବାର ବର୍ଷର ବାଳୁତ ଧରମା କୋମଳ ସ୍ପର୍ଶ ପାଇ
ଅତୀତର କେଉଁ ଶୁଭ ମୁହୂର୍ତ୍ତେ ଯାଇଥିଲି ପୂର୍ଣ୍ଣ ହୋଇ ।।
କବନ୍ଧ ମୁଁ ଯେ ଦଧିନଉତି ଆଉ ମୋ ଶୀର୍ଷରେ ନାହିଁ
ବିଶୁ ମହାରଣା, ବାରଶ' ବଢ଼େଇ ଯାଇଛନ୍ତି ଗପ ହୋଇ ।।
ରାଜାର ଶାସନ କଠୋର ନିର୍ମମ ବାରଶ' ବଢ଼େଇ ପ୍ରାଣ
ଛାଡ଼ି ଘରଦ୍ୱାର ପିତାମାତା ପତ୍ନୀପୁତ୍ର କନ୍ୟା ସହୋଦର ।।
ପଥର ଦେହରେ ନିହାଣ ମୁନରେ ନିଜର ଜୀବନୀ ଲେଖେ
ନିଜ ଅଜାଣତେ ଶିଳାରେ ଶିଳ୍ପୀ ପ୍ରଣୟିନୀ ରୂପ ଆଙ୍କେ ।।
ବିରହେ ବିଧୁରା ପ୍ରିୟତମା ତା'ର ବନ୍ଧେ ଆଉଜି ଯାଇ
ଉଦାସୀ ନୟନେ ଅନାଇଁ ରହିଛି ତାର ପ୍ରିୟତମେ ଚାହିଁ ।।
ପାଦତଳେ ତା'ର ଲୋଟୁଛି ବାଳକ କାନ୍ଦୁଛି ପିତାଙ୍କୁ ଖୋଜି
ବୃଦ୍ଧପିତା ମାତା ଚାତକର ସମ ଚିନ୍ତାରେ ଅଛନ୍ତି ହଜି ।।
ଆଖି ଆଗେ ତା'ର ଦିଶିତ ଯାଉଛି ନିଜ ଘର ଗାଁ ମାଟି
ଝାପସା ଦିଶଇ ପାଷାଣ, ନିହାଣ ହାତ ତା ଯାଏ ଅଟକି ।।
ହାଇ ମାରୁମାରୁ ଅଳସ ଭାଙ୍ଗି ହାତକୁ ବଢ଼ାଇ ଦେଇ
ମଣିମା ଶ୍ରୀହସ୍ତ ସୁବାସିତ ପାନ ଶିଳ୍ପୀ ହାତେ ଦ୍ୟନ୍ତି ଥୋଇ ।।
ତନ୍ଦ୍ରାଯାଏ ଭାଜି ହସ୍ତରେ ଶକ୍ତ କରି ଧରଇ ନିହାଣ
ପାଷାଣ ଦେହରେ ନିହାଣ ବୁଲାଇ ଜଗାଇ ଦିଅଇ ପ୍ରାଣ ।।
ମୂକ ସାକ୍ଷୀ ଆଜି କୋଣାରକ ଗାଏ ବାରଶ ବଢ଼େଇ ଗାଥା
ଧର୍ମପଦର ଆତ୍ମବଳୀ ଆଉ ରାଜାଙ୍କ କୀର୍ତ୍ତି କଥା ।।



# କୋଣାର୍କ

ମଙ୍ଗୁଳି ଚରଣ ସାମଲ

କୋଣାର୍କ ଗୋ !
କହ କହ କେତେ କାଳ ରହିବ ମଉନ
କେତେ ଯୁଗ ଯୁଗାନ୍ତର
କରୁଥିବ ଅନାଗତ... ସାଗର ପ୍ରତୀକ୍ଷା ।
କହ କେବେ ଖୋଲିବ ତୋ ରୁଦ୍ଧ ଜୀର୍ଣ୍ଣଦ୍ୱାର
ପାଷାଣ ପ୍ରତିମା ଦେହେ
ହେବ କେବେ ପ୍ରାଣର ସଂଚାର,
ତମ ରୁଦ୍ଧ ଦ୍ୱାରେ ବସି ବିଶୁ ମହାରଣା
କହିଯାଏ ଯୁଗାନ୍ତର ଅସଂବୃତ କଥା
ପାନୁବୀଣା ତବ ସୁରା ସଂଗୀତ
ତୋ ନିର୍ଜନ ଝାଉଁବଣ କରେ ମର୍ମରିତ ।
ହେ ଅତୀତ କ୍ଷୁବ୍ଧ ପ୍ରେତପାଣ
ସ୍ମୃତିର ଶ୍ମଶାନ ।
ଏ ଜାତିର ଶେଷ ଅର୍ଘ୍ୟ
ଶେଷ ସ୍ୱପ୍ନ ନଗ୍ନଶିର ବହୁଶତକର
ଅବକ୍ଷୟୀ ଶିଳା ଦେହେ
ଶତ ପାଣ୍ଡୁଲିପି
ନିସ୍ତବ୍ଧ ପ୍ରାନ୍ତର,
ଧୂସର ଉସର,

ସୈକତ-ସଞ୍ଚିତ ଢେଉ
ସ୍ୱର୍ଣ୍ଣ ଇତିହାସ
ମାଟି ଚିରି ବହିଯାଏ ବାରଶହ ବଢ଼େଇଙ୍କ
ପ୍ରେତ ତପ୍ତ ଶ୍ୱାସ
କେଉଁ ଏକ ଦୂର ନକ୍ଷତ୍ରରେ
କଳ୍ପଲୋକ ଅନନ୍ତ ଅନ୍ଧାରେ
ଧରମା ଗଢୁଛି ଏକ ନୂତନ କୋଣାର୍କ
କ୍ଲାନ୍ତି ହୀନ ନିଃଶବ୍ଦ ରାତିରେ,
ତିଥିହୀନ ବାଧିତ ବଳୟେ
କୋଣାର୍କ ଗୋ' - ତମ ଜୀର୍ଣ୍ଣ ମୁଖଶାଳା
କ୍ଷୟିତ ତନୁରେ
ନିତ୍ୟନବ ମୃତ୍ୟୁ ଘଣ୍ଟାବଜେ
ଏଜାତିର ମୃତ ପ୍ରାଣ
ବେଳେ ବେଳେ ଚେଇଁ ଉଠେ
ଝାଉଁ ବଣର ମର୍ମରିତ ଶବ୍ଦେ
ଆକାଶର ଉନ୍ମନା ସାରସ
କହିଯାଏ ଅତୀତର ଅନେକ କାହାଣୀ
ସୁକେଶୀ ଅନ୍ଧାର ତଳେ
ଶିଳା-ରୂପସୀଙ୍କ କମ୍ପିତ ଓଠରେ
ଫୁଟି ଉଠେ - ବିଡ଼ମ୍ବିତ ପ୍ରାଣର ପ୍ରତିଭା
ଆଉକିଛି ନିଶ୍ଚିହ୍ନ... ମଣିଷର ଭାଷା ।
ସେମାନଙ୍କ ପଦଚିହ୍ନ... ଦିଶେନାହିଁ ଆଉ
ଏ ଜାତି ବି ଖୋଜେ ତାଙ୍କୁ
ଶବ୍ଦହୀନ ପରିତ୍ୟକ୍ତ ସୈକତ ସମୁଦ୍ରେ
ନୈରାଶ୍ୟ ଓ ବ୍ୟର୍ଥତାର
ପ୍ରେମହୀନ / ପ୍ରୀତିହୀନ ଅପ୍ରତ୍ୟୟ ପଥେ



# ବନ୍ଦନା

ମନୀନ୍ଦ୍ରନାଥ ବୋଷ

ଶିଳାର ବିରାଟ କାବ୍ୟ, ହେ କୋଣାର୍କ ! କରେ ନମସ୍କାର
ବାରଶ ବଢ଼େଇ କୀର୍ତ୍ତି ରୂପ ପାଏ ଅଙ୍ଗେ ଚମତ୍କାର ।।
ଜଡ଼ ବୁକେ ପ୍ରାଣ ଥାପି ଜୀବନର ସବୁକିଛି ଦେଇ
ସଙ୍ଗୀତ ଯା' ରଚି ଗଲେ ଇତିହାସେ ପରିଚୟ ନାହିଁ ।।

ପାଷାଣ କବିତା ଏଇ କବି ପ୍ରାଣେ ଦେଲା କି ମୂର୍ଚ୍ଛନା
ଜୋଛନାରେ ଦେଖିଗଲେ ଗୋଟି ଗୋଟି ପ୍ରାଣର ବେଦନା ।।
ଗାଇ ଗଲେ ପ୍ରାଣ ଭରି, ଉଚ୍ଚସ୍ୱରେ ଦିଗ ପ୍ରକମ୍ପିତ
ଅପୂର୍ବ କଳ୍ପନା ମନେ ଜଣେ ଜଣେ କରି ଗଲେ ମୂର୍ତ୍ତ ।।

ରୂପର ନିବିଡ଼ ଲୀଳା ଲେଖିଗଲେ କଥା ଆଉ ଗାନେ
ଯୁଗେ ଯୁଗେ ବିଶ୍ୱବୁକେ ବାଜି ଉଠେ ସୁମଧୁର ତାନେ ।।
ତୁମେ ନାହଁ, ଅଛି କୀର୍ତ୍ତି ଜୀର୍ଣ୍ଣ କରେ କାଳ ଗ୍ରାସି ଗ୍ରାସି
ସକରୁଣ ବିଳାପର ଝରେ ଅଶ୍ରୁ ଏବେ ରାଶି ରାଶି ।।

ଅଶ୍ରୁସିକ୍ତ ନେତ୍ର କୋଳେ ଫୁଟି ଉଠେ ରୂପ ସଭିଙ୍କର
ବିହ୍ୱଳ, ଚକିତ ମନ, ହେ କଳ୍ପନା ଅତୀବ ସୁନ୍ଦର ।।



# ଧର୍ମପଦ

ପ୍ରଦୀପ ଷଡ଼ଙ୍ଗୀ

ବାବୁ ଧରମା ! ମନ ବୁଝେ
କୁଳ ଲୋକଙ୍କର, ସାଇ ଭାଇଙ୍କର
ଅମାନିଆ ନହୁଅ ତୁ ଜମା !
ସୂର୍ଯ୍ୟ ଉଇଁ ସକାଳ ହେଲେ
ଶେଷ କଥା ରାଜା ଜାଣିଗଲେ
ଶହ ଶହ ମୁଣ୍ଡ କାଟ ହେବ
ଏ କଥା କି ତୋତେ ଭଲ ହେବ ?
କୋଉଠୁ ଜାଣିଲୁ ଏତେ କଥା
କାହାଠୁ ଶିଖିଲୁ
ଖଟି ଖଟି ଜୀବନ ସରିଲା,
ମୁଣ୍ଡିମରା ହାତରେ ନୋହିଲା
ସାଙ୍ଗେ ସାଙ୍ଗେ ତୁ ପାରିଗଲୁ !
ବିଶୁ ଭାଇ ତ ଏତେ ଦିନ ଏଠି ଥିଲା
ଜହ୍ନ ରାତିରେ କେତେ ଖୋଜୁଥିଲା,
ରାତିସିନା ସରୁଥିଲା
ଆକାଶକୁ ଚାହିଁ ଚାହିଁ
ଘରକୁ ସେ କେବେ ଯାଇ ନାହିଁ,
କୁଳପାଠ କେମିତି ଜାଣିଲୁ
ବୁଢ଼ା ହୋଇ ଆମ ଦେଇ
ଯାହା ହେଲା ନାହିଁ !

ସବୁ ସରିଲା
ଅଳ୍ପ କାମକୁ ନାଁ ପଡ଼ିଲା ।
ଜାତିରେ ଲାଗିବ କଳଙ୍କ,
କାଳି ବୋଳିଦେଲୁ ବାରଶ ବଢ଼େଇ ମୁହଁରେ !
ବେଲାଳସେନ, ଅଭିମନ୍ୟୁଙ୍କୁ କ'ଣ ଜାଣିନୁ
ଏତେ ଦିନ ଶ୍ରମ ବୃଥା ଗଲା ?
ଲଜ୍ଜା ଦିଅନା ଆଉ ଲଜ୍ଜା ଦିଅନା
ପୋଡ଼ିଯିବ ଆମ ମୁହଁ
ତୋ ପରେ
ଡିଣ୍ଡିମ ପିଟାଇ ବରଂ ବଢ଼ାଇବୁ ଟେକ ।
ଫଟାଇ ବିଶୁର ଛାତି ପଚାରିବୁ
ଲୋଡ଼ା ଏକ ନା
ଏକାଧିକ ?
ଧରମା !
ଟୋକାଟାଏ ତୁ,
ଏଡ଼େ ତୋ ବହପ
ଲୁଚି ଯାଆ ରାଜାଙ୍କ ଦୃଷ୍ଟିରୁ
ଆମକୁ ଦେଇଦେ ପଛେ
ଜଗତର ପାପ ।



# କୋଣାର୍କେ

ବ୍ରଜମୋହନ ସାମଲ

ସେଦିନ
ମଧ୍ୟାହ୍ନେ କୋଣାର୍କର ଝାଉଁବଣେ
ପଢୁଥିଲି ଏ ମାଟିର ଇତିହାସ ପୃଷ୍ଠା,
ଦେଖୁଥିଲି ଏ ପୁଅର ଶିଳ୍ପ ଚାରୁକଳା;
ଯା' ବକ୍ଷରେ ଫୁଟିଥିଲା ଫଗୁଣର ଫୁଲ,
ଯା' ଦେହରେ ଜଳୁଥିଲା ସ୍ୱାର୍ଥ ଆଉ
ଅହମିକା ଝୁଲ !
ପଥର ଦେହରେ ତା'ର ଲାଗିଥିଲା
ବାରଶହ ବଢ଼େଇର ଛିଟା,
ସ୍ୱାର୍ଥପାଇଁ ନିଃସ୍ୱାର୍ଥର ଆତ୍ମବଳୀ
ଭୟ କାରାଗାରେ !
ନଗ୍ନବକ୍ଷୁ
ତା'ର କ୍ଷରୁଥିଲା ପୂତନାର କ୍ଷୀର;
ରହି ରହି କହୁଥିଲା...
'ଦେଇ ପାରିବତ ବନ୍ଧୁ
(ମୋର) ପ୍ରତାରିତ ମୂଲ ?'
ବର୍ବର ମଣିଷ ଖାଲି ଆଙ୍କୁଥିଲା
ଦେହେ ମୋର ପ୍ରଣୟ ପଲାଶ
ଯୌନ କ୍ରୀଡ଼ା- ବନ୍ଧ ଓ ଛନ୍ଦରେ !
(କିନ୍ତୁ)
ପଢ଼ିଥିଲା କି ସେ ଥରେ
ମୋ ମନର ଗୋପନ କଥାକୁ ?
...ଭାତ ପାଇଁ ।।

ରୁଚି ପାଇଁ
ମୋର ଆତ୍ମବଳୀ
ଧନ ଆଉ ପଦବୀ ନିକଟେ ।

ପାଷାଣ ପଦରୁ ଯା'ର ଶୁଭୁଥିଲା
ନର୍ତ୍ତକୀର ନୂପୁର ନିକ୍ୱଣ !
ମୁଦ୍ରାର ମନୋମୁଗ୍‌ଧ ଛନ୍ଦ !

କହୁଥିଲା କାନେ କାନେ ମୋର–
ଶୁଣ ହେ ବିଦେଶୀ !
ଖିଆଲି ମନର ମୁହିଁ ସୃଷ୍ଟି ଏ ସ୍ରଷ୍ଟାର;
ତିଳ ତିଳ ଜଳି ଜଳି ଜ୍ୱଳନ୍ତ ଅନଳେ,
ଢାଳି ଢାଳି ରୂପର କଳସୀ;
କାନ୍ଦୁଥିଲି ରାତ୍ରୀରେ ଗୁମୁରି !
ମୋ ରୂପର ଚାରିପାଖେ ଘେରିଥିବା
ପତଙ୍ଗର ଦଳ,
ନିଃଶେଷି ମୋ ସ୍ୱପ୍ନ ଓ ସ୍ୱାର୍ଥକୁ;
ଫିଙ୍ଗୁଥିଲେ ମୋ ଦେହକୁ ଘୃଣା ପେଣ୍ଡୁ
ସଭ୍ୟତାର ଖୋଳପା ଭିତରୁ !
ଝାଉଁବଣ ଭେଦକରି ଶୁଭୁଥିଲା
ଧରମାର ବାଣୀ–
କହୁଥିଲା ବାରବାର ମୋରେ
ଶୁଣିବକି ବନ୍ଧୁ !
ନିଜ ମାତା ଅଭିଳାଷ-ସୂର୍ଯ୍ୟ ପୂଜାପାଇଁ
ଗଢୁଥିଲା ରାଜା ଏହି ବିରାଟ ମନ୍ଦିର;
ଷୋଳବର୍ଷର ରାଜସ୍ୱ ଶୂନ୍ୟକରି
ରାଜ ଗନ୍ତାଘରୁ;
ବାରଶହ ବଢ଼େଇ ଆଉ
ଲକ୍ଷ ଲକ୍ଷ ପରଜା ରକତେ
ହୋଲି ଖେଳୁଥିଲା ରାଜା
ପଥର ଦେହରେ !

ଖିଆଲି ମନରେ
ପ୍ରଗତିର ରଥଚକ ଘୂରୁଥିଲା
ଅହୋରାତ୍ର ଘର୍ଘର ନାଦରେ;
ସେ ଶବ୍ଦରେ ଲୀନ ହେଲା
ଅନାହାରୀ ଶିଶୁର କ୍ରନ୍ଦନ
(ଆଉ)
ସ୍ୱାମୀଛଡ଼ା ନାରୀକଣ୍ଠ ଦୀନ ନିବେଦନ !

ସେ ଶବ୍ଦରେ ଲୀନ ହେଲା
ପୁତ୍ରଛଡ଼ା ଜନନୀ ବିକଳ...
ନିର୍ଯ୍ୟାତିତ ମଣିଷର କଥା !

ମନ୍ଦିର ନାଁରେ
ଶୋଷଣର ଖୋଲିଗଲା ମୁଖା !
ଅତ୍ୟାଚାରୀ ମଣିଷର
ବୁକୁଫଟା ଅସହ୍ୟ ଯନ୍ତ୍ରଣା !
ଖିଆଲି ମଣିଷ କିନ୍ତୁ ଶୋଇଥିଲା
ପ୍ରାସାଦର ବିଳାସୀ କକ୍ଷରେ !

ଶେଷେ...
ଉଜାଗର ରାତ୍ରୀର ସେ ଅନ୍ତିମ ପ୍ରହରୁ
ଖୋଲିଗଲା ମନ୍ଦିରର ଦ୍ୱାର
ପ୍ରଭାତର
ସୂର୍ଯ୍ୟୋଦୟେ
ରାଜମାତା ପ୍ରେତ ହସ୍ତୁ ଘେନିବାକୁ
...ଅର୍ଘ୍ୟ
ଧରମୁର ତତଲା ରକତେ !

# କୋଣାର୍କେ କାରୁଣ୍ୟ

ବସନ୍ତକୁମାରୀ ସାମନ୍ତ

ପାଦର ନୂପୁର ଥକିତ ଗଲାଣି,
ପାରେ ନାହିଁ ଆଉ ନାଚି,
ଅପେକ୍ଷାରେ ଜଡ଼ିସଡ଼ି ମୁଁ ଗଲିଣି,
ଯୁଗ ଯୁଗାନ୍ତରୁ ଏଠି ।
ତଥାପି ନୟନେ କାମନା ଅଞ୍ଜନ
ଆଜି ବି ଝଲସି ଉଠେ,
ଉଦ୍ଦାମ ଏଇ ଯଉବନ ମୋର
ପ୍ରୀତିର ଛନ୍ଦ ରଚେ ।

ମଉଳି ଯାଇନି ବକ୍ଷର ଶୋଭା,
ଝାଉଁଳିନି ଗଭାଫୁଲ,
ମୁକୁଳି ଆସିନି ବେଶ ପରିପାଟୀ
ମୋ କଟି ମେଖଳା ଯୋଡ଼ ।

କାମନା, ବାସନା, ଉତ୍କଣ୍ଠା ଭରି,
ଆଜି ବି ରହିଛି ଚାହିଁ,
କେତେ ଯେ ବସନ୍ତ ଲେଉଟି ଗଲେଣି
ତନୁ ତନିମାରେ ଚୁମ୍ବନ ଛାଇ, ଛାଇ ।

ଫେରିଆସ ବାରେ, ହେ ମୋର ଶିଳ୍ପୀ,
ଫେରି ଆସ, ଫେରି ଆସ,
ତୁମରି ବିହୁନେ, ଅନ୍ତରେ ଜାଗେ
ଶତ ବେଦନାର ତ୍ରାସ ।

### ୪୩୦ କବିତା  କୋଣାର୍କ

ଚନ୍ଦ୍ରମା କେତେ ଛାଇତ ଦେଇଛି,
ଚୁମ୍ବନ ବାର ବାର
ସ୍ପର୍ଶ କାତର ଅଙ୍ଗ ବଲ୍ଲରୀ
କମ୍ପନେ ଥର ଥର ।

କେତେ ବର୍ଷାର ବର୍ଷଣ ଘାତେ,
ଆର୍ଦ୍ର ଏ ଅଙ୍ଗବାସ,
ବଇଶାଖ ଝାଞ୍ଜି ତନୁରେ ଜଗାଏ
ସ୍ୱେଦ ବିନ୍ଦୁ ଶତ ଶତ ।

ଦୀର୍ଘ ବିରହାନଳେ,
ଜଳି ଜଳି କାହିଁ,
ବୟସ ତ ମୋର
ଗଡ଼ିଯାଇ ନାହିଁ ତିଳେ ।

ଫେରି ଆସ ବାରେ ହେ ମୋର ଶିଳ୍ପୀ
ଫେରି ଆସ ମୋର ପାଶେ,
ଅଙ୍ଗୁଳି ତୁମ ସଞ୍ଚରି ଯାଉ
ମୋ ତନୁର ଚଉପାଶେ ।

ଉଚ୍ଛୁଳାଇ ଦେଇ ବିରହ ବନ୍ୟା
ପୀରତି ନଦୀର ଶେଯେ
ଅପଲକ ନେତ୍ରେ ଚାହିଁ ରହିଥିବି,
ତୁମରି ନାୟିକା ମୁଁ ଯେ ।
ଅନ୍ତରୁ ଢାଳି ଅନ୍ତର ତୁମ
ଆତ୍ମ ଚେତନା ଧ୍ୟାନେ,
ତୋଳି ଭରି ଦିଅ,
ଅତୁଳ ସୁଷମା, ଏଇ ମୋର ତନୁ ମନେ ।

ଆଜି ବି ରହିଛି କାମନା ମୁଁ ନେଇ,
ଫେରିବ କି ଶିଳ୍ପୀ ମୋର,
ଉଚ୍ଛନ୍ନ ନିଶି ଗର୍ଭୁ ଶୁଭଇ,
ମୋ ପ୍ରିୟ ଦରଦୀ ସ୍ୱର ।

ମରିନି ମରିନି ହଜି ସେ ଯାଇନି
(ତା'ର) ଆତ୍ମ ଚେତନା ରହିଛି ଚେଇଁ,
ଫେରି ତ ଆସିବ ସେ ମୋର ଶିଳ୍ପୀ,
ତା' ପଥକୁ ମୁଁ ଯେ ରହିଛି ଚାହିଁ ।



# କୋଣାର୍କ

ମନୋରଞ୍ଜନ ସାହୁ

ଖଣ୍ଡ ଖଣ୍ଡ ଭାଙ୍ଗି
ହଜିଯାଇଛି ଅତୀତ
ଯାହା ବିସ୍ମୃତିର କରାଳ ଗର୍ଭରେ
କବଳିତ
ଯାହାକୁ ନେଇ
ପୃଥିବୀରେ ଆମେ ଏବେ
ସଂସ୍କୃତି ସଂପୂର୍ଣ୍ଣ ଭୂରି ଭୂରି ଗର୍ବିତ
ସେ
କୋଣାର୍କ ନୁହେଁ
ତା'ର
ମୁଖଶାଳା ।



# ଧର୍ମପଦ

ଦେବରାଜ ତ୍ରିପାଠୀ

କୁଳହ କୁହ ଧନ କିପାଇଁ ନୟନୁ
ଦରଦର ଲୁହ ଝରଇ ।
ଗଣ୍ଠିଧନ ମୋର କାହିଁକି କାନ୍ଦୁଛୁ,
ଜନନୀ ଆକୁଳେ ପୁଛଇ
ଅବଧାନ ତୋତେ ଦେଲେ କିରେ ଦଣ୍ଡ ?
ବାଟରେ ସାଙ୍ଗ କେ ମାଇଲା ?
ବାର ବରଷର ଅଲିଅଳ ପୁଅ
ନାଇଁ ନାଇଁ ମାଆ, କହିଲା ।
ଗୋଟାଳି ମୋହର ଗଡ଼ିଗଲା ଯହୁଁ
କହିଲି ପଡ଼ୋଶୀ ଭାଇରେ,
କହିଲା ସେ ରାଗେ ଅଣବାବୁ ପୁଅ
ମୁହିଁ ତୋ ଚାକର ନାଇଁରେ ।
ସତ କହ ମାଆ ବାପା ମୋର କାହିଁ
ରହିଛନ୍ତି ଏତେ ବରଷ ?
ଜନନୀ କହିଲେ ଶୁନି ହୁଅ ଧନ
ବୁଝାଇବି ତା'ର ସନ୍ଦେଶ ।
ଯେତେ ସରାଗରେ ପାଳିଛିରେ ଧନ
ଜାଣିନାହୁଁ ଦୁଃଖ ବେଦନା
କେଡ଼େ ସତୀ ସେହି ପୁଅର ମାଆଟି
ଦେଲା ମୋ ଧନରେ ଯାତନା ।

କୁଣ୍ଢାଇ କୋଳରେ ଧଇଲେ ଜନନୀ
ପୋଛିଦେଇ ମୁଖ ବସନେ ।
ତଥାପି ନୟନୁ ଲୁହ ଝରି ପଡ଼େ
ଅମାନିଆ ହୋଇ ସଘନେ ।
ତୁନି ହେଲା ପୁଅ ମାଆର ନୟନୁ
ଲୋତକ ନୋହିଲା ଥବିର,
ମୁଖ ଦିଶୁଥିଲା ଲାଲ ଟହ ଟହ
ଢ଼ାଳି ଦେଲେ ଯେହ୍ନେ ଅବିର ।
କୋଳେ ଧରି ପୁଏ ଭୁଞ୍ଜାଇଲେ ଭାତ
କହିଲେ ଫିଟାଇ କାହାଣୀ,
ଶୁଣୁଥିଲା କଥା ଜନନୀ ମୁଖରୁ
ଢାଳି ଆତୁରତା ଚାହାଣି ।
ବାର ବରଷରେ ଉଠାଇଲୁ ଆଜି
ମନରେ ମୋ ସୁପ୍ତକୋହକୁ,
ଝରାଇଲୁ ଆଜି ନୟନରୁ ମୋର
ଶୁଖିଥିଲା ଯେଉଁ ଲୁହକୁ ।
ଆମ ଓଡ଼ିଶାର ଚନ୍ଦ୍ରଭାଗା କୋଳେ
କୋଣାରକ ବୋଲି ଦେଉଳ,
ବଛା ବଛା ଶିଳ୍ପୀ ଯାଇ ଗଢୁଛନ୍ତି
ଜଗତେ ହେବ ସେ ଅତୁଳ ।
ଓଡ଼ିଶାର ରାଜା ନରସିଂହ ଦେବ
ଶିଳ୍ପ କଳାର ରସିକ
ଗଢ଼ାଉ ଅଛନ୍ତି ଅର୍କ ମନ୍ଦିର
ଶିଳ୍ପ କଳାରେ ଅଧିକ ।
ତୋହର ପିତାଙ୍କୁ ସାମନ୍ତ କରି ସେ
ଗଉରବେ ନେଲେ ଡକାଇ
ତାଙ୍କରି ଇଙ୍ଗିତେ ଗଢ଼ା ହେଉଅଛି
ମନ୍ଦିର ଶ୍ରମ ଲଗାଇ ।

ବାର ଶହ ଶିଳ୍ପୀ ବାରବର୍ଷ ଲାଗି
ପୂରଣ ନୋହିଛି ଦେଉଳ
ପୂରା ନ ହୋଇଲେ ପିତା ନ ଫେରିବେ
ସେଥିପାଇଁ ମନ ଆକୁଳ ।
ଗଲାବେଳେ ପିତା ତୁ ଥିଲୁ ଗରଭେ
ଦେଖି ନାହୁଁ ତେଣୁ ପିତାଙ୍କୁ
ତୋହର ବଦନ ଦେଖି ମୁଁ ପୋଛଇ
ନୟନର ଝର ଲୁହକୁ
ଶ୍ରଦ୍ଧାରେ ଉଡ଼ିଲା ଧରମାର ମନ
କହିଲା କୁହଗୋ ଜନନୀ ।
କଲ୍ୟାଣ କରତୁ ଯାଉଛି ଆଣିବି
ପିତାଙ୍କୁ ପାଉଲୋ ରଜନୀ
ଦେଖିବି ମୋହର ଜାତିର ଗୌରବ
କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର
ଦେଖିବି ଯାଇଲୋ ନୟନ ପୂରାଇ
ଓଡ଼ିଆର କୀର୍ତ୍ତି ସୁନ୍ଦର
ଏତେ ଦୂର ବାଟ କିପରି ଯିବୁରେ
ଚିହ୍ନିବୁ ପିତାଙ୍କୁ କିପରି
ନାହିଁ ମୁଁ କରିଚି କାହିଁକିରେ ଧନ
ସରଧା ଯଦିରେ ତୋହରି
ଘର କୁକୁରକୁ ସାଥିରେ ନିଅରେ
ଝୁରୁଛି ବହୁତ ଦିନରୁ
ଏକୁଟିଆ ଧନ ନ ଯିବୁ କୁଆଡ଼େ
ବଳିଆକୁ ଛାଡ଼ି ପାଖରୁ
ପିତା ନ ଚିହ୍ନିଲେ ବଳିଆ କୁକୁର
ଚିହ୍ନାଇବ ତୋରେ ପିତାକୁ
କୋଳିଗଣ୍ଡେ ଧନ ଧରିଥା ମୁଣିରେ
ଭେଟିଲେ ପିତାଙ୍କୁ କି ଦେବୁ ?

ହୋଇଗଲା ବେଶ          ସଘନେ ଧରମା
ମାତା ପାଦ ଶିରେ ଲଗାଇ
କହିଲା ଯାଉଛି          ଦିଅ ଗୋ ମେଲାଣି
ଆଣିବି ପିତାଙ୍କୁ ଫେରାଇ
ମୋ ଆତ୍ମା ବ୍ୟାକୁଳ          ଧନରେ ତୁ ଆଜି
ବାର ବରଷରେ ଜାଣିଲୁ
ବାପା ଯେ ତୋହର          ଛାଡ଼ି ଯାଇଛନ୍ତି
ଏବେ ତୁତ ଛାଡ଼ି ଚାଲିଲୁ
ଏକା ମୁଁ ଗଣୁଛି          ରହିବୁନି ଧନ
ମାଆଙ୍କୁ ତୋହର କନ୍ଦାଇ
ଦିନ ମୁଁ ରହିଛି          ନେବି ମୁଁ ଘରକୁ
ବାପା ଓ ପୁଅଙ୍କୁ ବନ୍ଦାଇ
ତଳେ ନ ପକାଇ          ନୟନର ଲୁହ
ବସନରେ ମାତା ପୋଛଇ
ମନ ଉଚ୍ଚାଟରେ          ଚାଲିଲା ଧରମା
ଦୂର ପଥ ପାଖ ଲାଗଇ
ବହୁତ ଦିବସ          ଅତିକ୍ରମ କରି
ଧରମା ଜାଣିନି ସରମ
ଦେଖିଲା ଅଦୂରେ          ଉଭା ହୋଇଅଛି
ମନ୍ଦିରରେ ଶ୍ରେଷ୍ଠ ପରମ
ପଥଶ୍ରମ ତା'ର          ଭୁଲିଗଲା ଦେଖି
ଓଡ଼ିଆର କଳା ଝଲକ
ମୁଗ୍ଧ ହୋଇ ସେ ଯେ          ଦେଖୁଛି ମନ୍ଦିର
ପଡୁ ନାହିଁ ତା'ର ପଲକ
ପଥର ଦେହରେ          ସୂଚିମୁନ କାମ
ମନ୍ଦିର ପାଦରୁ ମଉଳି

ଅଦ୍‌ଭୁତ କଳାରେ ସଜ୍ଜିତ ହୋଇଛି
ଉପମା ନାହିଁ ତା' ସେଭଳି
ପଶୁ ପକ୍ଷୀ ବୃକ୍ଷ ଲତା ନର ନାରୀ
ଜୀବନ୍ତ ଦିଶନ୍ତି ସକଳେ
ଭାରତର ପ୍ରାଚୀ ଇତିହାସ ଗାଥା
ଖୋଦିତ ଅଦ୍‌ଭୁତ କୌଶଳେ ।
ଓଡ଼ିଆ ବୀରତ୍ୱ ଉତ୍କଳ ବାଣିଜ୍ୟ
ଉତ୍କଳର ରଣ ହୁଂକାର
ଯୁଗ ଯୁଗ ପାଇଁ ସାକ୍ଷୀ ହୋଇଗଲା
ଭାସ୍କର୍ଯ୍ୟ ପୂରିତ ମନ୍ଦିର
ଯେତେ ଦିନ ଯାଏଁ ଏ ଶିଳାରୁ ଖଣ୍ଡେ
କାହିଁ ହୋଇଥିଲେ ପତିତ
ଉତ୍କଳ ଭୂଇଁର ବୀର ସନ୍ତାନର
ଗାଉଥିବ ଯଶ ନିରତ
ଭାବିଲା ଧରମା ଥରେ ଯେ ଦେଖିଛି
ଏ ମନ୍ଦିର ନେତ୍ର ପୂରାଇ
ଧରଣୀରେ ତା'ର ଜନମ ସାର୍ଥକ
ଜୀବନ ସାର୍ଥକ ମଣଇ
ଦେଖିଲା ଧରମା ବାରଶହ ଶିଳ୍ପୀ
କରମରେ ବ୍ୟସ୍ତ ନିରବେ
ଜୀବନ୍ତ ମନ୍ଦିର ଗଢ଼ି ଦିଶୁଛନ୍ତି
ମୁମୂର୍ଷର ପରି ସରବେ
ବିସ୍ମୟ ହୋଇଲା ନ ଜାଣି ରହସ୍ୟ
ଶିଳ୍ପୀଏ ଯେ ଦିଗ ବିଜୟୀ
ନିରାଶ କିପାଇଁ ଦିଶନ୍ତି ସକଳେ
କେଉଁ ଭାବନାର ଆଶାୟୀ

ଯେ ଶିଳ୍ପୀ ନିଜର କଳା କଉଶଳେ
ପାଷାଣକୁ ଦେଲା ଜୀବନ
ସେ ଶିଳ୍ପୀ ମୁଖରୁ ନ ଝରି ଆଲୋକ
କିପାଇଁ ଦିଶୁଛି ମଳିନ
ବୁଝି ନ ପାରିଲା ଶିଶୁର ମାନସ
ବିରାଟ ରହସ୍ୟ ସହଜେ
ତଟିନୀ କିପରି ବୁଝିବ ସହଜେ
ସାଗର କିପାଇଁ ଗରଜେ
ଖୋଜିଲା ବହୁତ କାହିଁ ନ ପାଇଲା
ପୂଜ୍ୟ ପିତାଙ୍କର ନିର୍ଦ୍ଦେଶ
କୋଳି ବିକିବାର ଅଭିନୟ କଲା
ହୋଇ ଶେଷେ ଅତି ନିରାଶ
ବୃଦ୍ଧଏ ଦେଖିଲା ବିସ୍ମୟରେ ବୁଡ଼ି
କୋଳି ବିକେ କା'ର ନନ୍ଦନ
ତା କ୍ଷୁବ୍ଧ ଅନ୍ତସ୍ତରେ କ୍ଷଣିକ ଭିତରେ
ବୋଳିଦେଲା ସ୍ନେହ ଚନ୍ଦନ
ଦିଶୁଥିଲା ଶିଶୁ ଅବିକଳ ଝଳି
ପ୍ରତିବିମ୍ବ ପରି ବୃଦ୍ଧର
ମନେ ପଡ଼ିଗଲା ଘରକଥା ସବୁ
ବ୍ୟାକୁଳିତ ହେଲା ଅନ୍ତର
କହିଲା ଥିବ ମୋ ଏହି ବୟସର
ନନ୍ଦନ କି ଅବା ନନ୍ଦିନୀ
କୋଳେ ଘେନି ତା'ର ବୁଢ଼ୀ ଜନନୀ
ହେଉଥିବ ସ୍ନେହେ ବନ୍ଦିନୀ
ଏହିପରି କୋଳି ବାରିରେ ମୋ ଫଳେ
କହୁ ଝରେ ନେତ୍ରୁ ସଲିଳ

ହାତରୁ ନିହଣ      ମୁଗୁର ଖସିଲା
ହୋଇଗଲା କର ଶିଥିଳ ।
କୁକୁର ଲୋଟିଲା      ଶିଳ୍ପୀର ପାଦରେ
ପୂର୍ବ ସ୍ନେହାନୁବନ୍ଧନେ
ଜନକକୁ ତା'ର      ଚିହ୍ନିଲା ଧରମା
ପ୍ରଣିପାତ କଲା ଚରଣେ
ବକ୍ଷରେ ଲଗାଇ      ସିବେଇ ସାମନ୍ତ
ଚୁମ୍ବନ ଦେଲେ ସୁତରେ
କହିଲେ ମୃତ୍ୟୁର      ପୂର୍ବଛାୟା ଦେଖିଲି
ଧନକୁ ମୋ ଧନ୍ୟ ଭାଗ୍ୟରେ
ଧର୍ମପଦ ବୁଡ଼ି      ବିସ୍ମୟେ ପଚାରେ
ଜନକହେ କେଉଁ କାରଣେ
ବିଦ୍ଧ କଲ ମୋର      କୋମଳ ହୃଦକୁ
ନିଷ୍ଠୁର ନିରାଶ ବଚନେ
ଉତ୍କଳର ରାଜା      ନରସିଂହ ଦେବ
ମନୁଆ ସେ ବୀର ବିକ୍ରମ
ପୂର୍ଣ୍ଣ ଏ ମନ୍ଦିର      ବାର ବର୍ଷ ହେଲା
ହୋଇନାହିଁ ବୋଲି ବିଭ୍ରମ
ଦୁଇ ଦିନ ତଳେ      ଗରଜନ କରି
ଦେଇଛନ୍ତି କଡ଼ା ଆଦେଶ
ତିନି ଦିନ ଦେଲି      ଦେଉଳର ମୁଣ୍ଡି
ମାରିବାକୁ ହେବ ଅବଶ୍ୟ
ବାରଶହ ବଢ଼ା      ଓଡ଼ିଶାର ଶିଳ୍ପୀ
ବାରବର୍ଷ ନେଇ ସମୟ
ଏ ତିନି ଦିନରେ      ମୁଣ୍ଡି ନ ମରିଲେ
ହତ୍ୟା ମୁଁ କରିବି ନିଶ୍ଚୟ

ଇତିହାସ ପରେ  କଳଙ୍କ ରଟୁ ମୋ
ଅପବିତ୍ର ହେଉ ମନ୍ଦିର
ଯୁଗ ଯୁଗ ଧରି  ନରସିଂହ ନାମେ
ନିନ୍ଦା କରୁ ପଛେ ସଂସାର
ଦୁଇଟି ଦିବସ  ଶେଷ ହୋଇଗଲା
ଅଛି ମାତ୍ରକ ଏ ରଜନୀ
ପ୍ରଭାତ ତପନ  ଦେଖିବ ଆମର
ରକତେ ରଞ୍ଜିତ ଅବନୀ
ଦେହ ପାଇଁ ଆମ  ଦୁଃଖ ନାହିଁଲେଶ
ଘର ପାଇଁ ନାହିଁ ମମତା
ଆମରି ହାତରେ  ମୁଣ୍ଡି ନ ମରିଛି
ରହିଯିବ ସଦା ଏକଥା
ଧରମାର ମନ  ଉଦ୍‌ବିଗ୍ନ ହେଲା
ଚାହିଁଲା ଦେଉଳ ଚୂଡ଼ାରେ
ପିତାଙ୍କ ପାଖକୁ  ଗୋପନରେ ଯାଇ
ଚଢ଼ିଲା ଦେଉଳ ଶିଖରେ
ସଶ୍ରଦ୍ଧେ ଦେଖିଲା  ଦେଉଳ ଚୂଡ଼ାରୁ
କାରୁ କମନୀୟ ଚୁମ୍ବକ
ଶିଳ୍ପୀର ହସ୍ତର  ସଉଷ୍ଠବ ଘେନି
ଟେକିଅଛି ଗର୍ବେ ମସ୍ତକ
ଦେଖିଲା ମନ୍ଦିର  ସିଂହାସନ ପରେ
ଶୂନ୍ୟେ ଲୌହ ରୋଳ ଫଳକ
ଦୃଢ଼େ ରହିଅଛି  ଚତୁର୍ଦ୍ଦିଗୁ ତା'ର
ଟାଣି ଧରିଛନ୍ତି ଚୁମ୍ବକ
ଉଦୟ ରବିର  ପ୍ରଥମ କିରଣ
ପଡ଼ି ଜଳେ ତେଜେ ଫଳକ

ଜାଣିଲା ଧରମା କିପରି ରଖିବ
ଦେଉଳର ମୁଣ୍ଡି ଚୁମ୍ବକ
ଦେଉଳ ଚୂଡ଼ାରୁ ଭୂତଳେ ଦେଖିଲା
ତାରକାର କ୍ଷୀଣ ଆଲୋକେ
ବାରଶହ ଶିଳ୍ପୀ ପାଷାଣର
ଭୂମିରେ ଲୋଟନ୍ତି ଦୁଃଶୋକେ
ଶିଳ୍ପ ଶାସ୍ତ୍ରେ ତା'ର ଗଭୀର ପ୍ରବେଶ
ଥିବାରୁ ଭାବିଲା ମନରେ
ଦେଉଳର ଚୂଳ ବସାଇ ରଖିବି
ବଞ୍ଚାଇ ମୋ ଜାତି ଭାଇରେ
ଗଣିତ ଶାସ୍ତ୍ରରେ ହିସାବ କରିସେ
ବସାଇଲା ଦଧି ନଉତି
ଦେଉଳର ଚୂଳେ ପତକା ଉଡ଼ାଇ
ଓହ୍ଲାଇ ଆସିଲା ଝଟତି
ବିଭୀଷିକା ଭରା ଶିଳ୍ପୀଙ୍କ କାନରେ
ଜଣାଇଲା ଶୁଭ ସମ୍ବାଦ
ରାଜାଙ୍କ ଆଦେଶ ପୂର୍ଣ୍ଣ କରିଅଛି
ଆଉ ନାହିଁ କା'ର ବିଷାଦ
ଭୂତଳୁ ଉଠିଲେ ବାରଶହ ଶିଳ୍ପୀ
କହିଲେ ଦେବତା ଆସିଛ
ଆମରି ଜାତିର ପୁଅ ହୋଇ ଆମ
ଜାତିର ଇଜ୍ଜତ ରଖିଛ
ରାଜା ଯେବେ ଏହା ଜାଣିବେ ଆମକୁ
ରଖିବେ ନାହିଁ ତ ପ୍ରଭାତେ
ଏ ଧରଣୀ ନିଶ୍ଚେ ତିନ୍ତିବ ଆମର
ବାରଶହ ଶିଳ୍ପୀ ରକତେ

ପୁଅରେ ଦାୟୀ କି     ବାରଶହେ ଦାୟୀ
ପଚାରିବେ କାଲି ରାଜନ
ଯୁଗ ଯୁଗ ପାଇଁ     ରହିଯିବ କଥା
ବାରଶ ପାଇବୁ ଲାଞ୍ଛନ
ଧରମା କହିଲା     ଭୟ କରନାହିଁ
ଭୟ କର ନାହିଁ ସରବେ
ଚାଲି ଯାଉଅଛି     ଦିଅନ୍ତୁ ବିଦାୟ
ଆସିଥିଲି ଯେହ୍ନେ ନିରବେ
ଶିବେଇ ସାମନ୍ତ     ପାଲଟିଲା ଶିଳା
ମୁଖରେ ନାହିଁ ତା' ବଚନ
ଶକତି ନ ଥିଲା     ମନରେ ତାହାର
ହେଉଥିଲା ହୃଦ କମ୍ପନ ।
କହିଲା କୁହନା     ଦାରୁଣ ଏକଥା
ଅନ୍ତର ମୋହର ସହେନା
ଶେଷ ଜୀବନର     ଶେଷ ସମ୍ବଳ ତୁ
ଦାରୁଣ ବଚନ କୁହନା
ଧରମପଦରେ     କି ବୋଲି କହିବି
ଫେରିଯାଇ ଘରେ ମାତାରେ
ପୁଅ କାହିଁ ବୋଲି     ପଚାରିବ ଯେବେ
ସେନେହରେ ବଡ଼ ଆତୁରେ
ଶିଳ୍ପୀଏ କହିଲେ     ଶିଶୁର ହାତରେ
ବସିଅଛି ଦଧି ନଉତି
ଏକଥା ଜାଣିଲେ     ନୃପତି ଆମେତ
ନ ପାରିବା ଆଉ ବରତି
ଧରମା କହିଲା     ଏଇ କଥାସବୁ
ଗୁପତ ରଖିବ ସରବେ

କେହି ଜାଣିନାହିଁ ଲମ୍ଫ ଦେବି ମୁହିଁ
ଦେଉଳରୁ ନଦୀ ଗରଭେ
କୁଳ ଭାଇଙ୍କୁ ସେ ପ୍ରଣତି ଜଣାଇ
ଚଢ଼ିଲା ଦେଉଳ ଶିଖରେ
ଅପଲକ ନେତ୍ରେ ଦେଖୁଥିଲେ ସର୍ବେ
ବଚନ ନାହିଁ କା ମୁଖରେ
ଶିବେଇର ଦେହେ ପ୍ରାଣ କିଛି ନାହିଁ
କାହାକୁ ନ ହେଲା ବିଦିତ
ନୟନରୁ ତା'ର ଝର ଝର ହୋଇ
ଲୋତକ ହୁଅଇ ସ୍ରବିତ
ସକଳେ ଦେଖିଲେ ଦେଉଳର ଚୂଳେ
ଉଭା ହୋଇ ଏକ ମୂରତି
ନିମିଷ ଭିତରେ ଲିଭିଗଲା କାହିଁ
କେହି ନ ଜାଣିଲେ, ଝଟତି
ଚନ୍ଦ୍ରଭାଗା ଜଳେ ଶୁଭିଲା ଲମ୍ଫର
ଭୟଙ୍କର ଏକ ନିନାଦ
ବାରଶହ ଶିଳ୍ପୀ କର୍ଣ୍ଣ କୁହରକୁ
କରିଦେଲା ତାହା ସ୍ତବ୍ଧ
ଦେଖିଲେ ସକଳେ ଫେରାଇ ନୟନ
ସିବେଇର ନାହିଁ ଚେତନା
ଅନ୍ତର ଭିତରେ ଭୋଗୁଥିଲା ସେ ଯେ
ଭୀଷଣ ବିରହ ଯାତନା ।



# ନଷ୍ଟ କୋଣାର୍କ

ବିଜୟଲକ୍ଷ୍ମୀ ପରିଡ଼ା

ଝାଉଁବଣର ସ୍ୱର
ମଲାନଈର ଦେହ
କାହା ପାଇଁ
ଲେଖାଥିବା
ମୋ
ଶେଷ ଚିଠି,

ସବୁକିଛି
ଛିଟିକି ପଡ଼ିଥିବ
ସହର ମଝିରେ ।

ଅନେକ ବେଳେ
ଉତ୍ତର ଫେରେଇ
ହୁଏନା
ସବୁ ପ୍ରଶ୍ନକୁ ।

ଅନୁଭବ ବି
କରି ହୁଏନା
ସବୁ ଯନ୍ତ୍ରଣାକୁ ।

ସମ୍ପର୍କ ପାଇଁ
ରକ୍ତ ଜରୁରୀ ନୁହେଁ ।

ମୁହୂର୍ତ୍ତକର ଭଲପାଇବା
ଯଥେଷ୍ଟ ।
ତୁମେ ସବୁ
ନ ଚାହିଁଲେ ବି
ଆକାଶର ଛାଇ
ପାହାଡ଼ର ଦେହ
ସମୁଦ୍ରର ନୀରବତାରେ
ତଥାପି ଶୁଭିବ
ମୋ ସ୍ୱର ।

ହୁଏତ
ସେତେବେଳେ ତୁମେମାନେ
ଖୋଜି ପାର
ମୋ
କବିତାର ଶବ୍ଦ
ଶୂନ୍ୟ ପଡ଼ିଥିବା ମନ୍ଦିର ।

ମୁଁ
କିନ୍ତୁ
ଆଉ ନ ଥିବି
ସେ ଦିନ
ସାଉଁଟିବାକୁ
ତୁମ ହାହାକାର ।



# ଧର୍ମପଦ

କୁଞ୍ଜବିହାରୀ ମହାନ୍ତି

ଶଢର ପଥର ଖଣ୍ଡ ଯୋଡ଼ି
କାରିଗରୀ କୌଶଳରେ
ଠିଆ କରିଦିଅ
କାବ୍ୟ କବିତାର କୋଣାର୍କ,
ଆଶା ଓ ବିଶ୍ୱାସର
ଗୋପନୀୟ ଇଲାକାରେ
କବିର ସତ୍ତା
ଝୁଲୁଥିବ ଚିରକାଳ ।

ଯେଣିକି ଚାହିଁଲେ
ଦିଶି ଯାଉଛି
ଐଶ୍ୱର୍ଯ୍ୟର ଖରାବେଳ,
ବିଚରା ଶିଳ୍ପୀ !
ଲହୁଲୁହାଣ ହୋଇ
ନଇଁ ପଡ଼ିଛି ଦିନ ତମାମ
ତା' କଳାର ଦେଉଳ ତଳେ ।

ବିଶୁ ପରି ବାପଟିଏ ଖୋଜି
ଲାଭ ଆଉ କଣ ?
କିଏ ଆଦରର ପୁଅକୁ ତା'ର
ପୋତିଦେବ ଜାତିର
ଇମାରତ ତଳେ ?

ହସି ହସି ଝାଡ଼ି ଝୁଡ଼ି ହୋଇ
ମିଶିଯିବ
ନିଜର ହାତ ତିଆରି
ମୂର୍ତ୍ତି ଦେହରେ ?
ଧର୍ମପଦ ପରି
ଓଡ଼ିଆ ପୁଅଟେ କାଇଁ
ଯିଏ ବାଜି ଲଗେଇ ଦବ
ଜୀବନକୁ
ତା ପାରିବାର ପଣରେ,
ମୁଣ୍ଡିମାରି ଡେଇଁ ପଡ଼ିବ
ଅକାତକାତ ପାଣି କି ?
ଏବେ ତ ଅଧା ଗଢ଼ା ଦେଉଳ ସବୁ
ଆପେ ଆପେ ଭୁଶୁଡ଼ି ପଡୁଚି
ଗର୍ବ ଆଉ ଔଦ୍ଧତ୍ୟର ନଇବଢ଼ିରେ
କାହାର ବା ବେଳ ଅଛି
ଘୋଡ଼ା ଟାପୁରେ ଚିହ୍ନିତ
ଦେଉଳକୁ ତୋଳି ଆଣି
ଥାପିଦବ ଏ ଜାତିର
ଶରଧା ବାଲିରେ ?
ଜୀବନର ହସକାନ୍ଦ ସବୁ
କେବେଠୁ ବନ୍ଧା ପଡ଼ିଚି
ରାଜନୀତିର ଫାଇଲ ଭିତରେ,
ଧରମା ପରି ଆଉ ଗୋଟେ ପୁଅ କାଇଁ ଯେ ?
ଧରମା ପରି ଆଉ ଗୋଟେ ପୁଅ କାଇଁ ଯେ ?
କୋଣାର୍କ ଦେଉଳକୁ ମୁଣ୍ଡିମାରି
ତ୍ୟାଗର ସୂର୍ଯ୍ୟ କିରଣରେ
ଖରକି ଦବ ଓଡ଼ିଶାର ଅଗଣାରୁ ସବୁତକ ଅସନା ଅଳିଆ ?



# ଧର୍ମପଦ-ଆତ୍ମକଥା-ଆତ୍ମୋତ୍ସର୍ଗ

ପ୍ରମୋଦ କୁମାର ସାମଲ

ଦିନେ ଧର୍ମପଦ          ଚାଟଶାଳୁ ଫେରି
ପହଞ୍ଚିଲା ଯେବେ ଘରେ
ଆଖି ଛଳ ଛଳ          ହୃଦୟ ବିକଳ
କହଇ ମାଆ ଆଗରେ ।୧ ।
ଖଡ଼ି ଗଡ଼ିଗଲା          ପାହାଚ ତଳକୁ
ଆଣିଦିଅ ଭାଇ ମୋତେ
ଅଣ ବାବୁଆ ତୁ          ବାପ ଥିଲା ପୁଅ
ପରି କଥା କହୁ ସତେ ।୨ ।
କହ ଆଲୋ ମାଆ          କିଏ ମୋର ବାପା
ତାଙ୍କ ନାମ ନାହିଁ ଜାଣି,
ହେତୁ ହେଲା ଦିନୁ          ତାଙ୍କୁ ଦେଖୁନାହିଁ
ମନେ ମନେ ହୁଏ ଗୁଣି ।୩ ।
ପୁଅର ଆକୁଳ          ବ୍ୟାକୁଳ ଅନ୍ତର
ଦେଖି ମାଆ କୋହ ବଢ଼େ,
ଚୁମ୍ବି ପୁତ୍ର ମୁଖ          କୋଳକୁ ନେଇଣ
ଆଖିରୁ ଅଶ୍ରୁ ନିଗାଡ଼େ ।୪ ।
ମାଆର ଆଖିରୁ          ଲୋତକର ବାରି
ଧରମା ନ ପାରେ ସହି
ଗାମୁଛା କାନିରେ          ପୋଛିଣ ଆଦରେ
କାହିଁ ମାତା କାନ୍ଦୁ ତୁହି ।୫ ।

ପୁଅର ଆଦର ଆଗ୍ରହ ମଧୁର
ବଚନେ ହୋଇ ଆଶ୍ୱସ୍ତ
କହନ୍ତି ଧନରେ ତୋ ମୁଖ ଅନାଇ
ବଞ୍ଚିଅଛି ଏ ପର୍ଯ୍ୟନ୍ତ ।୬ ।
ମରିଯାଏ ମୁଁ ଲୋ କି ଆଦରେ ଲୁହ
ପୋଛି ଦିଅଇ ମୋ ଧନ
ତୋ ମୁଖକୁ ଚାହିଁ ବାରବର୍ଷ ହେଲା
ରଖିଛି ଧରି ଜୀବନ ।୭ ।
ବାର ବର୍ଷ ହେଲା ଯାଇଛନ୍ତି ବାପା
ଦେଉଳ ଗଢ଼ିବାପାଇଁ
ରାଜା ନରସିଂହ ଆଦେଶରେ ବାବୁ
ବାରଶ ବଢ଼େଇ ତହିଁ ।୮ ।
ଚନ୍ଦ୍ରଭାଗା ତୀର୍ଥେ ସାଗର ପନ୍ତାରେ
ଗଢ଼ା ଚାଲିଛି ଦେଉଳ
କହିଛନ୍ତି ରାଜା କଳା କଉଶଳେ
ବିଶ୍ୱେ ସେ ହେବ ଅତୁଳ ।୯ ।
ଶିବେଇ ସାନ୍ତରା ତଦାରଖ କାମ
ଚାଲିଅଛି ଅବିରତ
ହୁକୁମ ପାଇଣ ଉତ୍କଳର ଯେତେ
ଶିଳ୍ପୀ କୁଳର ମହତ ।୧୦ ।
ବାରଶ ବିନ୍ଧାଣୀ ବାଇଶି ବର୍ଷର
ଉତ୍କଳ ରାଜସ୍ୱତକ
ଧନ, ମନ, ଧ୍ୟାନ ହୁଏ କଷାକର୍ଷ
ରଖିବାକୁ କଳାଟେକ ।୧୧ ।
ସେଇ ଡାକରାରେ ଗଲେ ଯେ ତୋ ବାପା
ବାହୁଡ଼ି ନାହାନ୍ତି ଘରେ

ସେତେବେଳେ ତୁଇ        ଗର୍ଭେ ଚାରି ମାସ
ଜନ୍ମିଲୁ ଛ'ମାସ ପରେ ।୧୨ ।
କହୁଛନ୍ତି ଲୋକେ        ହେବ ସେ ଦେଉଳ
ଉତ୍କଳେ ଅନନ୍ୟ ଜାଣ
ଚୁମ୍ବକୀୟ ଶକ୍ତି        ବଳରେ ଦେବତା
ଝୁଲି ରହିବେଟି ପୁଣ ।୧୩ ।
ପୂର୍ବଦିଗେ ଦୁର୍ଗ        ରୂପେ ସେ ଦେଉଳ
ଦେଖାଇବ ତା'ର ଶକ୍ତି
ବିଦେଶ ଜାହାଜ        ଯାଇ ନ ପାରିବ
ଏଡ଼ି ତା' ଚୁମ୍ବକ ଶକ୍ତି ।୧୪ ।
ଧର୍ମଦେବତାଙ୍କ        ଦେଉଳରେ ବାପା
କରୁଛନ୍ତି ବୋଲି କାମ,
ଏକଥା ସୁମରି        ଶ୍ରଦ୍ଧା ସମ୍ମାନରେ
ଦେଲି ଧର୍ମପଦ ନାମ ।୧୫ ।
ଦେଖି ଚାହିଁ ତୀର୍ଥ        ଶୁଣିଛି କେବଳ
ସାତଥର ଯିବ ଗଙ୍ଗା
ଥରେ ଯେବେ ଯିବ        ଚନ୍ଦ୍ରଭାଗାକୁ
ମୁହଁ ପଡ଼ିଯିବ ରଙ୍ଗା ।୧୬ ।
ଯିବାଦିନୁ ବାପ        ପାଇନି ବାରତା
ଭଲ ମନ୍ଦ କିଛି କଥା,
ଆକାଶକୁ ଚାହିଁ        ଧର୍ମକୁ ଅନାଇ
ପୂଜେ ମୁଁ ଧର୍ମ ଦେବତା ।୧୭ ।
ଜାଳି ସଞ୍ଜବତୀ        ପୂଜଇ ମୁଁ ନିତି
ବୃନ୍ଦାବତୀଙ୍କ ଚରଣ
ରବିବାର ବ୍ରତ        ପାଳି ମୁଁ ପଶିଛି
ଧର୍ମ ଦେବତା ଶରଣ ।୧୮ ।

କହେ ପୁଅ ତହୁଁ ଯିବି ଚନ୍ଦ୍ରଭାଗା
କରିବି ବାପାଙ୍କୁ ଦେଖା,
ଜାଣିବି ତାଙ୍କର ରହଣିର ସ୍ଥାନ
ଆଣିବି ଶୁଭ ବାରତା ।୧୯ ।
କୋଳରେ ବସାଇ ବାଷ୍ପରୁଦ୍ଧ କଣ୍ଠେ
କହଇ ପୁଅକୁ ମାଆ,
ବାରି ବରକୋଳି ବଳିଆ କୁକୁର
ବାରବରଷ ଧରମ
ବିଭୁଙ୍କୁ ସୁମରି ମାତା ପାଦେ ନମି
ଚଳିଲା କୋଣାର୍କ ଧାମ ।୨୦ ।
ବହୁପଥ ଭ୍ରମି ଚଳଇ ଧରମା
କ୍ଳାନ୍ତି, ଶ୍ରାନ୍ତି ନ ଭାବଇ
ମନେନାହିଁ ଶଙ୍କା କେବଳ ଆଶଙ୍କା
ବାପାଙ୍କୁ ଭେଟିବା ପାଇଁ ।୨୧ ।
କାନିରେ ବାନ୍ଧିଛି ବାରି ବରକୋଳି
ବଳିଆ ସାଥୀ ସାରଥି
ପହଞ୍ଚିଲା ଯାଇ କୋଣାର୍କ ତୀର୍ଥରେ
ଅଛନ୍ତି ଯହିଁ ସ୍ଥପତି ।୨୨ ।
ପଚାରି ବୁଝିଲା ବିଶୁ ମହାରଣା
ଶିଳ୍ପୀକୁଳ ଶିରୋମଣି,
ମାତା ଠାରୁ ପିତା ନାମ ଶୁଣିଥିଲା
ଆନନ୍ଦ ହୋଇଲା ଶୁଣି ।୨୩ ।
ବସାରେ ପହଞ୍ଚି ନମି ପିତା ପାଦେ
ବାଢ଼େ ନିଜ ପରିଚୟ
ଏହି ସମୟରେ ଲାଙ୍ଗୁଳ ହଲାଇ
ବଳିଆ ହୁଏ ଅଥୟ ।୨୪ ।

କୁକୁର ଛୁଆଟି        ପାଳିଥିଲା ବିଶୁ
ସେ କେତେ ଦିନର କଥା
ପଶୁ ହୋଇଲେ ବି        ଭୁଲିନି ଆଦର
ବିଶ୍ୱସ୍ତତା, କୃତଜ୍ଞତା ।୨୫ ।
ବାରି ବରକୋଳି        ରସାଳ ବର୍ତ୍ତୁଳ
ବଡ଼ ସୁଆଦିଆ ସେତ
ଚାରିମାସ ଗର୍ଭ        ହୋଇଥିଲା ପତ୍ନୀ
ସ୍ମୃତି ହେଲା ଉଦ୍‌ଜୀବିତ ।୨୬ ।
ପୁଅ ଠାରେ ଦେଖି        ନିଜ ରୂପ ଗୁଣ
ଆଖିରୁ ଝରିଲା ଲୁହ,
କପାଳରେ ହାତ        ମାରିଣ କାନ୍ଦଇ
କାହିଁକି ଆସିଲୁ ପୁଅ ।୨୭ ।
ସବୁ ସରିଲାଣି        ଦଧି ନଉତିର
ଚୂଳି ମାରିପାରୁ ନାହିଁ,
ବାରଣ ବଢ଼େଇ        ମୁଣ୍ଡକାଟ ଜାଣ
ରାତି ଯେବେ ଯିବ ପାହି ।୨୮ ।
ନିଷ୍ଠୁର ଆଦେଶ        ନରସିଂହ ଦେବ
କରିଛନ୍ତି ଉଦ୍‌ଘୋଷଣା
ରଙ୍କୁଣୀ ଧନରେ        କୂଳ ଚନ୍ଦ୍ରମାରେ
ଶୁଣି ମୁଣ୍ଡ ହୁଏ ବଣା ।୨୯ ।
ବିନୟେ କହଇ        ବାର ବରଷର
କଳାକୁଳ ରତ୍ନମଣି
ଏଇଥି ପାଇଁକି        ଏପରି ଭାବନା
ଚିନ୍ତାତେଜ ମନୁପୁଣି । ୩୦ ।
ଥରେ ମାତ୍ର ମୋତେ        ଦିଅନ୍ତୁ ସୁଯୋଗ
ଆଶିଷ ପ୍ରେରଣା ଆଜ୍ଞା
ସାଧିବି ମୁଁ କାର୍ଯ୍ୟ        ନ ହୁଅ ଅଧର୍ଯ୍ୟ
ଧରମାର ଏ ପ୍ରତିଜ୍ଞା । ୩୧ ।

ସମସ୍ତ ଚରଣ ଧୂଳିକୁ ମୁଣ୍ଡରେ
ବିଭୂତି ପରାୟ ବୋଳି
ଧର୍ମ ଦେବତାଙ୍କୁ ଓଳଗି ହୋଇଣ
ମୁଗୁର ନିହାଣ ଟେକି । ୩୨ ।
ଚଢ଼ିଣ ଶିଖରେ କଳା କୌଶଳରେ
କଲା ଯେ ଚୂନା ସମ୍ପନ୍ନ
ବାରଶ ବଢ଼େଇ ଆଶ୍ଚର୍ଯ୍ୟ ହୋଇଲେ
ଦେଖି ତା କଳାର କର୍ମ । ୩୩ ।
ରାତି ନ ପାହୁଣୁ ପରିପୂର୍ଣ୍ଣ ହେଲା
ଦେଉଳର ଅଗ୍ର ଅଂଶ,
ବାରଶ ବଢ଼େଇ ଯାହା ନ ପାରିଲେ
ଧରମା କରିଲା ଶେଷ । ୩୪ ।
ଏହି କଥା ଯେବେ ପ୍ରଚାର ହୋଇବ
ରାତି ପାହିଲା ବେଳକୁ
ବାରଶ ବଢ଼େଇ ଅପାରଗ ପଣ
ଯିବ ରାଜାଙ୍କ କାନକୁ ।୩୫ ।
ସତକଥା କେବେ ଲୁଚି ରହିବନି
ରାଜା ରୁଷ୍ଟ ହେବେ ଜାଣ,
ବାରଶ ବଢ଼େଇ ମୁଣ୍ଡ କାଟ କଥା
ଅନ୍ୟଥା ନୋହିବ ପୁଣ ।୩୬ ।
ଚିନ୍ତା ଓ ବ୍ୟଥାରେ କଳାକାରଙ୍କର
ଆଖିକୁ ନ ଆସେ ନିଦ,
ପେଟେ ଭୋକ ଅବା କେଉଁଠୁ ଆସିବ
ମୃତ୍ୟୁ ଚିନ୍ତା ଦିଏ ଖେଦ ।୩୭ ।

ଏକାଠି ହୋଇଲେ		ବିଶୁ ପାଶେ ଯାଇ
କହିଲେ ବୁଝାଇ ତାକୁ
ବାରଶ ବଢ଼େଇ		ମୁଣ୍ଡରେ ଦାୟିନା
ପୁଅ ମୁଣ୍ଡ ରଖିବାକୁ ।୩୮ ।
ଭାବି ତୁମେ ଦେଖ		ବିଶୁ ମହାରଣା
କେଉଁଟା ଶ୍ରେୟ ଓ ପ୍ରେୟ
ପଞ୍ଚାକ୍ଷର ଜପି		ଅସ୍ମିତା ହରାଇ
ବିଶୁ ହୁଅଇ ଅଜୟ ।୩୯ ।
ବାରଶ ବଢ଼େଇ		ଜୀବନ ଜୀବିକା
ଆକୁଳ ବ୍ୟାକୁଳ ପ୍ରାଣ
ରାତି ପାହିଗଲେ		ଅସ୍ତମିତ ହେବ
ଏକଥା ଅଟେ ପ୍ରମାଣ ।୪୦ ।
ଏକର ଜୀବନ		ପାଇଁକି ଅନେକ
ଜୀନ ଲିଭିବ ଯହିଁ
ଏହା ଠାରୁ ବଳି		ଦୁଃଖଦ ଘଟଣା
କୁହ ପିତା ଅଛି କାହିଁ ।୪୧ ।
ଅସାର ସଂସାର		ଅନିତ୍ୟ ଜୀବନ
ଧନ, ଜନ, ଗୋପ, ଲକ୍ଷ୍ମୀ
ସବୁ ଚାଲିଯିବ		ତ୍ୟାଗ ହିଁ ରହିବ
କୀରତି ବୈରଖ ସାକ୍ଷୀ ।୪୨ ।
ଜଣର ସକାଶେ		ଗଣର ଜୀବନ
ଦେବାକୁ ନ ଦେବି ଛାଡ଼ି
ଯାଉଛି ମୁଁ ବାପା		ଦୁଃଖ କର ନାହିଁ
ଜୀବନ ଦେବି ଅଝାଡ଼ି ।୪୩ ।

ସାଗର ଗରଭେ ହୋଇଯିବି ଲୀନ
ସମସ୍ତଙ୍କ ସୁଖ ପାଇଁ
ଏହାଠାରୁ ବଳି ଭାଗ୍ୟବାନ କିଏ
ଏ ଜଗତେ ଅଛି କାହିଁ ।୪୪ ।
ଜନ୍ମ ହେଲେ ମୃତ୍ୟୁ ନିଶ୍ଚୟ ହୋଇବ
କେ ଆଗେ କେ ପଛେ ଯାଏ
ଧନ୍ୟ ତା ଜୀବନ ପର ପାଇଁ ପ୍ରାଣ
ଅକାତରେ ଯିଏ ଦିଏ ।୪୫ ।
ନାହିଁ ଧର୍ମପଦ ରହିଛି ସମ୍ପଦ
ତା କୀର୍ତ୍ତି ତା ତ୍ୟାଗ କଥା
ରଖି ଯାଇଛି ଯା, ଇତିହାସ ଘୋଷେ
ଅମର କୀରତି ଗାଥା ।୪୬ ।
ଧନ୍ୟତା ଜୀବନ ଅନ୍ୟ ପିତା ମାତା
ଶିଳ୍ପୀକୁଳର ସମ୍ପଦ
କଳା ଶିଖରୀର ଗୌରବ କେତନ
ନାମ ଯା'ର ଧର୍ମପଦ ।୪୭ ।



# କୋଣାର୍କ

ମଧୁସୂଦନ ସାହୁ

ଶୋଇଥାଅ ତମେ ଶୋଇଥାଅ
ସ୍ମୃତିର ପାହାଡ଼ ଭଳି
ରକ୍ତ ମାଂସର ସଉଧଟେ ସାଜି
ମରମର ଚିତା ଜାଳି ।
ଗାଉଥାଅ ତମେ ଗାଉଥାଅ
ଜୀବଂତ ମଣିଷ ପରି
ସ୍ୱରରେ ତମର ମୁଖରିତ
ପ୍ରୀତିର ଯମୁନା ବାରି ।
ଦେହରୁ ତମର ଲିଭିନାହିଁ
ତପସ୍ୟାର ବାରବର୍ଷ
ମନରେ ତମର ପ୍ରସ୍ଫୁଟିତ
ନିହାଣ ହାତୁଡ଼ି ସ୍ପର୍ଶ ।
ଜୀବନ୍ତ ହୃଦୟ ହଇଚଇ
ତମରି ଇଙ୍ଗିତ ପାଇ
କେଉଁଠାରେ ତମେ ଲୁଚିଅଛ
ହୋଇଯାଅ ମୁହାଁମୁହିଁ ।
ବାରଶ ବଢ଼େଇ ଜର୍ଜରିତ
ମରମରେ ନାହିଁ ଦୁଃଖ
କଳା କୀରତିର ସ୍ୱର୍ଗ ସାଜି
ବିରାଜିତ କୋଣାରକ ।

ରହିଥାଅ ତମେ ରହିଥାଅ
ଭଗ୍ନାଂଶର ମୁଖଶାଳା
ଅସ୍ତ ନ ହେଉ ସୂର୍ଯ୍ୟ ତମର
ଚୂର୍ଣ୍ଣ ନ ହେଉ କଳା ।
ଜାତି ନାହିଁ ଯା'ର ଧର୍ମନାହିଁ
ସଂସ୍କୃତିର ପୀଠ ସେଇ
ଉନ୍ମୁକ୍ତ ଯା'ର ପରମ୍ପରା
ମାନବ ଜାତିର ପାଇଁ ।
ସୁପ୍ତ ଓଡ଼ିଆ ଦେଖୁ ନୟନେ
ପୂରୁବ ପୁରୁଷ କୀର୍ତ୍ତି
ନିର୍ଲ୍ଲଜତା ଅଭିମାନ ମନେ
ସ୍ମରଣୁଛି ନିଜ ସ୍ମୃତି ।
ଉଠରେ ଉଠରେ ସୁପ୍ତ ଓଡ଼ିଆ
ନ କର ନରକେ ବାସ
ପର୍ଶିଦେ ତୋ'ର ସୁବର୍ଣ୍ଣ ଥାଳିଆ
ଫେରିଯାନ୍ତୁ ପରବାସ ।
ତୃପ୍ତିର କଳା ସ୍ମୃତିରେ ଜାଗୁ
ଲୋଡ଼ାନାହିଁ ପର୍ଯ୍ୟଟକ
ଅର୍କକ୍ଷେତ୍ରେ ବିରାଜିତ ଥାଅ
ଚିରଦିନ କୋଣାରକ ।



# ଧର୍ମପଦ

ନୃସିଂହପ୍ରସାଦ ମହାନ୍ତି

କବିରେ !
ମୁଁ ଆସିଛି
ପ୍ରଳୟର ଝଞ୍ଜା ହୋଇ ନୁହେଁ
ନୁହେଁ ମୁହିଁ ହଳାହଳ
ଆଗାମୀ ଧ୍ୱଂସର କାରଣ ।।

ମୁଁ ଆସିଛି
ଭେଟିବାକୁ ନୂଆ ଶତାବ୍ଦୀକୁ
ଘେନି ପ୍ରୀତି ଉପହାର
ସାଥିରେ ମୋ ଯୁଗ ବାର୍ତ୍ତା
ସୃଜିବାକୁ ନୂଆ ଯୁଗ
ହାତରେ ମୋ ଅମୋଘ ଆୟୁଧ ।।

ମୁଁ ଆସିନି
ପ୍ରଳୟର ବିଭୀଷିକା ସାଜି
ବରଂ ଶତଶତ ଜିହ୍ୱା ମୋର
ଜାଳି-ପୋଡ଼ି ଛାରଖାର କରିଦେବେ
ଏ ଶତାବ୍ଦୀର ଯେତକ ଦୁର୍ଗନ୍ଧ
ତାଣ୍ଡବ ନୃତ୍ୟରେ
ସୃଜିବାକୁ ସେ ବ୍ରହ୍ମ ପ୍ରଳୟ

ଯେତେ ଯେତେ ଅବସାଦ, ଗ୍ଲାନି
ଭ୍ରଷ୍ଟାଚାର, ଜାଲିଆତି ସବୁ ହେବ ଚୂନା
ଭାଙ୍ଗି ଯିବ ଶତାବ୍ଦୀର ଗର୍ବ ଅହଙ୍କାର ।।
ଅହେତୁକ ଭାବ ଓ ଭାବନା
ବନିବାକୁ ଏ ବିଶ୍ୱରେ ଦ୍ୱିତୀୟ ଈଶ୍ୱର ।
ହେଇ ଶୁଣ ଗତାୟୁ ଶତାବ୍ଦୀର
କରୁଣ ବିଳାପ
ଅନୁତାପ ଅଶ୍ରୁରେ ସଜଳ ।।

ଅହଂକାର ରାକ୍ଷସର ଉନ୍ମତ୍ତ ନୃତ୍ୟରେ
ପ୍ରଳୟର ଦୁନ୍ଦୁଭି ବାଜୁଛି
ଏ ଶତାବ୍ଦୀ ନିଜ ପାଇଁ
ନିଜେ କବର ଖୋଳୁଛି ।।

କବିରେ !
ଏ ବେଳରେ ମୁଁ ଆସିଛି
ଧର୍ମପଦ ସାଜି
ବୁଦ୍ଧ, ଗାନ୍ଧୀ, ଚୈତନ୍ୟର
ଚେତନାରେ ଉଦ୍‌ବୁଦ୍ଧ କରିବାକୁ
ଏ ମାଟିର ଉଦିତ ସୂର୍ଯ୍ୟକୁ ।।



# ଧର୍ମପଦ

ଅନନ୍ତ କୁମାର ପରିଡ଼ା

ଭାବନାର ସୁରା ପିଇ ମୁଁ ସିନା  ଅଭ୍ୟସ୍ତ ଖାଲି
ଅବସନ୍ନ ଅତୀତର ବୈଠକ ଖାନାରେ
ମୋ ଗ୍ଲାନିର ଭଙ୍ଗା ଚୌକି ପାରି
ବସି ବସି ଗପିବାକୁ ସୂର୍ଯ୍ୟାସ୍ତ ସହିତ,
କିନ୍ତୁ ସେମାନେ ସତର୍କ ଭାରି, ବାରିଥାନ୍ତି
ପବନରୁ ବାରିଥାନ୍ତି ଚିହ୍ନା ଜଣା ନିଃଶ୍ୱାସର ସୁଆଦିଆ ଗନ୍ଧ ।
ସେମାନେ କହନ୍ତି ଖୋଲି -
ଜୀବନର ଫୁଲଝରୀ ଜଳିଗଲେ ପଡ଼ି ରହେ ପଛ ସ୍ମୃତି ସୁବର୍ଣ୍ଣ ଚାମେରୀ ।।
ତେଣୁ ସେ ସାଇର ଝିଅମାନେ ସଞ୍ଜହେଲେ
ମାଜଣା ପୋଖରୀ ହୁଡ଼ା ଆମ୍ବତୋଟା ମୂଳେ
କୋଇଲିଠୁ ସଙ୍ଗୀତ ଶିଖନ୍ତି
ଉଲ୍ଲାସରେ ବୁଣି ବୁଣି
ମୁଠା ମୁଠା ଜ୍ୟୋତ୍ସ୍ନାର ଅବିର
ଅନୂଢ଼ା ଯୁବତୀମାନେ
ନିରୋଳାରେ ଝୁଲଣ ଖେଳନ୍ତି ।
କିନ୍ତୁ ବିଥୀକାଟା ଭାରି ବୋକୀ, ଭୟରେ ଆଉଟି ହୁଏ
ଖୋଲୁ ଖୋଲୁ ପୁରୁଣା ଚିଠିର ତାଡ଼ା
ପ୍ରଣୟର ଗୋପନ ଦଲିଲ,
ଲମ୍ୱା ଲମ୍ୱା ଛାଇ ଦେଖି କାନ୍ଥର ପିଠିରେ, ତୁଚ୍ଛାଟାରେ ।
ହୋଟେଲର ନର୍ଦ୍ଦମା କଡ଼ରେ ବ୍ୟାଧିଗ୍ରସ୍ତା
କ୍ଷୀଣ କାୟା ବୃଦ୍ଧା କୁକୁରୀଟା

ବଣ୍ଟିବାର ବିଜ୍ଞାପନ ଦିଏ ତୀବ୍ରସ୍ୱରେ
ହାସ୍ୟମୟୀ ଲାସ୍ୟମୟୀ ବିଦ୍ୟୁତ୍‌ପ୍ରଭା ସିହ୍ନା
ଏସରାଜ ଲହରୀରେ ଗାଇଯାଏ
ଯୌବନର କ୍ଲାସିକ ସଙ୍ଗୀତ, ବିହ୍ୱଳରେ ।।
ମୁଁ କିନ୍ତୁ ନିହାତ୍ ମୂର୍ଖ, ଲଣ୍ଠନରେ ଭଙ୍ଗା କାଚ
ପବନଟା ଆଜିକାଲି ମୁକ୍ତିକାମୀ ଫୌଜ ପରି
ବେଳେ ବେଳେ ବିପ୍ଳବୀ ସାଜୁଛି
ମୋ ଶାବକ କିଏ ସେ ଜଗିବ ?

ନିଜର ନିହାଣ ଚାଳି ମୋ ମନର ନୀଳ ମୁଗୁନିରେ
ଫୁଟାଇଲା ସେଦିନ ଯେ ନାମ ହୀନ ଫୁଲର ଫସଲ
ସେ ଫୁଲର କୁଞ୍ଜବନ ଆଜି ସୁରଭିତ
କେଉଁଠି ଲୁଚି ବି କହ ? ପବନର ଢେଉ ଭାଙ୍ଗି
ସ୍ଥିର ଲକ୍ଷ୍ୟ ମାଛରଙ୍କା ଝାମ୍ପିବାକୁ ପ୍ରସ୍ତୁତ ହେଲାଣି
ମେଘର ଭେଳାରେ ବସି,
ମୁଁ ତେଣୁ ଡାକିବି ଆଜି ଈଶ୍ୱରଙ୍କୁ,
ଆଖି ବୁଜି ମୁଁ କରିବି ବିଶ୍ୱସ୍ତ ପ୍ରାର୍ଥନା ।
(ଯେ ହେତୁ ଆଣ୍ଠୁମାଡ଼ି ଲୟ ରଖି ଏକ ମନ
ଏକ ପ୍ରାଣ ହୋଇ ପ୍ରାର୍ଥନା କଲେବି
ଏ ମାଟିର ପ୍ରାର୍ଥନାଟା ସମୟରେ
ପ୍ରେମିକାର ସ୍ତୁତି ହୋଇ ଯାଏ ।)
ମୁଁ କହୁଛି ଆମ ଗାଁ ନଈ କଥା -
ଆମ ଗାଁ ନଈ ଯାଏ କହି ଯାବତ୍ ସଫେଇ
ସହି ସହି ବ୍ୟଭିଚାର ଯେତେ ପଳାତକ ପ୍ରତି ମୁହୂର୍ତ୍ତର
ସେ ଖାଲି ଘୋଡ଼େଇ ହୁଏ କୁହୁଡ଼ି କମ୍ବଳ
ଜାହିର କରିବା ଲାଗି ତା ସତୀତ୍ୱ, ତା ନାରୀତ୍ୱ, ତା ମାତୃତ୍ୱ;
ମୋ କଥା ବୁଝିବ କିଏ ? ଭାଲୁଜର ଥରାଉଚି
ମୋତେ ଆଜି ପ୍ରବଳ ଦମରେ ।
ଏ ଯନ୍ତ୍ରଣା ଅବାଞ୍ଛିତ ନୁହେଁ,
ସେ ଏକ ମର୍କଟୀ ସମ

ମୋ ଭାଗ୍ୟର ଶାବକକୁ ତା ପେଟରେ ଢାକିଢୁକି
ଶିଖାଇବ ଶୂନ୍ୟ ପରିକ୍ରମା !
ମୁଁ କହୁଛି ବାରଣ' ବଢ଼େଇକଥା ।
ଇତିହାସ ଅମର ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷର କବର ଭିତରେ
ହୁଏତ ସେମାନେ ଆଜି ଶୋଇଛନ୍ତି
ଚୁପ୍‌ଚାପ୍ ନିଘୋଡ଼ ନିଦରେ,
ଜାନୁୟାରୀ ଛବିଶରେ ନିଦରୁ ଉଠେଇ
ସେମାନଙ୍କୁ ଦିଆ ଯିବ ଜାତୀୟ ସମ୍ମାନ ।

ମୁଁ ଆଜି ପ୍ରହରୀ ଏକ ସୀମାନ୍ତର ଜଗୁଆଳ
ଡାହାଳ କୁକୁର ପରି ଅହରହ ମୁଁ ଜଗିଛି
ମୋ ଦୃଷ୍ଟିର ନୀଳ ଦିଗ୍‌ବଳୟ ଏବଂ
ତା' ଭିତରୁ ଖସୁଥିବା କେରି କେରି
ବୈଶାଖୀ ଦହନ । ମୋ ଛାତି ପଞ୍ଜରା ଭାଙ୍ଗି
ହତାଶାର ଦୀର୍ଘଶ୍ୱାସ –
ଯେତେବେଳେ ଅତିକାୟ ଦାନବ ସାଜିବ
ଗୌରବର ମଞ୍ଜୁଷାରେ ତାକୁ ଭରି
ସୂର୍ଯ୍ୟଙ୍କର ଦ୍ୱାହି ଦେଇ ସମୁଦ୍ରର ଗର୍ଭକୁ ଡେଇଁବି ।
ତେଣୁ ଆହେ ମୋ ବଂଶର ଉତ୍ତର ସାଧକ
ପର୍ବ ପାଳି ଅନୁଶୋଚନାର
ମହୋଦଧି ସୀମାନ୍ତରେ ଚନ୍ଦ୍ରଭାଗା ବାଲୁକା ଶଯ୍ୟାରେ
ମୋତେ ଆଉ ଜମା ଖୋଜିବନି ।।
ତୁମର କି ମନେ ଅଛି ? ବାଡ଼ି ବର କୋଳି ନେଇ
ନମୁନା ସ୍ୱରୂପ, ବାରବର୍ଷ ବୟସର ବାଳକ ମୁଁ
ବଳିଆ କୁକୁର ସଙ୍ଗେ ଆସିଥିଲି
ଚନ୍ଦ୍ରଭାଗା ତୀରେ,
ଧରମା ମୋ ଡାକ ନାମ ଏବଂ
ମୁଁ ସେଇ ଧର୍ମପଦ ।।



# କୋଣାର୍କ - ଦୁଇଟି ଚିତ୍ର

ହରିହର ଦାସ

ନିପୁଣ ହାତରେ ନିଖୁଣ ଚାଳନା କରି
ଶିଳ୍ପୀ ହେ ତୁମେ ପାଷାଣର ବୁକେ
ଜୀବନକୁ ଦେଲ ଭରି ।
ତୁମରି ଚରଣେ ନଇଁ ଯାଏ ମୋର ମଥା
ଶିଳ୍ପୀ ହେ ନିଅ ପ୍ରଣତି ମୋହର
ନିଅ ମୋ ହୃଦୟ ବ୍ୟଥା ।

-୧-

ତୁମ କଥା ମନେପଡ଼େ ଆଜି ବାରମ୍ବାର
ମୁଁ ଯେ ଦେଖେ ସ୍ପର୍ଶ କରି ପ୍ରତ୍ୟେକ ଶିଳାରେ
ତୁମେ କି ନିରେଖି ଅଛ ସୂକ୍ଷ୍ମ ହାତେ ନିହାଣ ମୁଗୁର !
ଖୋଜେ ମୁଁ ତୁମକୁ ଆଜି ତୁମରି କଳାରେ ।

ଭଗ୍ନକାୟ କୋଣାର୍କର ପ୍ରତ୍ୟେକ ଶିଳାରେ
ଲାଗିଅଛି ତୁମ କର ମଧୁମୟ ସ୍ପର୍ଶ
ଶିଳାଦେହେ କରି ତୁମେ ପ୍ରାଣର ସଂଚାର
ରଖିଗଲ ପୃଥିବୀରେ କଳାର ଆଦର୍ଶ ।
ସ୍ଥାପତ୍ୟର ଧ୍ୱଂସ ଅଛି, ସ୍ଥପତି ଅମର ।
କୋଣାର୍କର ଧ୍ୱଂସ ଅଛି, ଧ୍ୱଂସ ନାହିଁ କୋଣାର୍କ କଳାର ।
ଯଶ, କୀର୍ତ୍ତି ଲୋଭ ଘେନି ସେ ଯେଉଁ ରାଜନ
ଦେଇ ନାହିଁ ତୁମର ଯେ ଉଚିତ ସମ୍ମାନ -

ଇତିହାସ ଆଜି ତାକୁ ଶତ ପ୍ରଶ୍ନ କରେ
ତୁମେ ପୁଣି ଫେରି ଆସ କାଳର-ଡେଣାରେ
ତୁମେ ଆସ ପୁଣି ଥରେ ମରଣକୁ ଉପହାସ କରି
ସମୟର ଲୋମ କୂପେ ଅସ୍ତିତ୍ୱର ହୋଇ ସ୍ୱେଦ ବାରି ।

ଏ' ବାଲିର ପ୍ରତିରେଣୁ ରଚେ ଆଜି ତୁମର ପଦାଙ୍କ
ତୁମରି ସ୍ୱାଗତ କରେ ଝାଉଁବଣ ମର୍ମର ଗୀତରେ
ଚନ୍ଦ୍ରଭାଗା ମନେ ଖେଳେ ନାନା ଉଦ୍‌ବେଳନ
ଅର୍ଚ୍ଚନା ହୁଅଇ ଆଜି ସାଗରର ଉତ୍ତାଳ ନୃତ୍ୟରେ ।

-୨-

କୋଣାର୍କର ସୁମସୃଣ ଭଗ୍ନ କଳେବର
ଅଜସ୍ର କଳାର କୃତି ରୁଚିର ଭାସ୍କର
ଝାଉଁବଣ ମର୍ମରିତ ଏଇ ବାଲୁଚର
ତୁମ କଥା ମନେ ପଡ଼େ ଆଜି ବାରମ୍ବାର ।

ଏଠି କେଉଁ ପ୍ରେୟସୀର ଚାରୁକ୍ଷୀଣ କଟୀ
ବେଢ଼ି ଯାଏ ଧୀରେ, ଧୀରେ କା' ଭୁଜ-ଉରଗ
ଦିନାନ୍ତରେ କିଏ ତୋଳେ ବାୟୁର-ମହଲ
ଅବାଧ ଧାଇଁଇ ତା'ର ମନର-ତୁରଗ ।
ପାଷାଣର ଭାଲପଟେ କିଏ ଜଣେ ଲେଖିଯାଏ
ତା' ନାଁର ପାଖାପାଖି ଆଉ ଗୋଟେ କା'ର
ଅଧା ଜଳା ସିଗାରେଟ୍ ଦିଆସିଲି କାଠି
ତୋଳିଛନ୍ତି ସଭ୍ୟତାର କରୁଣ ଝଙ୍କାର ।

ଜାଣନା କି ? ଗର୍ବେ ଆଜି ଫାଟିପଡ଼େ ଛାତି
ଦେଖ, ଦେଖ ଏଠି ତୁମ କଳାର ଆଦର !
ତୁମେ ସତେ ମାନିବନି, ହସିଦେବ ତାଚ୍ଛଲ୍ୟ ଭାବରେ
ଆଜି ଏଠି ଚୋରି ହୁଏ କୋଣାର୍କ ପଥର ।



# ହେ କୋଣାର୍କ, ବିଗତ ଯୌବନା

ଜଗନ୍ନାଥ ଶତପଥୀ

ମୌନମୟୀ
ହେ କୋଣାର୍କ ।
ବିଗତ ଯୌବନା
ସ୍ୱାଭିମାନୀ ଏ ଜାତିର
ଛନ୍ଦାୟିତ ଜୀବନର
ରୂପରାଗ ବେଦନାର
ଅମୃତ ସ୍ୱାକ୍ଷର,
ସୃଷ୍ଟିକଲା
ତବ ବକ୍ଷେ
ଜନମାନସେ
ଅଲକ୍ଷ୍ୟେ
ଧରାଙ୍ଗଣେ ନ ମିଳେତ
ତାର ପଟାନ୍ତର ।୧ ।

x x x

ଏ ଜାତିର ସ୍ୱାଭିମାନ
ନିହାଣେ ପାଇଛି ଜନ୍ମ,
ନାହିଁ ତା'ର ପ୍ରତିଦାନ
ସାରା ରାଇଜରେ,
କେତେ ସ୍ୱପ୍ନ,
କେତେ ଆଶା
କେତେ ଅଶ୍ରୁ

କେତେ ଭାଷା
ସାଗରର ବେଳାଭୂମେ
ଓଡ଼ିଆର ମର୍ମେ ମର୍ମେ
ଛନ୍ଦ ତୋଳି ନାଚିଯାଏ
ଅପୂର୍ବ ଝଙ୍କାରେ ।୨ ।

x x x

ହେ ରୂପସି !
ନ ଥିଲା ତ
ଜନପଦ
ନ ଥିଲା ତ ଯାନ
ଜୟଯାତ୍ରା
ବିଜ୍ଞାନର
ନ ଥିଲା ଆଜିକାଲିର,
ତାରୁଣ୍ୟରେ
ଭରିଦେଲା
ତୋ ତନୁ ତନିମା,
କେଉଁ ଶିଳ୍ପୀ ?
ପରଶରେ
କଳପନା ବିଳାସରେ
ସୃଷ୍ଟିକଲା
ଇତିହାସ,
ନବଯୁଗାନ୍ତର,
କାଳର କରାଳଗ୍ରାସେ
ପ୍ରକୃତିର ଅଟ୍ଟହାସେ
ତଥାପି ଅକ୍ଷତ
ଚିରସବୁଜ ସୁନ୍ଦର ।୩ ।

x x x

ଲାସ୍ୟମୟି
ସିକତାର
ଅନୁକ୍ତ ଅଙ୍ଗନେ,
ଛନ୍ଦ ତୋଳି
ବିରହୀର
ମିଳନ ସଙ୍ଗୀତ
ଗାଇଗଲ
ଅତୀତରେ
ମଧୁର ମଞ୍ଜୁଳ ସ୍ୱରେ
ମଳୟ ବେପଥୁଭରା
ବୀଣାର ବାଦନେ,
ଭରିପ୍ରାଣେ
ଉନ୍ମାଦନା,
ବିଶ୍ୱର କୋଟି ଲଳନା
କଲେ ତବ ବନ୍ଦାପନା
ସାଗରର ବେଳାଭୂମେ
ଯେବେ ଗ୍ରହ ଚନ୍ଦ୍ରତାରା
ଦରଶନେ ତବ ସର୍ବେ
ହେଲେ ଆତ୍ମହରା ।
ବିସ୍ମୟ ଚକିତ ନେତ୍ରେ
ଚାହେଁ ବସୁନ୍ଧରା ।୪ ।



# କୋଣାର୍କର ଜନ୍ମ

ବ୍ୟୋମବିହାରୀ ରଥ

ପ୍ରାଚୀ ନଦୀ ତଟେ ନଇଁ ଆସୁଥିଲେ ସେଦିନ ସୂର୍ଯ୍ୟଦେବ
ପ୍ରତିଚୀ ଅଙ୍ଗନେ ଫୁଟି ଦିଶୁଥିଲା ବର୍ଣ୍ଣ ଅବିର ଭାବ ।୧ ।
ମହାଶୂନ୍ୟର ଭାସ୍କର ସିଏ ଲୁଚିଯାଉଥିଲେ ସିନା
ନିହଣ ମୁଗୁର ଧରୁଥିଲେ ଇଏ ଭାସ୍କର ମହା ମନା ।୨ ।
ଶିଳ୍ପୀ କୂଳର କଳ୍ପ ବଟ ସେ ଶିଳ୍ପୀ କୁଳର ମଉଡ଼ ମଣି
ଶୟନେ ସ୍ୱପନେ ଶିଳ୍ପ ବିନା ଯେ ଆନ କିଛି ଆଉନପାରେ ଜାଣି ।୩ ।
ଦଗଗଡ଼ା ଏକ ଅଶ୍ୱ ମୂର୍ତ୍ତି ଦୁଆରେ ତାଙ୍କର ହୋଇଛି ଉଭା
ଅସ୍ତ ଗିରିର ସୂର୍ଯ୍ୟକୁ ଜିଣି ବିସ୍ତା କରି ବର୍ଣ୍ଣ ବିଭା ।୪ ।
ଟିକିଏ ରହୁଛି ଟିକିଏ ଚାହୁଁଛି
ଚଳାଉଛି ପୁଣି ନିହାଣ ମୁନ
ଆଉଟିକେ ଦେଖିଥାନ୍ତି କି ବୋଲି
ଶୁଭି ଯାଉଥିଲା ଅସ୍ଫୁଟ ସ୍ୱନ ।୫ ।
ଆନେ ନାହିଁ ମନ ଆନେ ନାହିଁ ଧ୍ୟାନ
ସେହି କଥାଟିରେ ଘୂରୁଛି ମଥା
ମନେ ପକାଉଛି ଶିଳ୍ପୀ ଯେପରି
ସ୍ମୃତି ପେଟିକାରୁ ଅତୀତ କଥା ।୬ ।
ଘୋଟକ ଆରୋହୀ କେତେବେଳେ ଆସି
ଅତିଥି କିଏ ସେ ହୋଇଛି ଘରେ
ଶିଳ୍ପୀ କୁଳର ମଉଡ଼ ମଣିକୁ ଜଣାନାହିଁ
ସିଏ ଚାହିଁନି ଥରେ ।୭ ।
ଭୋଜନ ପରବେ ଅଛନ୍ତି ଅତିଥି
ପରଶୁଥାନ୍ତି ଭାସ୍କର ରାଣୀ
ସହସା ସେକାଳେ ଶିଳ୍ପୀ ମୁଖରୁ
ଶୁଣାଗଲା ଏକ ପ୍ରଳାପ ବାଣୀ ।୮ ।

ଏତ୍କି ମୂର୍ଖ ଏତେ ନିର୍ବୋଧ ଉତ୍କଳର ଏ ଲାଙ୍ଗୁଳା ରାଜା
ସଦା ସର୍ବଦା ବଜାନ୍ତି କେବଳ
ନର ହତ୍ୟାର ଟମକ ବାଜା ।୯ ।
ଭାଷିଲେ ଅତିଥି "ରାଜଧର୍ମ" ଏତ
ଏଥିପାଇଁ ରାଜା ନୁହନ୍ତି ଦୋଷୀ
ନୂଆ ପାଟି ଶୁଣି ଚମକି ଭାସ୍କର
ନରମ ଆଖିରେ ଚାହିଁଲେ ହସି ।୧୦ ।
ଏପରି କଲେକି ଅକ୍ଷୟ ଯଶ
କ୍ଷୟଶୀଳ ଭବେ ରଖିବେ ସେହି ?
ସତ କଥା ସିନା ରାଜଧର୍ମ ରାଜା
ପାଳୁଛନ୍ତି ତିଳେ ସନ୍ଦେହ ନାହିଁ ।୧୧ ।
ନିସ୍ତଳକ ନେତ୍ରେ ଚାହିଁଲେ ଅତିଥି
ନସ୍ପୁରିଲା କିଛି ମୁଖରୁ ଭାଷା
ବୁଝି ପାରିଲେନି ରହିବ କିପରି
ଅକ୍ଷୟ ଯଶ ଅମର ଆଶା ।୧୨ ।
ହସହସ ମୁଖେ କହିଲେ ଭାସ୍କର
ଉତ୍ତର ଏହାର ସହଜ ଅତି
ଆଖି ଖୋଲି ଧୀରେ ଚାହଁନ୍ତୁ ଶ୍ରୀକ୍ଷେତ୍ର
ଲିଙ୍ଗରାଜଙ୍କ ଦେଉଳ କତି ।୧୩ ।
ପୂରୁବ ଦିଗରେ ଉଇଁଲେ ଅରୁଣ
ବିଦାୟ ଘେନିଲେ ଅତିଥି ବର
ଭାସ୍କର ବଚନ, ଅଶ୍ୱଗଠନ ହୃଦୟେ ତାଙ୍କର ଟାଣିଲା ଗାର ।୧୪ ।
ସେଦିନ ସଂଜେ କଟୁଆଳ ଦୁଇ
ପହଞ୍ଚିଲେ ଆସି ଶିଳ୍ପୀ ଘରେ
ଜଣାଇଲେ – "ରାଜା ଡକାଇ ଅଛନ୍ତି –
ଭାସ୍କର ଦମ୍ପତି ଯିବେ ସତ୍ୱରେ ।୧୫ ।
ହଲକ ଶୁଖିଲା ଭାସ୍କର ଗୃହିଣୀ
କହିଲେ, "କାହିଁକି – କହିଲ ଏହା
ରାଜା ଗୁପ୍ତଚର ଖବର ଦେଇଛି
ଡକାଇ ଅଛନ୍ତି ଉତ୍କଳ ନାହା ।୧୬ ।

ଡରିଲେନି କିନ୍ତୁ ଭାସ୍କର ତିଳେ
　　　　　　　　କଟୁଆଳ ପଛେ ଚାଲିଲେ ଧୀରେ
ନୃପତି ଛାମୁରେ ପହଞ୍ଚିଲେ ଯାଇ
　　　　　　　　ପ୍ରଣମିଲେ ଧୂଳି ଲଗାଇ ଶିରେ ।୧୭ ।
ପ୍ରଣାମ ତୁମର ଘେନିବା ପାଇଁ ମୁଁ
　　　　　　　　ଯୋଗୀ ନୁହେଁହେ ଶିଳ୍ପୀର
ଅଭିନନ୍ଦନ ଘେନାକର ମୋର
　　　　　　　　ଦେଖାଇଛ ତୁମେ ମୁକ୍ତିଦ୍ଵାର ।
ସୁପ୍ତ ମନେ ମୋ ଜଗାଇଛ ତୁମେ
　　　　　　　　ଚେତନାର ନବ ମୃଦୁ ଅଙ୍କୁର
ପ୍ରକୃତ ବାଟ ଦେଖାଇଛ ତୁମେ
　　　　　　　　ଯଶ ମୋର ରଖିବାକୁ ସଂସାର ।୧୮ ।
ଆଜିଠାରୁ ଏହି ଆଦେଶ ମୋହର
　　　　　　　　ଗଢ଼ାହେବ ଏଠି ଦେଉଳ ଏକ
ରଥ ପରି ହେବ ଆକୃତି ଯା'ର
　　　　　　　　ସବୁ ଦେଉଳରୁ ବଳିବ ଟେକ ।୧୯ ।
ଶିଳ୍ପୀର ଭୂଇଁ ଏ ଉତ୍କଳ ମୋର
　　　　　　　　ଅଭାବ ନାହାନ୍ତି ଶିଳ୍ପୀକୂଳ
ବଛା ବଛା ଯେତେ କାରିଗର ସବୁ
　　　　　　　　କରନ୍ତୁ କାର୍ଯ୍ୟ ହୋଇଣ ଠୁଳ ।୨୦ ।
ଆଗରେ ରହିବ ତୁମ ହାତ ଗଢ଼ା
　　　　　　　　ଅଶ୍ଵ ମୋହର ଅମର ହୋଇ
ଯାହା କହି ଅଛ ତୁମରି ବଚନ
　　　　　　　　ସାର୍ଥକ ତୁମେ କର ହେ ଯାଇ ।୨୧ ।
ଚାହିଁ ରହିଥାନ୍ତି, ଭାସ୍କର ଖାଲି
　　　　　　　　ମୁଗ୍ଧ ନୟନେ ନୃପତି ଆଡ଼େ
ବହିଯାଉଥାଏ ଆନନ୍ଦାଶ୍ରୁ
　　　　　　　　ଦୁହିଙ୍କ ସ୍ନିଗ୍ଧ ନୟନ କଡ଼େ ।୨୩ ।



# କୋଣାର୍କ

ମନିଷଦାସ କାଳିକିଙ୍କର

ଜୀବନ-ସମୁଦ୍ରରେ ଆଜି
ଧୋଇ ହୋଇ ଯାଉଛି -
ମାଟିବାଲି
ଘର ମୋର ଭୁଶୁଡ଼ି ପଡ଼ିଛି
କଳା ମିଚିମିଚି ଢେଉସବୁ ରାକ୍ଷସପରି
କରିଚାଲିଛନ୍ତି ଅଟ୍ଟହାସ୍ୟ,
ମୋ ଆଖି ଆଗରେ ଛିଡ଼ା ହୋଇଛି
କୋଣାର୍କ ।।

କେତେ ସପନରେ ସୂର୍ଯ୍ୟର ଏ ଘର
ଜୀବନର ସବୁ ରଙ୍ଗ ଢଙ୍ଗର ସମାହାର
ପ୍ରେମର ଏକ ଅଦ୍ଭୁତ ପରିପ୍ରକାଶ ଭିତରେ
ଖୋଜିବା ଅତୀତ
ଲଙ୍ଗଳା ନାରୀର ଯୌବନର ମୁକ୍ତ ଆସ୍ଫାଳନ
ପୌରୁଷର ତୃଷା କେମିତି ବଢ଼ିବଢ଼ି ହୁଏ
ଏକାକାର
ଆଖି ବୁଜି ପଡ଼ିଲେ
ଶୋଇ ପଡୁଛି
କୋଣାର୍କ ।।

ନାରୀ ଏବଂ ପୁରୁଷର ଆତ୍ମିକ ପ୍ରେମର ଛବି
କୋଣାର୍କର ଦେହ
ଚକସବୁ ଗଡ଼ିଯିବ ଖୋଜି ନିଜବାଟ
ମୁଁ ତୁମକୁ ଭଲପାଇ କାହିଁପାଇଁ
ଆପଣାକୁ କରିଛି ପାଗଳ
ଏବଂ ତୁମ ଓଠରେ ମିଳାଇ ଓଠ
ଦେହରେ ଦେହକୁ
ମୋ ହାତରେ ସାରା ଦେହେ ଆଙ୍କିଲି
କୋଣାର୍କ ॥

କାଲି ତୁମେ ନୀରବ ନିରୁତ୍ତର ହୋଇ
ବେନିବାହୁ ଟେକି ଭିଡ଼ିନେଲ ମୋତେ
ତୁମର ସେ ଉଲଗ୍ନ ଦେହ ଉପରକୁ
ଏବଂ ପିଆଇଲ ପ୍ରେମର ଅମୃତ;
ହଠାତ୍ ଆଜି ପଛକରି ଅଚିହ୍ନା ମଣିଷ ପରି
ବଦଳାଇ ନିଜରାସ୍ତା ହଜିବାର ଇଚ୍ଛାନେଇ
ଭାଙ୍ଗିରୁଜି ଛାରଖାର କରିଦେଲ
ଏଇ ମୋର ଜୀବନ-କୋଣାର୍କ ॥

ମୁଁ ତଥାପି ଛିଡ଼ା ହୋଇଛି ସମୁଦ୍ର କୂଳରେ
ଏକୁଟିଆ
ସୂର୍ଯ୍ୟ କେତେବେଳେ ପୁଣି ଦେଖାଇବେ ରୂପ
ମୁଁ ଦୌଡୁଥିବି ବାଲିଦାଣ୍ଡେ ଗଡ଼ିବାକୁ ଘର
ବେଖାତିର ଭାବ ଦେଖି ବରଂ ହସୁ ସାଗର ତରଙ୍ଗ
ନିର୍ଜନ ଏ ବେଳାଭୂମି ସାକ୍ଷୀଥିବ
ଉନ୍ମାଦନା ଭଙ୍ଗାଦର୍ପଣରେ
ଆଜି କି ସୁନ୍ଦର ଦିଶୁଛି କୋଣାର୍କ !



# ସୂର୍ଯ୍ୟୋଦୟ (କୋଣାର୍କେ)

**ପଣ୍ଡିତ ଗୋବିନ୍ଦ ରଥ**

ଚନ୍ଦ୍ରଭାଗା ସ୍ନାନପାଇଁ,
ଯାଇଥିଲି ଦିନସାଁଇ ।
ଦେଖିଚି ତବ ଉଦୟ
ଅତିଶୟ ରସମୟ ହେ ।୧ ।
ରଥ ଆରୋହି ଜଳରୁ,
ଉଠି ଉଠି ପଡ଼ି ନୀରୁ ।
କଅଁଳା ବାଛୁରି ପରି,
ଡେଇଁପଡ଼ି ଥରି ଥରି ହେ ।୨ ।
କ୍ରମଶଃ ଉଠି ଉପରେ,
କୋଣାର୍କ ମନ୍ଦିର ପରେ ।
କିରଣ ରେଖା ପକାଇ,
ଲୋକେ ଦିଅ ଚମକାଇ ହେ ।
ସେ ଅପୂର୍ବ ଦୃଶ୍ୟ ଛବି,
ନ ଭୁଲିବି କେବେ ରବି ।
ଜୀବନାନ୍ତ ସମା ତାର,
ହୃଦ କଲା ଅଧିକାର ହେ ।୪ ।
ଅସୁର ତାଡ଼ନେ ଦେବ,
ଟିକିଏ ସହାୟ ହେବ,
ତୁମ୍ଭର ସଙ୍ଗୀ ଅମର-
ମାନଙ୍କୁ ଗୋଚର କର ହେ" ।୫ ।



# କୋଣାର୍କ ସ୍ମରଣେ

ଶିବପ୍ରସାଦ ପଣ୍ଡା

କିଏ ତୁମେ ରାଜା ଉତ୍କଳ ଗୌରବ
କିଏ ଗୋ ଉତ୍କଳମଣି;
ଉତ୍କଳ ଆଜି ସରଗ ସାଜିଛି
ଛୁଇଁ ତବ ପାଦପାଣି ।
ସିଂହାସନ ତା'ର ଲଭିଛି ଜୀବନ
ପାଇ ତବ ପ୍ରାଣସ୍ପର୍ଶ;
ଉତ୍କଳର ପ୍ରତି ଧୂଳିକଣା ଆଜି
ଗାଉଅଛି ତବ ଯଶ ।
କୋଣାର୍କେ ଥାପିଲ କି ସୁନ୍ଦର କଳା
ଜଗତ ମାନିଛି ହାର;
କିଏ ତୁମେ ପ୍ରଭୁ ଉତ୍କଳଗୌରବ
କିଏ ତୁମ କଳାକାର ।
କାହିଁ ଗଲ ତୁମେ ମାଟିର ମଣିଷ
ମାଟିରେ ତ ଗଲ ମିଶି;
ତବ କୀର୍ତ୍ତି ଆଜି ହୋଇଛି ଅକ୍ଷୟ
ଦେଖକାଳ ସ୍ରୋତେ ଭାସି ।
ଆମେ ଉତ୍କଳୀୟ ପ୍ରଜା ବଂଶଧର
ଗର୍ବିତ ତବ ଯଶେ;
କୋଣାରକ ତବ କୀରତି ମନ୍ଦିର
ବୁଲି ଦେଖୁ ଉତଲାସେ ।
ତବ ଚାରୁକଳା ମଧୁ ପ୍ରାୟେ ଜିଣେ
ବିଦେଶୀ ଭ୍ରମର ଦଳେ;
ବିସ୍ମିତ ହୁଅନ୍ତି ଦେଖି ସେହି କଳା
ଛାପିନ୍ୟନ୍ତି ଫଟୋ କଳେ ।

ଦେଖ ଉଠି ରାଜା ତବ କୀର୍ତ୍ତି ପୀଠ
କୋଳାହଳ ଦିବାରାତ୍ର;
ଯେତେ ଦେଖୁଥିଲେ ଅଦ୍ଭୁତ ସେ କଳା
ଅଭୁଲା ସେ ରୂପ ଚିତ୍ର ।
କୋଣାର୍କର ପ୍ରତି ପ୍ରସ୍ତର ଦେହେ
ପରାଣ ଦେଇଛ ଭରି;
ଚିରରଂଜିତ ତବ କୀର୍ତ୍ତି ତୀର୍ଥ ହେ
ଉତ୍କଳ କିରୀଟ ଧାରୀ ।
କେତେ ଲହୁଲହୁ ଦେଇ ତୋଳିଅଛ
ମନେ ଚାପି ରଖି କୋହ;
କେତେ ଯେ ଦୀପାଳୀ ତେଜି ସୃଜି ଅଛ
ଏ ସୁନ୍ଦର କଳାଗୃହ ।
ଶ୍ରମ ବିନିମୟେ ତୋଳି ଅଛ ତୁମେ
ଏଇ ପୁଣ୍ୟ କୀର୍ତ୍ତିବର;
ଜୀବନ୍ତ ହୋଇଛି ତୀର୍ଥ କୋଣାରକ
ରହିବ ଚିରଭାସ୍ୱର ।
ବିଜ୍ଞାନ ଆଜି ପ୍ରମାଣ କରିଛି
ସୂରୁଜ ନୁହେଁ ଦେବତା;
ଉତପ୍ତ ତରଳ ଗ୍ୟାସୀୟ ପିଣ୍ଡ ସେ
ତ୍ରିବାର ସତ୍ୟ ଏ କଥା ।
ତଥାପି ସବିତା ଚିରପୂଜିତ
ତୁମରି ଅର୍କ ଧାମେ;
ଚିତ୍ରକଳା ତବ ହୋଇଛି ଅନନ୍ୟ
ପୂଜା କରୁଥିବୁ ଆମେ ।
ତୁମରି ମନ୍ଦିରେ କେହି ନୁହେଁ ରାଜା
ତୁମେ ହିଁ ଏକା ପୂଜ୍ୟ;
ସେ ଲାଗି ଚରଣେ ଅପରୁଛି ଶିବ
ଧୂପ, ଦୀପ, ନଇବେଦ୍ୟ ।

# ଭଗ୍ନ କୋଣାର୍କ

ଇନ୍ଦୁମତୀ ରାୟ

ମୋ' ମନର ଭଗ୍ନ କୋଣାରକେ
ତୁହି ସିନା ପାଷାଣ ଦେବତା,
ସ୍ମୃତିର ସେ ଅସୀମ ବକ୍ଷରେ
ଅସରନ୍ତି ମୋହର ଏ ଗାଥା ।

ମୋ' ମନର ଭଗ୍ନ କୋଣାରକେ
ନୀରବର ଦ୍ରଷ୍ଟାଟିଏ ପରି,
କେତେ ଦିନ ବସିଥିବୁ ତୁହି
ସାଜି ଦାରୁଭୂତର ମୁରାରୀ ।

ମୋ' ମନର ଭଗ୍ନ କୋଣାରକେ
ସୂରୁଯ ତୁ ଆସିବୁ କି ନାହିଁ,
ଅବା ମୋତେ ପ୍ରତାରଣା କରି
ବାଦଲର କୋଳେ ଯିବୁ ଧାଇଁ ।

ସତ କହୁଅଛିରେ ଅରୁଣ
କଳା ମେଘ ଆସିଲେ ଘୋଡ଼ାଇ,
ମନ ମୋର ଶିହରିଣ ଉଠେ
କାଳେ ତୋତେ ନେବ ସେ ଛଡ଼ାଇ ।

ମୋ' ମନର ଭଗ୍ନ କୋଣାରକେ
ବାରଶହ ବଢ଼େଇର ସ୍ମୃତି,
ଲୀନ କରି ବିସ୍ମୃତ ଗରଭେ
ନ ଯିବୁ ତୁ ଦିଗ୍‌ବଳୟେ ଲୁଚି ।

ମୋ ମନର ଭଗ୍ନ କୋଣାରକେ
ଧର୍ମପଦ ବିସର୍ଜିଛି ପ୍ରାଣ
ଅପବିତ୍ର ହୃଦବେଦୀ ସିନା
ତୋର ବିନା କାନ୍ଦେ ଏ ପରାଣ ।

ନାହିଁ ଧର୍ମପଦ ନରସିଂହ
ଦେଖିବାକୁ ମୋର ଦଶା,
ସୂରୁଜ ତୁ ନ ହେବୁ ପାଷାଣ
ତୋର ପାଦେ କରିଛି ମୁଁ ଆଶ୍ରା ।

ସୂର୍ଯ୍ୟ ମୋ'ର ଭଗ୍ନ କୋଣାରକେ
ଅପବିତ୍ର ହୃଦବେଦୀ ମନ,
ସବୁ କିଛି ହୋଇବ ପବିତ୍ର
ପାଇ ତୋର କୋମଳ କିରଣ ।

ମନେ ରାଗରୋଷ, ବହି କେବେ
ମଧ୍ୟାହ୍ନର କିରଣକୁ ଦେଇ,
କୋମଳ ମୋ ଅଙ୍ଗର ଶିଳାକୁ
ତରଳାଇ ଦେବୁ ତୁରେ ନାହିଁ ।

ସାଗରର ଗରଭୁ ଉଠିଲେ
ମୋ' ହୃଦରେ ତୁରେ ବିରାଜିବୁ,
କିରଣ ତୋ ବିଚ୍ଛୁରିତ କରି
ମୋ କୋଣାର୍କେ ରାଜା ବୋଲାଇବୁ ।

ବେଳାଭୂମି, ଝାଉଁ ବଣ ମାଳ
ହୋଇ ଥିବେ ଆମ ମଧ୍ୟେ ସାକ୍ଷୀ,
ଯେତେବେଳେ ତୋ କିରଣ ଆସି
ମୋ ଦେହରେ ଯାଇଥିବ ଲାଖି ।

ଚନ୍ଦ୍ରଭାଗା ନରସିଂହ ଦେବ
ନ ହୋଇବେ ଆମ ଅନ୍ତରାୟ,
ସୂର୍ଯ୍ୟ ଆଉ ଭଗ୍ନ କୋଣାରକ
ନ ଲଭିବେ କେବେ ପରାଜୟ ।

ମୁଁ ହୋଇବି ତୋହର ପୃଥିବୀ
ମୋ ଇଲାକା ପରିକ୍ରମା କରି,
ସନ୍ଧ୍ୟାର ସେ ଶୁଭ ଆଗମନେ
ମୋର କୋଳେ ଆସିବୁ ତୁ ଫେରି ।

ଭଗ୍ନ କୋଣାରକ ରାଜ୍ୟେ ମୋର
ହୋଇବୁ ତୁ ରାଜା, ମୁଁ ତୋ ରାଣୀ
ସଭିଏଁ ତ ଗାଇ ଉଠୁଥିବେ
ତୋର-ମୋର ପ୍ରେମର କାହାଣୀ !



# କୋଣାର୍କ

ଅକ୍ଷୟ କୁମାର ଖଟୁଆ

ମା' ମାଟିରେ ତୁହି ଧନ୍ୟରେ କୋଣାର୍କ
କେତେଲୋକ ଲୁହଲହୁରେ ହୋଇଛୁ ନିର୍ମାଣ ।

କଳାପାହାଡ଼ ସହିଲାନି ରାଜାଙ୍କ ଶିରୀ
କ୍ରୋଧେ କମ୍ପିତ ହୋଇ ଦେଲା ତୋ ଦେହ ଚିରି ।

ତଥାପି ସଗର୍ବେ ରହିଚୁ ତୁ ଠିଆହୋଇ,
ଓଡ଼ିଆ ଶିଳ୍ପୀ ଚାତୁରୀର ପ୍ରତୀକ ହୋଇ ।

ରାଜାଦେଶେ ବାରଶହ ଶିଳ୍ପୀ କଲେ ସୃଷ୍ଟି,
ତୋପାଇଁ ଧରମା ଅକାଳେ ପଡ଼ିଲା ଲୋଟି ।

ବିଶ୍ୱରୁ ଦର୍ଶକ ଦେଖି ହୁଅନ୍ତି ଚକିତ,
ଭୁରିଭୁରି ପ୍ରଶଂସାରେ ହୋଇ ଶତମୁଖ ।

ଥା'ନ୍ତା ଯଦି ତୋର ଜନମ ବେଳର ଶୋଭା,
ମୋନାଲିସାଠୁଁ ଦିଶନ୍ତୁ ବଡ଼ ମନଲୋଭା ।

କୋଣାର୍କ ପାଇଁ ଓଡ଼ିଶା ବିଶ୍ୱରେ ଚିହ୍ନିତ,
ବାରଶହ ଶିଳ୍ପୀ ହାତେ ହୋଇଲା ନିର୍ମିତ ।

ସୃଷ୍ଟିକରିଗଲେ ତୋତେ ପୂରୁବ ପୁରୁଷ,
ରକ୍ଷାକରି ପାରିଲୁନି ବେଗେ ହୁଏ ଧ୍ୱଂସ ।

ସୂର୍ଯ୍ୟ ଆରାଧନେ ରାଜା କରିଲେ ତିଆରି,
ରାଜାକୋଷ ନିଗାଡ଼ି ଶିଳ୍ପୀ ଶ୍ରମିକ ଧରି ।

ରାଜା ବୁଝିଲେନି ଶିଳ୍ପୀ ଶ୍ରମିକ ବେଦନା,
ଖଟାଇଲେ ଦିନରାତି ଦେଇଗଣ୍ଡା ଦାନା ।

ଏ ଯଶ କୀର୍ତ୍ତି ନୁହେଁ ସେ ନିଷ୍ଠୁର ରାଜାର,
ଯେ ରଖିଲା ତାଙ୍କୁ ପ୍ରିୟଜନଠୁ କରିଦୂର ।

ଶିଳ୍ପୀ ପ୍ରଶଂସାରେ ବିଶ୍ୱ ଆଜି ମୁଖରିତ,
ଧନ୍ୟ ହେଲା ଶିଳ୍ପୀକଳା ଓଡ଼ିଆ ଜାତିର ।।



# ଧରମା ଗଲା କାହିଁ

ବୃନ୍ଦାବନ ଜେନା

ସୁର ଶିଳପୀ ମୂରତି ଧରି-ଜାତୀୟ ଭାବ ହୃଦୟେ ଭରି
ଠିଆ ଯେ ଯୁଗେ ଯୁଗେ
ନୀଳାଭ ନଭ ଭାଗେ
ସିଏତ ଏକା ଜାତି ସ୍ୱାକ୍ଷର
ପ୍ରାଣ ପୀରତି ହୃଦ୍ୟ ମୁକୁର
ରଖିଲା ଦେଶ ଜାତିର ଟେକ
ବଳି ଦେଲା ଜୀବନ ବିବେକ
ଚାହିଁଲା ଅନୁରାଗେ
ସେ ପାଇଁ ଅବା ମରଣ ପାଳି
ପଡ଼ିଲା ତା'ର ଭାଗେ ?
ଅଣ ବାବୁଆ ଶବଦ ଶୁଣି-ମା' ସମ୍ମୁଖେ ଶିରକୁ ଝୁଣି
ବୁହାଇ ଅଶ୍ରୁଧାର
ପୁଛିଲା ମାତା କାହାନ୍ତି ପିତା
ଦେଖିବ ନେତ୍ର ମୋର ?
କହିଲା ମାଆ ଧନରେ ମୋର
ନୟନ ମଣି କଣ୍ଠର ହାର
ତୋ କୋହନୀର ମୋ ରକ୍ତେ ଗାର
ଗଲେଣି ସିଏ ବରଷ ବାର
ନୟନେ ଭରି ଅଶ୍ରୁଧାର

"ସୂରୁଜ ଯହିଁ ହସଇ ଅନୁରାଗେ
ସେଇଠି ଗଢ଼ାହୁଏ ଦେଉଳ
ଆକାଶ ଚୁମି ଟେକିବ ଚୂଳ
ସାଗର ମଧ୍ୟଭାଗେ
କୋଣାର୍କ ଭୂଇଁ ଭାଗେ
ସାଗର ଯହିଁ ପିଟଇ ମଥା ଶେଷ ମାଟି ସଙ୍ଗେ ।"
ବାପର ପ୍ରିୟ ବଦରି କୋଳି
ଥିଲା ଯା ବାରିଗଛରେ ଫଳି
ଧରମା ନେଲା ତୋଳି,
ନେଲା ସାଥିରେ ପୋଷା କୁକୁର
କେତେ ଯେ ଆଶା ସ୍ୱପ୍ନ ତାର
ଗଲାସେ ଚଳି ଲଂଘି ଅର୍ଗଳି ଗଳି ।
ଖରା କାକର ଶୀତ ବସନ୍ତେ
ଗମନ ଶ୍ରାନ୍ତେ... ପଥର ପ୍ରାନ୍ତେ
ଚାଲଇ ଢଳି ଢଳି
ନମାନି ଡରା ଆବେଗ ଭରା
ବଳିଆ ଆଗେ ଆଗେ
ସଂସାରଯାକ ଭୋକ ଉପାସ ପଡ଼ିଲା ତା'ର ଭାଗେ ।
କୋଳିକୁ ଖାଇ ଶିଳପୀ ବର
ପୁତ୍ର ରଭସେ ହେଲା ଆତୁର
ଚୁମିଲା ପୁତ୍ର ମଥା
ଗଡ଼ିଲା ଲୁହ ଧାରକୁ ଧାର
କହିଲା ନାହିଁ କଥା ମାତର
ତଳକୁ କଲା ମଥା ।
ଜୀବନ ଆତୁରତା ଅନ୍ତରେ ଭରି ବ୍ୟଥା
ଉଠିଲା ପୁଣି ବେଗେ

ଲୋକିଲା ନେତ୍ରେ କି ଅକସ୍ମାତେ
ମୃତ୍ୟୁ ଦେବତା... ତା'ର ସମ୍ମୁଖ ଭାଗେ ।
କହିଲା ବାବୁ ଏ ଶେଷ ରାତ୍ର
କାଲି ସକାଳୁ ଦେଖିବୁ ମାତ୍ର
ମସ୍ତକହୀନ କେବଳ ଗାତ୍ର
ରକତ ଧାର ସ୍ରୋତ
ମୁଁ ବୃଦ୍ଧ ନନ୍ଦ-ତୁ କଳା ଚାନ୍ଦ
ମୋ ଭାଗ୍ୟ ମନ୍ଦ-ପୂର୍ଣ୍ଣ ଯା କାନ୍ଦ
ସଫଳ ହେଲା ଜୀବନ ମୋର-ବେଦନା ଭାର
ଆଜି ଦେଖିଲା ନେତ୍ର ।
"ଗଢ଼ିଲୁ ଅନୁରାଗେ
ଚୂଳେ ବସୁନି ଦଧିନଉତି ପାହିବ ଯେବେ ଏକାଳ ରାତି
ଉଠିବେ ସୂର୍ଯ୍ୟ..., ପୂରୁବ ଅନୁରାଗେ
ପୂରୁବ ଦିଗଭାଗେ
ପଡ଼ିବ ଦୁଃଖ... ଶିଳପୀ କୁଳ ଭାଗେ ।"
ଲୋକି ଧରମା ଦେଉଳ ଚୂଡ଼ା
କଷିଲା ଅଙ୍କ ଟୋକା ମେଞ୍ଚେଡ଼ା
ଦଧି ନଉତି
କହିଲା ବାପା !
ବସିବ ଅଗ୍ରଭାଗେ,
ମନରେ ଦୃଢ଼ ଲାଗେ ।
କଷ୍ଟ ଯେ କିଛି ନାହିଁ ଏଥିର
ଅନୁମତି ମୁଁ ଲୋଡ଼େ ମାତର ଦେଖାଇ ଦେବି ଶିଳ୍ପୀ ଚାତର
ଘୁଞ୍ଚାଇ ଦେବି ଜ୍ଞାତି କାତର... ଆଉ ହୁଅନା ପ୍ରାଣେ ଆତୁର
ହସିବେ ଜ୍ଞାତି-ଉଠିବେ ମାତି
ଆବେଗେ ଅବା ପୂର୍ଣ୍ଣତା ସରାଗେ

ସେ ପାଇଁ କିବା ଜାତିର ରାଗ     ପଡ଼ିଲା ତା'ର ଭାଗେ ?
ଉଠିଲେ ହସି ଶିଳ୍ପୀ କୁଳ -     ନୁଖୁରା କଥା ବୟସ ବାର
ସିଏ ଗଢ଼ିବ ଚୂଳ
ବାରଣ' ଜାଣିପାରିଲେ ନାହିଁ     ଯାହାର ଆଦିମୂଳ
ସୁମରି ଆଦି ମୂଳ... ଆଉ କରନା ଗୋଳ ।
ଧରମା ଅନୁରୋଧେ     ବୃଦ୍ଧ ବିଶୁର ବାଧେ
ଶିଳ୍ପୀଏ ଦେଲେ ଅନୁମତି -     ଉଠିଲା ହସି ନିର୍ଜନ ରାତି
ବାଳୁତ ଶିଳ୍ପୀ     ଉଠେ ଦେଉଳେ ଶ୍ରଦ୍ଧେ ।
ମାରିଲା ମୁଣ୍ଡି ଶିଶୁ ଧରମା
ବିନ୍ଧାଣୀ କୁଳ ଜାତ କରମା
ଚୂଳୁ ଓହ୍ଲାଇ ବନ୍ଦିଲା ପିତାପଦ
ବିଶୁର ମନ କୁଣ୍ଢେମୋଟ-ବାଳୁତ ପୁଅ ଶିଳପୀ ରାଟ
ନ ପାରେ କହି ଆନନ୍ଦେ ଗଦଗଦ ।
କିଶୋର ଶିଳ୍ପୀ ନିଦ୍ରା କୋଳେ
ପାଇଲା ଶାନ୍ତି ଅବହେଳେ
ଶୋକାର୍ତ୍ତ ବାର୍ତ୍ତା ଖେଳି
ସରବ ଶିଳ୍ପୀ ହୋଇଲେ ମେଳି
ବସିଲା ସଭା     ଶିଳ୍ପୀବୃନ୍ଦଙ୍କ ମେଳେ,
ଉଠେ ଗୁଂଜରି କଣ୍ଠରୁ କଣ୍ଠ
ଶୁଣିବେ ରାଜା ହଟ ଚମଟ
ତିଳ ହୋଇବ ତାଳେ-ବିନ୍ଧାଣି କୁଳ ମାନ ମର୍ଯ୍ୟାଦା
ରଂଗ ପରଦା
କ୍ଷଣେ ଲୋଟିବେ ତଳେ ।
ପୂର୍ବୁ ଧରମା ହୋଇଲେ ଶେଷ
ରହିବ ନାହିଁ ରାଜାଙ୍କ ରୋଷ
ପୁଅର ପ୍ରାଣ ନାଶ,

କରିବ ନିଜେ ତା ବାପ ବିଶୁ... ଦିଅ ଧରାଇ କରରେ ପର୍ଶୁ
ରହିବ ନାହିଁ ଦୋଷ
ଦିଅନି ଅବକାଶ ।
"ପୁଷ୍ପେକି କୀଟ କରି ପ୍ରବେଶ    କାଟିଲା ପରାଗେ
ସେ ପାଇଁ ଅବା ସମସ୍ତ ଦୁଃଖ ପଡିଲା ବିଶୁଭାଗେ"
ଗଢୁଛି ଜଳ ପଡୁଛି ତଳ
ଚାହେଁ ଅବନୀ ଭାଗେ ।
ଉଠିଲା କାନ୍ଦି ବିଶୁର ପ୍ରାଣ
ଲୁହାରୁ ବଳି ଛାତି ଯା' ଟାଣ
ଦୁଃଖ ହୋଇଲା ବାଇ
ଉଠେ ଗୁଂଜରି କହରେ ବିଶୁ
ପୁଅରେ ଦାୟୀ-କିବା ଜାତିର ଦାୟୀ ?
ଧରାଇ ଦେଲେ ଶାଣିତ ଛୁରୀ
ଉଠିଲା ପିତୃ ହୃଦୟ ଥରି
ନୟନୁ ଝରି ପଡିଲା ବାରି
ସାହସ ବାନ୍ଧି ଭୋଳେ
ଛୁଟିଲା ବସା ଆଳେ
ଦେଖିଲା ପୁତ ଅଛି ଶାୟିତ    ଶାନ୍ତି ନିଦ୍ରା କୋଳେ ।
କରୁ ପଡିଲା ତୀକ୍ଷ୍ଣ ଛୁରୀ
ଉଠିଲା ପୁତ୍ର ଚେତନା ଭରି
ଜ୍ୟୋତ୍ସ୍ନା ସାଡେ-ବିଲୋକେ ଛୁରୀ ବିଭା
ସାଦରେ ପିତା... ସଂସାର ପିତା
ମଣି ସେନେହେ ଗଣ୍ଡେ କରଇ ଗେଲ
ଦର୍ଶନେ ସର୍ବ ବିନ୍ଧାଣୀ ହେଲେ କାବା !
"ଡାକିଲେ ଶିଳ୍ପୀ    ବିଶୁକି କହି
ଏଡିକି ଭୀରୁ କାପୁରୁଷ ତୁ

ଜାତିର ରକ୍ଷା ପାଇଁ
କହରେ ବିଶୁ   ପୁତ୍ରରେ ଦାୟୀ
କିବା ଜାତିରେ ଦାୟୀ ?"
ବେଳକୁ ବେଳ ବଢୁଛି ଦୁଃଖ
ବୃଦ୍ଧ ସ୍ଖଳିତ ମୁଖ ଅଶ୍ରୁଳ
ବେଦନାସିକ୍ତ ପ୍ରାଣ,   ବିଷଣ୍ଣ ମ୍ରିୟମାଣ,
ପାରେନା ଜାଣି   ଆପଣେ ମଣି
ଅଛିବା ପ୍ରାଣ ଅବା ସେ ମୁହ୍ୟମାନ ।
ଧରୁଛି ଛୁରୀ ପଡୁଛି ତଳ
ନୟନୁ ଝରି ପଡୁଛି ଜଳ
ଚିନ୍ତୁଛି ଅପଘନ,
"ସମଗ୍ର ବିଶ୍ୱ ଯିବ ପରଶି
ବୁହାଇ ଦେବ ଧାରା ବରଷି
ପ୍ଳାବିତ ହୋଇ ଛନ ।"
ହେବ ସେ ବନ୍ୟା କରିବ ନିଃସ୍ୱ... ପ୍ରାଣରେ ଭରି ହାହତାଶ
"ପ୍ରାଣ ସର୍ବସ୍ୱ   ଭାଂଗିବ ବାସ
କରି ଫୁକାର...   ରଚିବ ହାହାକାର
କରିବ ଏକାକାର ।"
ବାପ ହୋଇ ମୁଁ   କିପରି ତୋରେ ହତ୍ୟା କରିବି
ସହିବ ମୋର ଦେହ
ଦେଖିବି ରକ୍ତ ସୁଅ   କହରେ ଧନ କହ ?
ବାପରେ ତୁ ମୋ କୁଳଚନ୍ଦ୍ରମା
ନୟନମଣି ଗର୍ବଗରିମା
ନୟନ ପାରିଜାତ
ସୁରଭି ଦଳଶତ
"ହୋଇଛି ମୋର ଜୟ   କରିବି ନାହିଁ ଭୟ

ଜାତିର ହେଉ ମୁଣ୍ଡକାଟ ପୁଅରେ ହେବି ଦାୟ ।"
"ମମତା ଯହିଁ ଜାଗେ
ମମତା ତହିଁ ମମତା ଖାଲି ମାଗେ
ମମତା ଅନୁରାଗେ
ମମତା ଝର ବେଦନା ଗାର
ଲୋତକ ଧାର
ବାପ ପୁଅଙ୍କ ଭାଗେ ।"
ଓଡ଼ିଆ କୁଳ ମଉଡ଼ ମଣି
ଯଶ ଗୌରବ ବିଭବ ଖଣି
ବନ୍ଦିଲା ପଦ ପିତାର ପୁଣି
କରିଲା ଅନୁନୟ
"ମରଣ ଏକା ଜନମ ସାଥି
ଦିବସ ପରେ ଆସଇ ରାତି
ମୃତ୍ୟୁ ତ ଦିନେ ଜୀବନେ ଆସେ
ତାହା ମୋ ଶ୍ରେୟ ପ୍ରେୟ ।"
"ଜାତିର ଲାଗି ଜୀବନ ଯା'ର
ଦେଶର ଲାଗି ରକତ ଧାର
ସଦା ଉତ୍ସର୍ଗୀକୃତ
ସଫଳ ତାର ପ୍ରାଣ ମାତର
ଧନ୍ୟ ତା ପିତାମାତ ।"
କାନ୍ଦିବେ ଏକା ପିତା ଓ ମାତା
"ବଂଚିବେ ସବୁ ମୋ ଜାତି ପିତା
ରଖିବେ ସନମାନ
ଜାତିର ଭାଲେ କୋଟି କୋଣାର୍କ
ହୋଇବ ଉତ୍‌ପନ ।"
ବନ୍ଦି ପିଅର ଯୁଗ୍ମ ପୟର

ଉଠେ କିଶୋର          ଶିଖରୀ ଚୂଳ
ଯୋଡ଼ିଲା ଯୁଗ୍ମକର
ହେ ଜଗନ୍ନାଥ ମୋ ପ୍ରାଣନାଥ
ଘେନ ପ୍ରଣତି ମୋର ।
ସୁଦ୍ଧା ଭକତି ଯୋଗେ
ଛିନ୍ନ ବୀଣା ତନ୍ତ୍ରୀରେ ଗୀତି          ତୋଳିଲା ଅନୁରାଗେ
ସେ ପାଇଁ ଅବା ପରର ସୁଖ
ପରମ ସୁଖ
ସକଳ ଦୁଃଖ          ପଡିଲା ତା'ର ଭାଗେ ?
ପଡିଲା ଡେଇଁ ଶିଳପୀ ଚତୁର
ଚହଲି ଗଲା ନୀଳ ସାଗର
ଢେଉ ମସ୍ତକେ-ପିଟିଲା କୂଳେ ମଥା
ଦର୍ଶାଇ ମର୍ମ ବ୍ୟଥା ।
"ଉଠିଲା କାନ୍ଦି ଶିଖରୀ ଚୂଳ... କୁଂଜ କାନନ ମାଳ
ଉଠରେ ପୁତା କାନ୍ଦେ କପୋତୀ
ସାଥିରେ ଦେଇ ତାଳ ।"
"ପୂରୁବ ଆକାଶେ-ଅରୁଣିମା ଗଲା ଛୁଇଁ,
ସୁରୁଜ ଉଠିଲେ ଉଇଁ
ଜାତିର ଆର୍ଯ୍ୟ          ଉଦୟ ସୂର୍ଯ୍ୟ
ବିଲୀନ ଗଲା ହୋଇ ।"
ବାଇଆ ବିଶୁ କାନ୍ଦିଲା ବସି..
ଉଭେଇ ଗଲା ତା ହୃଦ ଶଶି
ପାଗଳ ହୋଇ ଛୁଟିଲା ଏଣେତେଣେ
ଦେଖିଛ କେହି ଗଲା ସେ କାହିଁ....
ଲୁଚିଛି ଅବା କେଣେ ?

ଅଣ୍ଡାଳେ କୋଣେ କୋଣେ ।
କାନ୍ଦରେ ତା'ର କାନ୍ଦିଲା ବଣ ଭୂଇଁ
କହରେ ଭାଇ ଧରମା ମୋର କାହିଁ
କାରେ ବଂଚିବି ଚାହିଁ ଧରମା ଗଲା କାହିଁ ?
"କିଏ କହୁଛି ଧରମା ମୋର ନାହିଁ
ଶାଶ୍ୱତ ସେ ଯେ-ଅମର ସେ ଯେ-କାଳ ପାରେ ନା ଛୁଇଁ ।"
ନିର୍ମାଣିଲା ଯେ ଦେଉଳ ଚୂଡ଼ା
ଶୋଭିଲା ଶୋଭା ରାଣୀର ଜୂଡ଼ା
ବିଶ୍ୱ ଅନୁରାଗେ
ଜାତି ସର୍ବସ୍ୱ ବିଶ୍ୱର ବିଶ୍ୱ
ମରଣ ପାଳି ପଡ଼ିଲା ତା'ର ଭାଗେ
କୋଣାର୍କ ଭାଗେ ସୂର୍ଯ୍ୟ ଉଠନ୍ତି ଉଇଁ
ଧରମା ଗଲା କାହିଁ... ଧରମା ଗଲା କହିଁ ।
ଧରମା ଗଲା କହିଁ ?



# ଶିଳାକନ୍ୟା

ବାସନ୍ତୀ ମିଶ୍ର

ମୁଠା ମୁଠା ଲୁହ ଭିଜା ବାଲିକୁ ମୁଠେଇ
କୋଣାର୍କ କୁଆଁରୀ କନ୍ୟା ଝରାଉଛି ଲୁହ
ବିକଳେ ଖୋଜୁଛି ଆଉ ବାହୁନି କାନ୍ଦୁଛି
ହେ କାଳ ରଖିଛ କାହିଁ ମୋ ଶିଳ୍ପୀକୁ କୁହ ॥
ଆସ ଶିଳ୍ପୀ କାଳ କୋଳୁ ଆଖି ଖୋଲି ଦେଖିନିଅ
ତୁମ କରଣୀର ଏଇ ଦୟନୀୟ ରୂପ
ଶିଉଳୀର ଅରଣ୍ୟରେ ଯାଇଛି ନିଦେଇ
ବରଣିଛି ସମୟର କ୍ରୂର ଅଭିଶାପ ॥
ଶିବେଇ ସାମନ୍ତରାୟ ଉଠିଆସି ଅତୀତ କୋଳରୁ
ବର୍ତ୍ତମାନ ପାଖେ ରହ କ୍ଷଣେ ସ୍ଥିର ହୋଇ
ନୃତ୍ୟ କରେ ଶିଳା କନ୍ୟା ଇତିହାସ ଘୁଙ୍ଗୁର ବଜେଇ
ଫେରିଆସ "ବିଶୁ ମହାରଣା" ଉତ୍ତର ଦାୟାଦ
କହେ:
ଦିଅତୁମ ନିହାଣ ମୁଗୁର
ଧର୍ମପଦ ଛାଡ଼ିନିଅ ଅୟି ! ଚନ୍ଦ୍ରଭାଗା
ଗଢ଼ିବାକୁ କୋଟି କୋଟି କୋଣାର୍କ ମନ୍ଦିର ॥



# କୋଣାର୍କ

ଲେଲିନ କୁମାର

କିଏ କାହାର ଦାୟ ରହେନାଇଁ,
ସାତସିଆଁ ଓଠ ଥାକଥାକ
ଥାଏ ମନ୍ଦିର ।

ମନ୍ଦିର ଗଡ଼୍ଡ଼ୁ ଗଡ଼୍ଡ଼ୁ
ଅଟକିଯାଏ ନିଃଶ୍ୱାସ,
କୁଆଡ଼େ
ଓଲଟ ଗଛ ଡାଳରେ
ଝୁଲିରହେ
ଗୋଟେ ବଢ଼େଇର ଡାକ :
ବାପା, ଭୋକ, ବାପା, ଭୋକ ।

ଛାଡ଼ି ଆସିଥିବା ଗାଁ
ପଛରେ ପାକୁଳଉଥାଏ
ଧୋଇ ମଗୁଡ଼ିର କ୍ଷେତରୁ ଅଗଣା
ଧାନ ଉଷୁଆଁ ବାସ୍ନା,
ପଡ଼ିରହେ
ଦାଦନ ଆତ୍ମା ।

ନିଜ ନିଜ ନିର୍ଦ୍ଧାରିତ ଅନ୍ଧାର ନେଇ
ଖଣ୍ଡେ ଭୂଇଁ

ସାଲୁବାଲୁ ପୋକମାଛି
ନର୍ଦ୍ଦମାରେ
ଛାଇ
ଛିଣ୍ଡାଫୁଲ,
କାହାର ନାଁ ନାଇଁ ।
ସାତସିଆଁ ଓଠ ଥାକଥାକ ମନ୍ଦିରର
ମୁଣ୍ଡି ମାରିବାକୁ ଯାଇ
ବଳି ପଡ଼େ
ବାରବର୍ଷର ଗୋଟେ ବୁଢ଼ା ଈଶ୍ୱର ।

ଚୁପ୍ ବଂଶୀ, ମୃଦଙ୍ଗ, ଘୁଙ୍ଗୁର
କୁଞ୍ଜବନ, ଚୌଷଠି ଆସନ,
ଚୁପ୍ ଘୋଡ଼ା, ହାତୀ, ଖଣ୍ଡା, ଥାଳ
ଆଜ୍ଞା, ବିଧାନ ।

ଏମିତି ମରିବାକୁ ହିଁ
ବଞ୍ଚିରହେ ମୁଁ,
କିଏ କାହାର ଦାୟ ରହେନାଇଁ ।



# କୋଣାର୍କ

ସୁରେଶ ଚନ୍ଦ୍ର ଜେନା

ହେ କୋଣାର୍କ ! ବିଶୁ ମହାରଣା !
ାରଣ ବଢ଼େଇ ! ଧର୍ମପଦ !
ମେ କୁହ, ସାତଶ ବର୍ଷର ସ୍ମୃତି
ତବ ମୁଖେ ଫୁଟିଉଠୁ କଥା
ଅତୀତ ଗୌରବ ଗାଥା ।
ଓଡ଼ିଆର ନିହାଣ ନିପୁଣ ପୁଣି ଶିଳ୍ପୀର ମର୍ଯ୍ୟାଦା
ଓଡ଼ିଶାର ଆଭିଜାତ୍ୟ, କଳା କଉଶଳ ତମ ଦେହେ ଲେଖା ।
ଆମେ ବିଂଶ ଶତାବ୍ଦୀର ମଣିଷ
ଆମେ ତମକୁ ଖୋଜୁଛୁ ଶତ ଦୀପାଳୀ ଜାଳି ।
ଶୁଣାଅନା ତମେ
ମୂର୍ତ୍ତିମାନଙ୍କର ହୃଦୟ ଫଟା ଆର୍ତ୍ତନାଦ ।

x x x

କୋଣାର୍କଟା ସତେ ଅବା ବାହୁନି କାନ୍ଦୁଛି,
ତା ଛାତିରୁ ଅତଡ଼ା ଖସୁଛି
ସତେ ଅବା କୋଣାର୍କଟା ସରିଯିବ,
ସରିଯିବ ଓଡ଼ିଆର ମାନ, ଗଉରବ ।
ନା, ଆମେ ତମକୁ ଜାବୁଡ଼ି ଧରିବୁ
ଆମେମାନେ ତମରି ଦୟାଦ
ତମେ ଆମକୁ ଆଶୀର୍ବାଦ କର
ତମ ସ୍ମୃତି ମୁଣ୍ଡରେ ମୁଣ୍ଡେଇ
ଗଢ଼ିଯିବୁ ଅନେକ କୋଣାର୍କ ।



# କୋଣାର୍କ

ବାସୁଦେବ ମିଶ୍ର

ଭଗ୍ନ ମୁଖଶାଳାର
ଶିଳା ଦେହରୁ
ଆଜି ବି ତୁମ ରକ୍ତର
ବାସ୍ନା ଆସେ ।
ନିଃଶବ୍ଦ ରାତିରେ
ତୁମ ନିହାଣ ମୁନର ଠକ୍ ଠକ୍
ଶବ୍ଦ ଶୁଭେ ।
ଝାଉଁ ଗଛର ରିମ୍‌ଝିମ୍ ସଙ୍ଗୀତର
ସାଗର ନୃତ୍ୟରେ
ତୁମ ସ୍ମୃତିର ସଙ୍ଗୀତ
ଭାସି ଆସେ ।
ତୁମ ଚାରୁକଳାର, ସୌନ୍ଦର୍ଯ୍ୟର ନଗରୀ
ଆଜି ବି ପୁଲକିତ କରେ
ମଣିଷର ମନ
ଆଜି ବି ମୁଖଶାଳାରେ ରବି
ମଥା ପିଟେ ।
ତୁମ ଚିତ୍ରପଟ ଝଲସି ଉଠେ
ଚନ୍ଦ୍ରଭାଗାର ବେଳାଭୂମିରେ ।



# ବାରଶ' ବଢ଼େଇ

ପିନାକୀ ମିଶ୍ର

ତୁମକୁ ପରଶଂସିବା ଛଡ଼ା
ଆମେ ଆଉ କ'ଣ କରିପାରୁ( ! )
ଯେତେଥର ସେଠିକି ଯାଉ
ଆଙ୍କୁ ତମର ଝାଲୁଆମୁହଁ-ମନସ୍କ ଆଖି
ଆଶ୍ଚର୍ଯ୍ୟ ପାଲଟିଯିବାର ପାଗଳପଣ
ଆଉ ସେପାଖେ –
ନିପଟ ଗାଁର ଉର୍ମିଳା କୋହ – ଅସରା ଲୁହ,
କଳାଶିଳ୍ପର ମହୁମାଠିଆରେ – ମାଛି ଅଜସ୍ର ।
କି କଥା କହିବ କୋଣାରକ !
ସବୁ କାମ ସାରିଦେଇ
ରଜାଠୁ ମେଲାଣି ନେଇ
କୁଆଡ଼େ ଗଲ !
କଉ ଘରକୁ ପୁଣି ଆପଣା ଦାବିରେ !
ବାଲୁତ ଧନକୁ ଠେଲିଦେଇ ନୀଳଗର୍ଭକୁ
ଦେଇଛ କି କଳାର ଆହୁତି ?
ଖାଲି ତୁମକୁ ଝୁରୁଥିବୁ ଚିରକାଳ
ଖାଲି ପାଷାଣ ସୁନ୍ଦରୀ ଲୁହ ଢାଳୁଥିବ–
ନିଶାର୍ଦ୍ଧେ ନୀରବେ !
ତା' ଭିତରେ କ'ଣ ପୋତି ହୋଇଗଲା

କୁଳକର୍ମ-କଳାର କାଉଁରୀ
ସମୁଦ୍ର କ'ଣ ଭସେଇନେଲା—ଭାସ୍ୱରଚେତନ ?
ଲୁଣି ହାୱାରେ କି ମିଳେଇଗଲା—ସୁବର୍ଣ୍ଣ ସମୟ,
ଏମିତି କେତେ ବାଧିଲା...
ଲୁହ-ଲୁହର ସଞ୍ଜସକାଳ !
ଜାଣିଛ—କୋଣାର୍କ ପାଇଁ ତ' ତମେ ବି ବିସ୍ମୟ
ଆମେ ସବୁ ଅଜ୍ଞ ଅପାରଗ— ନିହାତି ମାମୁଲି ।



# ପାଷାଣୀ କନ୍ୟା

ଜ୍ୟୋତିର୍ମୟୀ ଦାଶ

ତୁମେ ଗୋ' ଦେଇଛ ଶିଳ୍ପୀର ମନେ
ଜୀଇଁବାର ମଧୁରତା
ପାଗଳ କରିଛି ଅନ୍ତର ତା'ର
ତୁମର ଏ ନୀରବତା ।
ତୁମରି ଚରଣ ନୂପୁର ଛନ୍ଦେ
କବିତାର ନିଶା ମାଖି
ନୃତ୍ୟରତା ଗୋ' ପାଷାଣ ଗାତ୍ରେ
କା' ଲାଗି ରହିଛ ଲାଖି ?

ନୟନର ଧାରେ ଭରି ଦେଇ ଶତ
କବିତାର ମଧୁ ନିଶା
କା'ରେ ଖୋଜ ନିତି ନୀରବେ ନୀଶିଥେ...
ଭରି ମିଳନର ଆଶା
ଅଧରୁ ତ ତୁମ ହସ ମଉଳିନି
ଝରିନି ତ ଆଖି ଲୁହ !
ଯୁଗ ଯୁଗ ଧରି ପାଷାଣୀ କନ୍ୟା
କା' ପଥ ଚାହିଁଛ କୁହ ।

ଏଇ ପୃଥିବୀର ମରୁ ପ୍ରାନ୍ତରେ
ତୁମେ ଚିର ମଧୁମୟ

କବି ଲେଖନୀର କବିତା ବୀଣାରେ
ନୂତନ ସୁର ଜଗାଅ
କେଉଁ ଶିଳ୍ପୀର କନ୍ୟା ଗୋ' ତୁମେ
କା' ଜୀବନ ମଧୁ ସ୍ୱପ୍ନ ?
ରୂପ ସୁରା ଦେଇ ପ୍ରତି ଜୀବନରେ
ଭରିଦିଅ ଶୁଭ ଲଗ୍ନ ।

ଭରା ଯୌବନେ ରହି ନିର୍ଜନେ
କା' ଲାଗି ସହ ଏ ବ୍ୟଥା ?
ଶିଳ୍ପୀର ପ୍ରାଣେ ଭରିଦେଇ ତା'ର
ଶିଳ୍ପର ସାରବତ୍ତା ।
ମନ ଚାହେଁ ଆଜି ତୁମରି ପାଖରୁ
ବିଦାୟ ନ ନେଇ ସଖୀ
ତୁମରି ଦେହର ପ୍ରତିଟି ରେଖାରେ
ମୋତେ ମୁଁ ଯାଆନ୍ତି ଲେଖି ।



# ଶିଳ୍ପୀ

ଯୋଗୀନ୍ଦ୍ରନାଥ ପାଇକରାୟ

ହେ ଶିଳ୍ପୀ ! ଫେରି ଆସ ସମାଧିରୁ ।
ଦେଖ ଥରେ ତୁମ କୋଣାର୍କର ସମାଧିକୁ,
ବାଲୁକା ଶଯ୍ୟାରେ ଅଭିଶପ୍ତ ଆତ୍ମାଟିର
ନୀଳ ଲହରୀ ଜଳରେ ତିଳ ତର୍ପଣ,
ସ୍ଥପତି ଜାତିର ନବ ରବିକୁ ଇତିହାସର
କୁହେଳି ଘେରରୁ ଉଦ୍ଧାର କରିବାକୁ
ସାଗରର ସହସ୍ର ହସ୍ତର ପ୍ରସାରଣ
କେବଳ ଗତ ଗୌରବକୁ
ଜୀର୍ଣ୍ଣୋଦ୍ଧାର କରିବା ପାଇଁ ।

ପାଷାଣ ଜୀବନ୍ୟାସ ପାଇଲା ପରେ
ଶୈଳ ଶୈଳୂଷୀ ଓଠର ହସ, ନୂପୁରର ରୁଣୁଝୁଣୁ
କଳାବତୀର ଚଉଷଠି ଶୃଙ୍ଗାର, ପାଇକର ରଣ ହୁଙ୍କାର
ନବ ରସର ନିର୍ଝର, ଶିଳାପଦ୍ମର ସୌଷ୍ଠବରେ
କାଳ-ଅଳନ୍ଦୁ ଲାଗି ଯାଇଥିବା ବେଳେ
ହେ ସ୍ରଷ୍ଟା ପାଷାଣ ଅହଲ୍ୟା ପାଲଟି ଗଲ
ରାମ ରାଜ୍ୟକୁ ଅପେକ୍ଷା କରି କରି ।

ତୁମର ନର୍ତ୍ତକୀ କେତେ ସ୍ୱଦେଶୀ ବିଦେଶୀ
ରସିକଙ୍କୁ ଆକୃଷ୍ଟ କରିବା ପରେ

ପଦ୍‌ଗାଳି ବସିଛି ପାଲାମ ଏୟାର ପୋର୍ଟରେ
ବିଦେଶୀ ବ୍ଲାକ୍ ମେଲରଙ୍କ ସହ ଖସିଯିବା ପାଇଁ,
ଗୋରା ସମ୍ରାଟଙ୍କୁ ତୁମ କଳା-ଅଙ୍ଗୁଳି
ଭେଟି ଦେଇ ଏକଲବ୍ୟ ପରି
ଜାତିର ଆକାଶରେ ଅମାବାସ୍ୟାର କାଳିମା
ବୋଳିଦେଲ ନିହାଣରେ ଶୂନ୍ୟସହ ଶୂନ
ଗୁଣନ କରି ।
ଇତିହାସକୁ ରୋମନ୍ଥନ କରୁକରୁ ନିରିମାଖି
ଆଖିର ଲୁଣିଆ ଲୁହରେ ସାଗରର ପୂର୍ଣ୍ଣତା ଆସେ,
ରାଜତନ୍ତ୍ରର ଅଟଳ ଆଦେଶକୁ ପାଳୁ ପାଳୁ
ଦୀର୍ଘଶ୍ୱାସରେ ଉର୍ଦ୍ଧ୍ୱଗାମୀ ହୋଇଯାଅ,
ତପ୍ତପ୍ରାଣ-ପାହାଡ଼ରେ ଭାରସାମ୍ୟ ରଖିନପାରି
ସପ୍ତାଶ୍ୱ ଶକ୍ତି ସମ୍ପନ୍ନ 'ଏକ ଚକ୍ର' ଅଟକି ଯାଏ
ବିସ୍ତୀର୍ଣ୍ଣ ସୈକତରେ
ସବୁ ଦେଖିଥିବା ଆକାଶକୁ ସାକ୍ଷୀ ରଖି ।



# ଭଙ୍ଗା କୋଣାରକ ଧୂଳିରେ ଲୋଟୁଛି

ଅଲେଖ ଚନ୍ଦ୍ର ପଢ଼ିଆରୀ

ଭଙ୍ଗା କୋଣାରକ ଧୂଳିରେ ଲୋଟୁଛି
ବୁକୁରେ ଅସୀମ କୋହ,
ନିରିମାଖି ମାଆ ନିରେଖି ଦେଖୁଛି
ଆଖିରେ ଭରିଛି ଲୁହ... ।୦ ।
ନିଦ୍ରିତ କିବା କଳିଙ୍ଗର ସେନା
ଶିରୀକି ଗଲାଣି ତୁଟି,
ସପନ ଦେଖଇ ଧଉଳି ପାହାଡ଼
ଚେଇଁଉଠେ ବାରବାଟୀ ।
ଡାକୁଛି ଜନନୀ ବାରବାଟୀ ମଡ଼ା
ଗଉରବେ ଠିଆ ହୁଅ... ।୧ ।
ବାଜି ରାଉତର ବାରତା ଆସିଛି
କଳିଙ୍ଗର ସେନାଗଣ,
ହାତ ଓରି ଡାକେ ଧରମପଦ
ସ୍ୱାଭିମାନୀ ଆବାହନ ।
ଖଣ୍ଡା କୁଶଳ ଓଡ଼ିଆ ପାଇକ
ସୁପ୍ତ ହେଲ କି କୁହ ?... ।୨ ।
ତୁମରି ଡାକରେ ନିନାଦିତ ହୋଇ
ଗଙ୍ଗାଠୁଁ ଗୋଦାବରୀ,
ହୃତ ଗଉରବ ଫେରିଆସୁ ଥରେ
ସଉରଭ ଆସୁ ଫେରି ।
ନୟନ ପଖାଳି ଜାଗ୍ରତ ହୁଅ
ଆଗାମୀ ବାରତାବହ... ।୩ ।



# କୋଣାରକ ଶିଳାକଳା

ନାରାୟଣ ପାଢ଼ୀ

କୋଣାରକ ଶିଳାକଳା,
ଓଡ଼ିଆ ଜାତିର ବିଶ୍ୱଖ୍ୟାତିର ଶିଳା ଲେଖଚିତ୍ର ଶାଳା ।
ବାସନ୍ତୀ ସୁମନ ସୌରଭ ସମ୍ଭାରେ
ପ୍ରିୟ ପ୍ରେୟସୀର ପ୍ରୀତି ଉପହାରେ ।
ହସୁଛି, ନାଚୁଛି ପାଷାଣ ପ୍ରତିମା-ଠାଣିରେ ଢଳାଇ ଡୋଳା ।୧ ।
କେତେ ପ୍ରତିଭାର ଛବି,
ପାଷଣ ବୁକୁରେ ନିତ୍ୟ ଲୀଳାୟିତ—ଦେଖି ଚିତ୍ତ ଯାଏ ଦ୍ରବି ।
ଶିଳା ତନୁରେ ଯେ ଅତନୁର ଖେଳା
ନର ଜନମର ଚିରନ୍ତନ ଲୀଳା ।
ସ୍ୱେଦ, ସଂଯମରେ ପ୍ରାଣବନ୍ତ କଳା—ନିହାଣ ମୁଗୁର କବି ।୨ ।
ଜଗତର ନାଥ ସାହା,
ଜନମ ମାଟିର କଳା ବିଳାସକୁ—ପ୍ରଶଂସି ଟେକିଛି ବାହା ।
ଓଡ଼ିଆ ଜାତିର ସଂସ୍କୃତି ପ୍ରତୀକ ।
ବିଶ୍ୱଦରବାରେ ରଖୁଛି ସେ ଟେକ ।
କଳି ତ ହୁଏନି କୋଣାରକ କଳା-ଶିଳାମହାକାବ୍ୟ ଯାହା ।୩ ।
ଗଙ୍ଗ ନରପତି ନରି,
ନରସିଂହ ଥିଲ କାଳସିଂହ ନୁହ-କାଳସିଂହ ଦେଲାମାରି ।
କୋଣାର୍କ ଶିଳାର ଅକ୍ଷୟ କଳା ।
କାଳେ କାଳେ କାଳଜୟୀ ସେ ରହିଲା ।
ଅ-ମୃତ ତୁମ କୀର୍ତ୍ତି ମୂରତି-ଅମ୍ଳାନ ତାହାର ଶିରି ।୪ ।

ଅଶ୍ଳୀଳ ସେ କୁହନାହିଁ,
ପାଷାଣୀ କନ୍ୟାର ଅନାବୃତ୍ତ ବକ୍ଷ-ଜାନୁ ଯଉବନ ଚାହିଁ ।
ବୁକୁତଳେ ତା'ର ଅନନ୍ତ ଭାବନା ।
ଅପେକ୍ଷମାଣା ସେ ତେଣୁ ଉନ୍ମନା ।
ଶିଳ୍ପୀ ପ୍ରିୟାର ପ୍ରତୀକ୍ଷା ଦରଦି-ହୃଦୟ ଉଲ୍ଲାସ ନେଇ ।୫ ।
ନବରସ ସାହିତ୍ୟର,
ଶିଳା ସାହିତ୍ୟ ଏ କୋଣାରକ ଗାତ୍ରେ କରିଛନ୍ତି ସର୍ବେ ଘର ।
ସୃଷ୍ଟି ମୂଳ ତତ୍ତ୍ୱ ଶୃଙ୍ଗାର ରସ ।
ଆଦିରସ ଏଣୁ ଜଗତ ମାନସ—
ବିମୋହିତ କରେ ମନ୍ଦିରେ ମୂଳ ଭକ୍ତ ଭକ୍ତି ପରୀକ୍ଷାର ।୬ ।
ଜୀବନ ଲଭିନି ସତ,
ଜଣାଯାଏ ଯେହ୍ନେ ପାଷାଣ ମୂରତି — ଜୀବନ ସଂଗ୍ରାମେ ରତ ।
ନୃତ୍ୟ ବାଦନରେ ଚଳ ଚଞ୍ଚଳ ।
ଆଳାପନା ସ୍ୱରେ ମୁଖର ଚହଳ ।
ବିଶ୍ୱକର୍ମାର ବଂଶଜ ଶିଳ୍ପୀ—କଳା ତୁମ ପ୍ରାଣବନ୍ତ ।୭ ।
ଆସ ଲୋ ସଜନୀ ଆସ,
ତନ୍ମୟ ହୁଅନା ଦେଖି ଦେଖି ଖାଲି—ନଗ୍ନ ମୂରତି ରାହାସ ।
ରାଜା ନରସିଂହ ଦିଗ୍ ବିଜୟ କରି ।
ବିଜୟ ଉଲ୍ଲାସେ ଆସୁଛନ୍ତି ଫେରି ।
ବଇରୀ ଦଳନ କୋଣାର୍କ ନିର୍ମାଣ—ଦେଖ ତାଙ୍କ ଯଶ ବେଶ ।୮ ।
ଧନ୍ୟ ନରସିଂହ ରାଜ,
ଧନ୍ୟ ଧନ୍ୟ ତୁମ କୋଣାର୍କ କୀରତି — ଧନ୍ୟ ହେ ଶିଳ୍ପୀ ସମାଜ ।
ଉଡ଼ାଇଲ କୀର୍ତ୍ତି ଧ୍ୱଜା ଉତ୍କଳର ।
ଧନ୍ୟ ତୁମ କଳା ନିହାଣ ମୁଗୁର ।
ଯାବତ ଚନ୍ଦ୍ରାର୍କ ବିରାଜିବ ତୁମ — ଶିଳାରେ କଳାର ତେଜ ।୯ ।

ଓଡ଼ିଆ ନୁହଇ ସାନ,
ଶାଗ ପଖାଳର କଙ୍କାଳ ଦେହେ – କଳା ପ୍ରାଚୁର୍ଯ୍ୟର ମନ ।
ପଡ଼ିଛି ଓଡ଼ିଆ ମାଟିକୁ ଜାବୁଡ଼ି ।
କଳା କିନ୍ତୁ ତା'ର ବାନ୍ଧିଛି ପଗଡ଼ି ।
ଉଠିଛି ଗଗନେ ଉତ୍କଳର କଳା – ସାକ୍ଷୀ ପତିତପାବନ ।୧୦ ।
ଉତ୍କଳର କଳା ଗ୍ରାହୀ-
କଳାପ୍ରେମୀ ଲୋକ, ଧନିକ, ଶାସକ – ଏ କଳାର ସତ୍ତା ନେଇ
ଚିନ୍ତାକର ଏହା ରଖିବ ଅକ୍ଷୁଣ୍ଣ ।
ଏହି କଳାବଳେ ଓଡ଼ିଆ ମହାନ ।
ପୂରୁବ ପୂରୁଷ କଳାର ଏ ଯଶ – ବିନଷ୍ଟ ନକର କେହି ।୧୧ ।
କଳା କଉଶଳ ରାଜି,
ମଣିଷ ପ୍ରାଣରେ ଆହ୍ଲାଦ ଢାଳେ – ଯଶ ଗୌରବେ ବିରାଜି ।
କଳାର ଆସ୍ୱାଦ ଯା ମାନସେନାହିଁ ।
ଦେହକୁ ଆବୋରି ବଞ୍ଚେ ପେଟ ପାଇଁ ।
ନର ସାର୍ଥକତା ତା' ଠାରେ ଜୀବନ୍ତ – କଳାକୁ ଥାଏ ଯେ ସୃଜି ।୧୨ ।



# ବିଶୁ ମହାରଣା

ସୁରେଶ ନାୟକ

କେଇବାର ତକେଇଛି : ମେଘକୁ, ବାଘକୁ
କେଇବାର ଚଢ଼ିଛି : ପାହାଚ, ପାହଡ଼ ।

ମେଘ ପ୍ରିୟ, ବାଘ ବି
ଭେଟିଛି ?
ନା ମେଘ, ନା ବାଘ ।
ପାହାଚ ସାରା ଲୁହର ସ୍ୱାକ୍ଷର
ତିନ୍ତେଇଛି ରକ୍ତ
ତମାମ୍ ପଥର ।

ପାହାଡ଼ ତୀଖରେ ଫୁଲ
ଆଖି ଟେକିଲେ ଘୁଞ୍ଚୁଛି
ଦୂରଠୁଁ ଦୂର ।

ପିଛାରେ ଏ ଯାଁ ମୋ କଟା ହାତ ।
କାଲି, କାଲି
ଯେଉଁ ହରରଙ୍ଗୀ ପକ୍ଷୀସବୁ ଉଡ଼ିଗଲେ ଏଠୁଁ
ଜମେଇବେଣି
କୋଳାହଳରେ ପାହାଡ଼ ସେକାନି ।
ଏକ୍ଳା ମୁଁ,
ବଙ୍କେଇ ଦେଇଚି ମୁଣ୍ଡ

ପାରୁ ପର୍ଯ୍ୟନ୍ତ
ଶାଣିତ କରୁଛି ନଖ, ଦାନ୍ତ
ଆସୁ ମେଘ, ଆସୁ ବାଘ
ହାତରେ ନିହଣ, ହାତରେ ମୁଗୁର
ମୁଣ୍ଡରେ ପଥର ।

ଶୁଣ ଶୁଣ !
ବତାସ  ବହିବା ସୁଦ୍ଧୁ ମିଛ
ଗଛରୁ ଯେତକ ବସା
ମାଟିକୁ ପଲଟ ମାରିଛି
କରେଇଛି
ମୋ ସ୍ୱାଭିମାନରେ ଗଢ଼ା ପୁଅ
ନିର୍ମମ ହାତର ବୋଲୁଅ ।

ମହାଜନେ !
ପୁଛନି ଏଣିକି
ଦାୟ ପୁଅରେ
ନା ବାରଣ' ମୁଣ୍ଡରେ ?



# ଲାଲ୍ ପାଗୋଡାର୍ ନାୟିକା

ତ୍ରିଲୋଚନ ପଣ୍ଡା

ମୁଁ ଏକ, ଲାଲ ପାଗୋଡାର ନାୟିକା
ମୁଁ ଯେ ସୁପ୍ତ ପାଷାଣୀ,
ଚିରଯଉବନୀ
ଚପଳ ଛନ୍ଦା ଗାୟିକା ।

ମୃଦଙ୍ଗର ମୃଦୁ ତାଳେ ତାଳେ ମୁଁ ଯେ
ରଚଇ ନୃତ୍ୟ ରାସ
ଜୀବନକୁ କରି ସଙ୍ଗୀତମୟ
ଭୁଲିଛି ଦୁଃଖ ପ୍ରାସ ।
ଦେଖୁଛି ଜାତିର ଇତିହାସ ଏଥି
ନିହାଣ ଗାରରେ ଲେଖା
ଏତ, ପ୍ରାଣହୀନ ଏକ ଭାଷାର ସାଗର
କୀରତିର ଦୀପ ଶିଖା ।

ଅନେକ କବିର କାବ୍ୟକଳାରେ
ତିଆରି ମୋହରି ଦେହ,
ବିରହୀ ଶିଳ୍ପୀର ହାତର ପରଶେ
ଲଭୁଛି ଅସୀମ ସ୍ନେହ,
ଝରାଉଛି ମୁହିଁ ଆଖିର ଲୋତକ
ଶିଳ୍ପୀ ଧରମା ପାଇଁ,

ଯାହାପାଇଁ ଆମେ ନିରବ ରଜନୀ
ବିତାଉଁ ଏଠାରେ ଶୋଇ ।
ପୁଅର ମମତା, ତା'ର ଗଭୀରତା
ଲେଖିଲା କି ଇତିହାସ
ବିଶୁମହାରଣା - ଜୀବନ ଯନ୍ତଣା
ଲୁହରେ ହୋଇଲା ଶେଷ
କେବେକେବେ ଏହି ବନବିଥିକାରେ
ସ୍ମୃତିର ସଳିତା ଜଳେ,
ଧରମପଦର ନିହାଣର ସ୍ୱର
ହଜିଲା ରାଗିଣୀ ତୋଳେ,
ପାରିବନି କେହି ସେ ସ୍ୱର ଲିଭାଇ
ଚିର ସଙ୍ଗୀତମୟ
ସେ ତ ଅମଳିନ ଏକ ଶିଶୁ ଶିଳ୍ପୀର
ଜୀର୍ଣ୍ଣସ୍ମୃତିର ଦେହ ।

ସାଗର ତ ଏଠି-ଧରମା ମନର
କରୁଛି ଗୁଞ୍ଜରଣ,
ସୂରୁଜ ତ ନିତି-ଉଦୟ ବେଳାରେ
କରେ, ଶିଳ୍ପୀର ଜୟଗାନ ।



# ଅଧାଗଢ଼ା କୋଣାର୍କ

କୁମୁଦିନୀ ଝା

ତୁମେ ଏମିତିକା କ'ଣ ଯେ
ତୁମ ବିନା କବିର
କୋଣାର୍କ ଗଢ଼ି ହୁଏନା ।
ଯେତେଥର କୋଣାର୍କ ଗଢ଼ିଲେ
ଚୂଳ ମାରି ହୁଏନା ॥
ତୁମେ ଏମିତିକା କ'ଣ ଯେ,
ତୁମ ବିନା କବିର
ସ୍ୱପ୍ନ ପୂରା ହୁଏନା ।
ଯେତେଥର ସ୍ୱପ୍ନ ଦେଖିଲେ ବି
ଭୁଲି ହୁଏନା ॥
ତୁମେ ଏମିତିକା କ'ଣ ଯେ
ତୁମ ବିନା
କବି ଆଜି ଗୁଲ୍ମ ଲଟାଟାଏ
ଖୋଜୁନାହିଁ କିଛି
ଆଉ ହଜୁ ନାହିଁ
କାହା ଆୟତ ଆଖିରେ ॥
ବାସ୍ ତୁମ ବିନା
କବି ପାଇଁ ଆଜି ବି
କୋଣାର୍କ ଗଢ଼ିବା ମନା ॥



# କୋଣାର୍କ

ଦେବୀପ୍ରସାଦ ଦାଶ

ଉତ୍ତପ୍ତ କୋଣାର୍କର
ନିଥର ଅନ୍ଧକାରେ
କୋଳେଇ ଧରେ ନର୍ତ୍ତକୀ
ଏକ କୁହୁଳା କାମାଗ୍ନି
ତା ଚୂଳିର ଝିଙ୍କାରେ ।

କଳା କାହ୍ନୁର ଆଚ୍ଛନ୍ନ ଆବେଗେ
ବଂଶୀ ଶୁଭେ ।
ଓଠ ନାଚେ,
ଖୋଲି ଯାଏ
ଅଣ୍ଟା ଓ ପାଦରୁ ଘୁଙ୍ଗୁର ।
ସର୍ପିଳ ସ୍ପର୍ଶରେ
ଛୁଟେ ଉତ୍ସକୂପରେ ଶ୍ରାବଣ
ଉଛୁଳେ ହାଣ୍ଡି ହାଣ୍ଡି ଉତୁରା ଲବଣୀ ।
କୋଣାର୍କର ରଥ
ଧଡ଼ ଧାଡ଼ ଥରିଯାଏ
ଏରୋଡ୍ରମ୍ ପଡ଼ିଆରେ ଓହ୍ଲାଉଥିବା
ଉଡ଼ାଜାହାଜ ପରି ।
କୋଣାର୍କର ସବୁ ଭଗ୍ନମୂର୍ତ୍ତି
ଜୀଇଁ ଉଠେ
ସୂର୍ଯ୍ୟାସ୍ତର ପରେ ।

■

# ଚନ୍ଦ୍ରଭାଗା

ଜ୍ୟୋସ୍ନା ଦାସ

ତୋ ସହ ବହୁଥର ଭେଟ
କେବେ କେବେ ସଞ୍ଜରେ ବନ୍ଧୁଗହଣରେ ।
ଆଖି ପକାଇଲେ ନୀଳ ନୀଳ ପାଣି
ଭଙ୍ଗା ଅଭଙ୍ଗା ଡଙ୍ଗା
ପିକ୍‌ନିକ୍ କରୁଥିବା ନାରୀ ପୁରୁଷର କଣ୍ଠ
ଠାଏ ଠାଏ କଣ୍ଢା ଓ ଶାମୁକା
ଦୂରରେ ମେରିନ୍ ଡ୍ରାଇଭ
ଘୋଡ଼େଇ ହୋଇଛି ପତ୍ର ଚଦରରେ ।

ସେମାନେ ସମସ୍ତେ ମୋ ଆଖିରୁ ଲୁଚିଗଲେଣି
କାହାରି କଥା ଶୁଭୁନି
ପଞ୍ଝା ପଞ୍ଝା ଦଳବାନ୍ଧି ହାତଠାରୁଛନ୍ତି
ସମୁଦ୍ରକୁ, ନୀଳ ଆକାଶକୁ
ପାଣିତଳେ ଖେଳୁଥିବା ଧୋବଲା ମାଛକୁ
ସାଗୁଆନ ଗଛର ଛାଇକୁ
ସଧବା ସିନ୍ଦୂର ପରି ଜଳୁଥିବା ଅସ୍ତ ସୂର୍ଯ୍ୟକୁ

କେହି କେହି ଲହଡ଼ିରେ ମୁଣ୍ଡ ପିଟୁଛନ୍ତି
ମୋ ପୂର୍ବରୁ ଏଠାକୁ ଏମିତି ମଣିଷ ଆସୁଥିବେ
ପ୍ରକୃତି ଉପଭୋଗ ପାଇଁ
ଏ ପୃଥିବୀ ଏମିତି ଅଛି
ବଦଳିନି : ବଦଳିବନି ପରପୁରୁଷର ପାଇଁ ।
ଏ ପୃଥିବୀର ରଙ୍ଗ ଲିଭିବନି
ବର୍ଷା ଆସୁ; ବନ୍ୟା ଆସୁ;
ଏ ପୃଥିବୀର ରୂପ ଶୁଖିବନି ଖରା ଆସୁ;

କିଏ ସେ ତ ଚିତ୍ରକର ଆଙ୍କିଛି ପୃଥିବୀ
ଧଳା, କଳା, ନାଲି, ନେଳି ଧୂସର ରୂପ
ଆଉ କିଛି ଆଖିକୁ ଦିଶୁନି
ଛୋଟ ଛୋଟ ବାଉଁଶ କୁଟୀର
ମଣିଷ ହାତର

ଚକ୍ରକର :
ତୁ ପୃଥିବୀରେ ରଙ୍ଗଦେବା ବେଳେ
ଥରି ଯାଇନି ତୋ ହାତ, ପାଦ, ଛାତି
ପ୍ରେମିକା ବିଳିବିଳେଇଛି ନିଦରେ ।
ତୁ ଚିତ୍ର କଳାବେଳେ
ହାତରେ ଛିଟିକି ପଡ଼ିଛି କଳା
ପ୍ରେମିକା କାନ୍ଦିଛି ରାତିରେ

ରଙ୍ଗ ଦେବାବେଳେ :
ଚିରିହୋଇ ଯାଇଛି ପାପୁଲି
ଗଭାରୁ ଖସି ପଡ଼ିଛି ଫୁଲ
ହାତରେ ଶବ୍ଦ କରିଛି ଚୁଡ଼ି
ପାଦରେ ନାଦ କରିଛି ପାଉଁଜ
ଓଠ ତରଳି ଯାଇଛି ହସରେ ।

ରଙ୍ଗ ଦେବାବେଳେ :
ଆଖିରୁ ବୋହିଯାଇଛି ଲୁହ
କଣ୍ଠରୁ ଶୁଖିଯାଇଛି ସ୍ୱର
ଆକଣ୍ଠ ପାନ କରିଛି ବିଷ
ଚିତ୍ରକର :
ଦରାଣ୍ଡି ଦରାଣ୍ଡି ମୋ କୋଠରୀକୁ ଫେରିଯିବ
ତୋ ସମୁଦ୍ରର ଥଣ୍ଡା ହାୱାଠୁ
ମୋ କୋଠରୀର ବିଷାକ୍ତ ପବନ
ମୋତେ ଚହଲେଇ ଦେବ ।
କମ୍ପେଇ ଦେବ ମୋ ହୃଦୟ
କେଉଁ ଅବ୍ୟକ୍ତ ଯନ୍ତ୍ରଣାରେ ମୁଁ ଜଳୁଛି

ତୋର କୂଳଉପକୂଳ ଡେଇଁ
କେଉଁଠିକି ଯିବି ।
ସବୁଠି ମୋରି ପରି ମଣିଷ ।

ସଞ୍ଜ ଆସିଲାଣି
ସମୁଦ୍ରର ଢେଉ ନାଚୁଛନ୍ତି
ମୋତେ କୋଳେଇ ନେ
ଫିଙ୍ଗି ଦେନା ପୃଥିବୀର ଆରପାରିକୁ
ମୁଁ ଜୀବନ ଚାହେଁ
ସେମାନଙ୍କ ପରି ମୋତେ ଫେରିବାକୁ ପଡ଼ିବ
ଆରପାରିକୁ ।
ମୋତେ ଆଉ କିଛି ଜୀବନ ଦେ
ସବୁ କିଛି ଦେଖିନେବି
ସବୁ କିଛି ଶୁଣିଯିବି ।
ମଣିଷ ହିଁ ପୃଥିବୀକୁ ସୁନ୍ଦର କରିଛି ।
ମଣିଷ ଓ ପୃଥିବୀ ଭିତରେ ସୀମାରେଖା
ଗୋଟିଏ ହେଜ୍ ବାଡ଼ ନୁହେଁ
ତାରଯୋଖା କଣ୍ଟଶ ନୁହେଁ
ଏକ ଆକର୍ଷଣର ସଙ୍ଗୀତ
ଟାଣିନିଏ ଆଗକୁ ଆଗକୁ
ମିଶାଇ ଦେବାର ମୋହରେ
ସବୁ ଯେପରି ଏକ ।
ଲ୍ୟାମ୍ପର ଆଲୁଅ ଧୀରେ ଧୀରେ ଲିଭି ଆସୁଛି
ମିଠା ମିଠା ମଧୁର କଥା ଟିପି
ହୋଇଯାଉଛି ଛାତିରେ
ମନେ ପଡୁଛି ପୁରୁଣା ଦିନର କଥା
ରାସ୍ତାରେ ମରାହୋଇଥିବା
ପୋଷ୍ଟର ଗୁଡ଼ିକୁ ଚିରି
ବାଲୁଙ୍ଗା ଟୋକାମାନେ
କାଗଜ ଡଙ୍ଗା ପରି ଭସେଇ ଦିଅନ୍ତି ।

ଆଳସ୍ୟ ବ୍ୟକ୍ତିମାନେ
ସଂକ୍ରାନ୍ତି ପୁରୁଷ ପରି ଦେଶକୁ ଅଶୁଭ ।
ଅପହୃତ କାହାଣୀ ମୋତେ ବଞ୍ଚାଇ ରଖିଛି
ଅପହୃତା ଚୁମ୍ବନ ମୋତେ ପୂର୍ଣ୍ଣତା ଦେଇଛି
ଅପହୃତ ହୃଦୟ ମୋତେ ପଥ ବଢ଼ାଉଛି ।
ପ୍ରଥମ ମଣିଷ ଜନ୍ମ ତାରିଖ ମିଳୁନି
ପ୍ରେମର ବତୀ ଜଳୁଛି କେଉଁ ଅନନ୍ତ କାଳରୁ
ବିନା ତେଲରେ ବିନା ସଳିତାରେ ।

ତୋର କୂଳରେ ବୁଲିବା ବେଳେ
ବାରମ୍ବାର ମନେ ପଡୁଛି
ମୋ ଗାଁ ନୁଆଣିଆଁ ଚାଳଘର
ଖଣ୍ଡିଆ ମାଟିକାନ୍ଥ
ପ୍ରଥମ ସୂର୍ଯ୍ୟ ହସିଦିଏ
ଗାଁର ଲଙ୍ଗଳା ଛୁଆଟି
ଇନ୍ଦ୍ରଧନୁକୁ ହାତ ପତେଇବା ବେଳେ
ମା ତା'ର ଭିଡ଼ି ନିଏ
ମନେ ପଡ଼େ :
ଆମ ଗାଁ ନଈକୂଳ
ମାଛ ଧରୁଥିବା କେଉଟମାନେ
ଲଣ୍ଡନରେ ଆର ଗାଁ ଯାନ୍ତି
ମନେ ପଡ଼େ :
ମା ଶାଗ ବାଛି ବସେ
ପଖାଳ କଂସାରେ କଞ୍ଚାଲଙ୍କା ହାତ ବୁଡ଼ିଯାଏ
ବାପା ଟିଉସନ ସାରି ଘରକୁ ଫେରନ୍ତି
ଭାରି କ୍ଳାନ୍ତ, ଉଦାସ ମଳିନ
ତେଲ ଚିକିଟା ମଠା ଚାଦରରେ
ବଢ଼ିଥିବା ଦାଢ଼ିକୁ ସାଉଁଳେଇ ନେଇ
ଠାକୁର ଘରକୁ ପଶନ୍ତି
ଢେଙ୍କିମା ଦରାଣ୍ଡେ ପେଟରା

ଖଟୁଲିରେ ଦିଅଙ୍କୁ ସଜାଇ
କୋଥଳିରୁ ରୁଦ୍ରାକ୍ଷ ମାଳି
ତିଳକରେ ବୋଳିଦିଏ ରାମାନନ୍ଦି ଚିତା
ନାକରୁ ନାସିକା ପର୍ଯ୍ୟନ୍ତ
ବରଜୁଆ ଫେରିଆସେ ବିଲୁ
ସଞ୍ଜ ହେଲେ ବାପା ଭଜନ ବୋଲନ୍ତି
"ତ୍ରାହିକର ମୋତେ ପ୍ରଭୁ ମାୟା ସଂସାରରୁ" ।

ମନେପଡ଼େ :
ଖଣ୍ଡିଆ ଭୂତର ଖେଳ ଝିଅଙ୍କ ସାଥିରେ
ଛତୁ ତୋ, ଯାନିଯାତ୍ରା, ମେଳନ ପଡ଼ିଆ
ମନେପଡ଼େ : ଖାଲି ମନେପଡ଼େ ।

ଚନ୍ଦ୍ରଭାଗା :
ବସି ବସି ଶାମୁକାରେ ଗଣିଲା ବେଳକୁ
ତୋ ଶୂନ୍ୟବାଲି ପାଲଟେ ମଣିଷ ।
ସମୁଦ୍ରର ଗମ୍ଭୀରରୁ ବାହାରି ଆସ ବାହାରି ଆସ
କଥା କହ କଥା କହ
କୋଣାର୍କର ନଟନଟୀ ମଦିରା କାହାଣୀ
ଶିଳ୍ପୀ ନିହାଣର କଥା
ମୈଥୁନର ଦଗ୍ଧ ଚିତ୍ର ବାଣୀ
ତୋ ପୁଳିନେ କୋଣାର୍କ
ଅବିବାହିତ ଯୁବକ ପରି ବିଷାଦରେ କାଳ କାଟୁଛି
ସ୍ମୃତିଚିତ୍ର ଖୋଦେଇ ପଥର ବୁକୁରେ
ଯେମିତି କାହା ପ୍ରତୀକ୍ଷାରେ
ଆଖି ତା'ର ଭାଜି ପଡୁଛି
ମୁଁ ଫେରି ଯାଉଛି ଚନ୍ଦ୍ରଭାଗା
ତୋ ନିଃସଙ୍ଗ ପୁଳିନୁ
ଆଉ ଥରେ ଭେଟିବାର ପ୍ରତିଶ୍ରୁତି ନେଇ ॥



# କୋଣାର୍କ

ବ୍ରଜେନ୍ଦ୍ରନାଥ ଗିରି

(୧)

ପ୍ରାଚୀ ତଟିନୀ ପୁଳିନେ କ୍ଷୁଦ୍ର ଏକ କୁଟୀ ଅନ୍ତରାଳେ
ଦିଶୁଥିଲା ପ୍ରଦୀପର କ୍ଷୀଣ-ଦୀପ୍ତ-ରେଖା ବ୍ରତତୀ-ଗହଳେ ।
ମୁଦ୍‌ଗର ଓ ନିହଣ ହସ୍ତରେ
ଗଢୁଥିଲେ ଅମର ବିନ୍ଧାଣୀ ଅଶ୍ୱ ଏକ ପ୍ରସ୍ତର ଗାତ୍ରରେ ।
ଶ୍ରାବଣର ଝରାବୃଷ୍ଟି ସମ ନିହଣ ଆଘାତେ
ଝରିପଡୁଥିଲା ପ୍ରସ୍ତର କଣିକା ପ୍ରାଙ୍ଗଣ ଉପାନ୍ତେ ।

(୨)

ଅଶ୍ୱପୃଷ୍ଠୁଁ ଅବତରି କ୍ଳାନ୍ତ ଯାତ୍ରୀ ଏକ, କୁଟୀର ସମ୍ମୁଖେ,
ନିରେଖିଲେ ଭାସ୍କର ରତନ ମୂର୍ତ୍ତିଗଢ଼ି ବସିଛନ୍ତି ଉପଳର ପାଖେ,
ଏକ ଲୟେ, ଏକ ଧ୍ୟାନେ
ନବ ଆଗନ୍ତୁକ କଲେ କପାଟରେ ଆଘାତ ଯତନେ ।
କିଏ ବୋଲି ଭାସ୍କର ଗୃହିଣୀ ଫିଟାଇଲେ ଦ୍ୱାର,
ଅପୂର୍ବ ତରୁଣ ସୁଶ୍ରୀ ଦେଖି ହେଲେ ଚକିତ ସତ୍ୱର ।
"ଦ୍ୱାରେ ଆଜି ଯାପିବି ରାତ୍ରିଟି" ଆଗନ୍ତୁକ ଉତ୍ତରିଲେ,
ଏକ ଧ୍ୟାନ ଭାସ୍କରଙ୍କ ଗୋଚରାର୍ଥେ ନିବାରଣ କଲେ ।
ଭାସ୍କର ଗୃହିଣୀ ଗଲେ ଅତିଥି ସତ୍କାରେ
ଏକ ଧ୍ୟାନେ ଚାହିଁଥିଲେ ଆଗନ୍ତୁକ ଭାସ୍କରଙ୍କ କର୍ମ ସାଧନରେ ।

(୩)

ନିମ୍ନତର ବ୍ୟଞ୍ଜନାନ୍ନ ଆଗନ୍ତୁକ ସମ୍ମୁଖେ ପରଶି,
ବିନ୍ଧାଣୀକୁ ଚାହାନ୍ତେ ଅତିଥି, ବୋଇଲେ ଭରସି,
ଭାସ୍କର ଗୃହିଣୀ
'ହବିଷ୍ୟାନ୍ନ', ସନ୍ଧ୍ୟା ଆଗୁଁ କରିଛନ୍ତି ଭୋଜନ ବିନ୍ଧାଣୀ ।
ଏକାଳେ, ଏଡ଼େ ମୂର୍ଖ ଉତ୍କଳର ରାଜା, ଭାସ୍କରଙ୍କ ଶୁଭିଲା ପ୍ରଳାପ,
କାହିଁକି ଗୋ ଗୃହିଣୀ ସଂଳାପ,
କାହିଁ କେଉଁ ଦାକ୍ଷିଣାତ୍ୟେ ଗୋଦାବରୀ କୂଳେ ସମରେ ତତ୍ପର" -
ଶୁଭିଲା ଉତ୍ତର ।
"ନିକଟରେ ଗୌଡ଼ଦେଶେ ଚାଲିଥିଲା ଯୁଦ୍ଧ,
ଚାରିଆଡ଼େ ଖାଲି ଶତ୍ରୁ ଅବରୋଧ ।
ବିରକ୍ତି ଓ ବିଦ୍ରୂପର ସ୍ପଷ୍ଟ-ଚିହ୍ନ ହେଲା ସ୍ପଷ୍ଟତର
କହିଚାଲିଥାନ୍ତି ସିଏ ମୂର୍ତ୍ତି ଗଠନରୁ ତିଳେ ନ ହୋଇ ଅନ୍ତର
"ନରହତ୍ୟା କରି କେହି ହୋଇଛି ଅମର !"
ଏବେ ଭାଷିଲେ ଅତିଥି, "ଯୁଦ୍ଧ ଅଟେ ଧର୍ମ ରାଜାଙ୍କର
ଦେଶ ଜୟକରି ସିଏ ହୁଅଇ ସମ୍ରାଟ, ଇତିହାସେ ବୀର ।"
ଶୁଣି ନବଭାଷା ନବ କଣ୍ଠସ୍ୱର
ସନ୍ତର୍ପଣେ ବୋଇଲେ ଭାସ୍କର
ତୋଳି ପୁରୀ ଭୁବନ-ଈଶ୍ୱର, ତୁଙ୍ଗ ଦେଉଳ ପାଖେ
ଆମ ରାଜା ମହାରାଜାମାନେ ବଞ୍ଚିଛନ୍ତି କୋଟି-ଜନ-ମୁଖେ
ଚାହିଁଲେ ଭାସ୍କର
କ୍ଷମ ଆହେ ନବାତିଥି ଭାଷିଲେ ସତ୍ୱର ।"
ବାୟସର ନିଶିଶେଷ ସ୍ୱର ଶ୍ରବଣେ ଅତିଥି
ଅନାଇଲେ ପାହିଲାଣି ରାତି ।
ଶେଯୋତ୍ଥିତେ ପଦ ପ୍ରାନ୍ତେ ଦେଖିଲେ ଘୋଟକ
ଡାକେ କିବା ଗମନାର୍ଥେ ଅବିଳମ୍ବେ ନହୋଇ ଅଟକ ।

ଛିଡ଼ା ହୋଇ ନିଜ କରେ ଆଉଁଶିଲେ ଅଶ୍ୱେ,
କଠିନତା ଉପଲବ୍ଧି, "ପ୍ରସ୍ତର ଅଶ୍ୱ କି ?" ଅନାଇଲେ ପାର୍ଶ୍ୱେ-
ଦେଖିଲେ ଚକିତେ,
ଶୋଇଛନ୍ତି କାରିଗର ରହିଅଛି ନିହାଣଟି ହାତେ ।
ଉପଳ ଘୋଟକ ଆଉ ସ୍ୱଘୋଟକ ଦିଶେ ଏକ, ନୁହେଁ ଅଦ୍ୱିତୀୟ,
ନିଜ ଅଶ୍ୱ-ଗତି ଜାଣି ମାତ୍ର ଚାଲିଗଲେ ରାଜା ନରସିଂହ, ବରାଭୟ ।

(୫)

ପ୍ରକୃତିର ଏକ ସୃଷ୍ଟା ଉପଳ ଗାତ୍ରରେ
ଦେଉଥିଲେ ରୂପ, ମହାରଣା ଶୁଭ ସକାଳରେ ।
ଗୃହିଣୀ ତାଙ୍କର ନିକଟରେ ଥାଇ
ଘନ ଘନ ଦେଉଥିଲେ ତାମ୍ବୁଳ ବଢ଼ାଇ ।
ଅଶ୍ୱାରୋହୀ ଦୁଇଜଣ ଜଣାଇଲେ ରାଜାଦେଶ, କରି ଆଗମନ,
ନିକଟରେ ଦେବ ନରସିଂହ ବିଜେ, ଆସନ୍ତୁ ବହନ ।
ଅଶ୍ରୁ ଉଦ୍‌ବେଳିତ କଣ୍ଠେ ବୋଇଲେ ଗୃହିଣୀ ।
"କିଏ ସେହି ଗୁପ୍ତଚର ଆସି ଗୋ ସେଦିନ
କହିଛି ରାଜନେ ଯାଇ ସମସ୍ତ କାହାଣୀ ।
ଅଳ୍ପ ହସି ମହାରଣା ଉତ୍ତରିଲେ ତାଙ୍କୁ,
ପ୍ରଜାବତ୍ସଳ ରାଜା କି ଦଣ୍ଡିବେ ପ୍ରଜାଙ୍କୁ ।
ଶତ୍ରୁ ପାଇଁ ଶମନ ସମାନ ପ୍ରଜା ପ୍ରତି ପିତା ପ୍ରାୟ ସେହି,
ରହିଥାଅ ନିରାପଦେ ଆଗୋ ! ଶୀଘ୍ର ମୁହିଁ ଆସୁଅଛି ଯାଇ ।
ଅଶ୍ୱାରୋହୀ କହିଲେ – "ବିନ୍ଧାଣି !
ରାଜାଦେଶ, ସଙ୍ଗେ ତବ ଯିବେ ତୁମର ଗୃହିଣୀ ।"

(୬)

କୂଳୁ-ସ୍ୱନ-ଚନ୍ଦ୍ରଭାଗା, ସକାଳ ସବିତା-କରେ ସ୍ନାତ,
ଈଷତ୍ ରକ୍ତ କିରଣ-ସଂଯୋଗେ ବେଗବତୀ ହୋଇଛି ରଞ୍ଜିତ ।
ନାରିକେଳ ପୁଗ-ପୁନ୍ନାଗ କୁଞ୍ଜ ସାଜିଛି ଚାନ୍ଦିନୀ

ବେଳାଭୂମି କୋଳେ ଶିର ପିଟି ଫେରିଯାଏ ବୀଚି-ରାଣୀ ।
ସାଗର ଓ ଚନ୍ଦ୍ରଭାଗା ଲଭିଛନ୍ତି ଏକାନ୍ତ ସଂଗମ,
ଅଶ୍ୱ ପୃଷ୍ଠୁଁ ଅବତରି ବସିଛନ୍ତି ରାଜା ଆଉ ପାରିଷଦମାନ ।
ବିଦ୍ଧାଣୀ ଓ ବିଦ୍ଧାଣୀ-ଗୃହିଣୀ ଅଶ୍ୱାରୋହୀ ସଙ୍ଗେ,
ପହଞ୍ଚି ରାଜନେ କଲେ ପ୍ରଣାମ ସାଷ୍ଟାଙ୍ଗେ ।
'ଉଠ' 'ଉଠ' ବୋଲି ରାଜା ଭାସ୍କରଙ୍କୁ କୁଣ୍ଢାଇଲେ ଯାଇ,
"ମୁଣ୍ଡ ମୋର ନୋଇଁବନି କାହା ଆଗେ,
ଅବା ପ୍ରଣିପାତ କରିଥାନ୍ତି ମୁହିଁ ।"
"ପୂଜ୍ୟ ତୁମ୍ଭେ ଅଟ ଗୋ ମହାନ୍ !
ତବ ଅଶ୍ୱ ମାଗିବାକୁ ଭିକ୍ଷା ବଳାଇଛି ମନ ।
ଅଶ୍ୱ ତବ ଆଉ ତୁମକୁ ଗୋ ମାଗୁଅଛି ଦାନ,
କୃପଣ ନ ହୋଇ ଆଗୋ କର ସମର୍ପଣ !
ମହାରଣା - "ଦରିଦ୍ର ମୁଁ, ଅଶ୍ୱ କାହିଁ ମୋର"
"ପ୍ରସ୍ତରେ ଗଢ଼ିଛ ଯାହା ଦିଅ ଗୋ ସତ୍ୱର ।"
ରାଜାଙ୍କୁ ଗୋ କରି ଆଲୋଚନା ଦର୍ଶାଇଛ ପଥ,
ଶତ୍ରୁ ଶେଷ ରାଜାର ଶପଥ
ଶତ୍ରୁ ଶେଷ ବିନା ନିର୍ଭୟରେ ରହିବେ କି ପ୍ରଜା,
ଅରି-ଆକ୍ରମଣେ ତାଙ୍କୁ କିପରି ବା ଉଦ୍ଧରିବେ ରାଜା ?"
ବିଦ୍ଧାଣି ଭାଷିଲେ - "ତେବେ ସେଦିନର ଅତିଥି ସେଇ ଗୁପ୍ତଚର"
ହସି ହସି ରାଜା ଉତ୍ତରିଲେ- "ଗୁପ୍ତଚର ମୁହିଁ ଅଟେ ମୋର ।"
ବାଷ୍ପ ଗଦ ଗଦ କଣ୍ଠେ ଅବିଳମ୍ବେ ଭାଷିଲେ ରାଜନ,
"ତୁମ୍ଭଙ୍କୁ ମୁଁ କରେ ଆମନ୍ତ୍ରଣ,
ଗଢ଼ ଏଇ ଚନ୍ଦ୍ରଭାଗା ଆଉ ସମୁଦ୍ରର ସଂଯୋଗ ସ୍ଥାନରେ,
ସପ୍ତ ରଥ ଯୁକ୍ତ ସୂର୍ଯ୍ୟରଥ ରହିଥିବ ଉଡ୍ଡୟନ ଅବସ୍ଥାରେ ।
ମନ୍ଦିର ଗାତ୍ରରେ ଗଢ଼ ମୋ ଦେଶର ପ୍ରତିଛବି ରାଜି,
ମୋ ଦେଶର ତରୁଲତା, ଯୁଦ୍ଧ, ଯୋଦ୍ଧା ରଥ ଗଜ ବାଜି,

ନଗର ଓ ନାଗରିକ, ଶିଳ୍ପୀ ଆଉ ଶିଳ୍ପର ବିଭାବ,
ଯୁଗ ଯୁଗ ଧରି ତୁମ୍ଭ ଆମ୍ଭ ବଂଶଧର ଯାହା ଦେଖୁଥିବ !
ମୋ ଦେଶର ଏକ କୋଣେ ଏ ସୂର୍ଯ୍ୟ ମନ୍ଦିର
ହେବ କୋଣାର୍କ ବିଦିତ,
ମୋ ଅଶ୍ୱର ପ୍ରତିମୂର୍ତ୍ତି ହେଉ ସେହି ମନ୍ଦିରର ସମ୍ମୁଖେ ସ୍ଥାପିତ ।
ଆଣ୍ଠୁ ମାଡ଼ି କରଯୋଡ଼ି ବୋଇଲେ ଭାସ୍କର,
"ପିଣ୍ଡେ ପ୍ରାଣ ଥିବା ଯାଏ ମୋର-
ଲାଗିବି ମୁଁ ମନ୍ଦିର ନିର୍ମାଣେ, ନେଇ ମୋର ଶିଳ୍ପୀ ଭାଇମାନ,
ନରସିଂହ କୀର୍ତ୍ତି ବୋଲି ଘୋଷିବ ଭୁବନ ।
ବଡ଼ଦାଣ୍ଡେ ନିମିଷକେ ଥରେ ଦେଖିଥିଲି ତୁମ୍ଭରି ଅଶ୍ୱକୁ,
ଆଜି କିନ୍ତୁ ନୟନ ପୂରାଇ ଦେଖୁଛି ତୁମ୍ଭଙ୍କୁ ।
କୋଣାର୍କ ସମ୍ମୁଖେ ତବ ଅଶ୍ୱ, ତବ ପ୍ରତିମୂର୍ତ୍ତି,
ଗଢ଼ା ହେବ ଜଗତ କହିବ ନରସିଂହ କୀର୍ତ୍ତି ।"



# ଅର୍କତୀର୍ଥ

ଗୌରୀ ପତି

ପାହିନାହିଁ ବିଭାବରୀ ତେଜି ନାହିଁ ତମିସ୍ରା ଶାଟିକା
ତଥାପି ଆରକ୍ତ ଦିଶେ ପୂରୁବ ଲଲାଟ
ପାହାନ୍ତି ମୁରୁଜ ଅବା ପୂର୍ବାୟନେ ରଚୁଛି ଧରଣୀ
ଆସିବେ କନକ ରଥେ, ଚନ୍ଦ୍ରଭାଗା ଚକ୍ରବାଳକୋଲୁ
ବାଳସୂର୍ଯ୍ୟ ଦିଗନ୍ତ ହସାଇ
କିନ୍ତୁ ! କିଏ ଗାଏ ଶୁଣ ! କି ଦିବ୍ୟ ସେ ଗୀତି ।
ନିର୍ମମ ସାଗର ସ୍ୱରେ ହଜିଯାଏ ଆହା
ସ୍ତବଗାଏ ସ୍ତୁତିକରେ ବାଳୁତ କୁମର
ଦ୍ୱାଦଶ ବରଷ ମାତ୍ର ଏତେଦିନ ପରେ
ଆସିଅଛି ଲଭିବାକୁ ପିତୃଦରଶନ
ଅର୍କକ୍ଷେତ୍ରେ ରଚିବାକୁ ରୁଚିର ମନ୍ଦିର
ରାଜା ଦେଶେ ଆସିଅଛି ସେହୁ ।

x x x

ବଳିଆ କୁକୁର ସାଥେ ବରକୋଳି ସନ୍ତକ ଧରି
ଆସିଥିଲା ଧାଇଁ ହୃଦୟର ପୁଞ୍ଜିଭୂତ
ରୁଦ୍ଧ ଅଭିମାନ ବାଢ଼ିଦେବ ପିତାପାଶେ
ସିକ୍ତ ନୟନେ
କିନ୍ତୁ ହାୟ ଏକି ବିପରୀତ
ବିଶ୍ୱମୁଖେ ହସନାହିଁ

ହସନାହିଁ କୋଟି ଶିଳ୍ପୀ ମୁଖେ
    ରୌଦ୍ରକ୍ଲିଷ୍ଟ ସୈକତର ବେଳା
ଶୋଷିଅଛି ମୁଖୁ ତାଙ୍କ ଜୀବନ ରୁଧିର
    ବିଶ୍ୱ ସ୍ତବ୍ଧ ଅବିଚଳ ଆଖିରେ ତା ସୀମାହୀନ
ଲୁହର ଅମ୍ବୁଧି ।
    ହାୟରେ ବିଧାତା, ଶୁଷ୍କ ମୁଖେ ନ ଫୁଟୁଣୁ ହସ
ସମୁଦ୍ର ନିର୍ଘୋଷେ ଗଲା ମନ ଭାଷା ମରି
    ରହିଲା ମଉନେ
    କୋଣାରକ ମୁଣ୍ଡିମାରେ ବିଶୁର କୁମର
    ପରାହତ ବାରଶତ ଶିଳ୍ପୀକୂଳ ଟେକ
ରଖିଦେବ ଦେବାଳୟ ଚୂଳେ !
    କିଏ ଗାଏ ସ୍ତବ ! ଅନନ୍ତ ନୀଳିମା ତଳେ ଶୁଭେ ଅଭିନବ ।
"ନମୋ ନିରଞ୍ଜନ ନମୋ ନିଖିଳ ନିଦାନ"
    ବୀଣା ବିନିନ୍ଦିତ କଣ୍ଠ ଲଳିତ ମଧୁର
ଚିରନ୍ତନୀ ଅସୀମତା ତଳେ ଯାଏ
    ସୁଲଳିତ ଶିଶୁକଣ୍ଠ ଭାସି
ଧ୍ୱନି ପ୍ରତିଧ୍ୱନି ଦେଇଯାଏ ଅପସରି ।
    ବିକ୍ଷୁବ୍ଧ ସାଗର ବକ୍ଷ କଲ୍ଲୋଳ ବିଦାରି
କିଏ ଦିଏ ଝାସ !
    କ୍ଷୀଣ ତନୁ ମିଶିଯାଏ ଉଦ୍ଦାମ ସାଗର କୋଳେ
ଯାଏ ରାତ୍ରି କାଳ-ରାତ୍ରି ଖରେ ଅପସରି
    ଆଲୋକର ମହୋତ୍ସବେ ଆନନ୍ଦ ଲହରେ
କୋଣାରକ ଶିଖେ ଝଳିଉଠେ ପାଷାଣ କିରୀଟ ।

x    x    x

ଧନ୍ୟ ଶିଳ୍ପୀ କଳିଙ୍ଗର ଶିଳ୍ପୀ
    ଧନ୍ୟ ସେହି ନରସିଂହ ନୃପ ।
    ନିହାଣ-ମୁଗୁର ମୁନେ ରଚିଗଲ ଶିଳାଛତ୍ରେ କେତେ ଇତିବୃତ୍ତ

ଜୟମାଲ୍ୟ ବିଜୟର ବାନା, ଶିଳ୍ପୀକଲୁ ମାନିନେଲେ ସବୁ
କିନ୍ତୁ ନ ଥିଲେ କି ସେଥି ଦେବରୂପେ ଧର୍ମ ନିରଞ୍ଜନ ?
ସମୟର ବାଲିବେଳା କୋଲୁ ସେ କଣ ସାଉଁଟିଲେ
ସତ୍ତାର କେତୋଟି ଶ୍ୱେତ ବାଲିକଣା ?
କିନ୍ତୁ ସତ୍ୟ ପ୍ରକଟିଲା କାଳବକ୍ଷ ଭେଦି
ଧରମାର ଦୀର୍ଘଶ୍ୱାସ ସଞ୍ଚରିଲା ପାଷାଣର ଗାତ୍ରେ
ସମୟର ଚକ ଗଲା ଘୂରି
ଏତେ ପାପ ! ନିଷ୍ପାପ ପିତୁଳିର ଲାଗି
ସହିପାରିଲାନି ସେହି ନିୟତିର ଛାତି
ଯା ନିହାଣ ଗାରେ ଗାରେ ଫୁଟିଥିଲା ସ୍ଥାପତ୍ୟର ଅଫୁରନ୍ତ ଲାସ୍ୟ
ଯୁଗେ ଯୁଗେ ବ୍ୟାପୀଥିଲା ଭାସ୍କର୍ଯ୍ୟର ଅପୂର୍ବ ନୈପୁଣ୍ୟ
ସିଏ ପୁଣି ଚାଲିଗଲା ତିମିରିତ ରଜନୀର ନିଃଶବ୍ଦ ବେଳାରେ
କାନ୍ଦିଲାନି ହୃଦୟ କାହାର ?
ଲୁହାବାଡ଼ ଭାଙ୍ଗି କଳା ପାହାଡ଼ର ଦାଉ
ସହି ପାରିଲେନି ଭୟେ ଅର୍କଦେବ ଆଉ ଲୁଚିଲେ ନୀରବେ
ଉତ୍କଳର ଶିଳ୍ପରବି ଗଲେ କାହିଁ ବୁଡ଼ି
ତୁଟିଗଲା ଶିଳ୍ପୀଗଢ଼ା ସ୍ୱପ୍ନତୀର୍ଥ ମାୟା
ବାରିଧି ଯେ ନିରବଧି ଧୋଉଥିଲା ଅର୍କପଦତଳ
ଅଭିମାନେ ଚାଲିଗଲା ବହୁଦୂରେ ଘୁଞ୍ଚି
ଶିଳ୍ପୀତୂଳୀ ସମ୍ଭୃତ ସ୍ୱରଗର ନିସର୍ଗ ସୁଷମା ଭଜିଲା ବିଲୟ
ଆଖିରେ ରହିଲା ପଡ଼ି ସୀମାହୀନ ସିକତାର ଶେଯ
ଆଉ ସେହି ନିଶୂନ ପ୍ରାନ୍ତରେ
ସେହି ଯୁଗୁ ସେହି କାଲୁ - ଗୁରୁ ଗୁରୁ ସାଗରର ସ୍ୱରେ
କାନ୍ଦିମରେ ଧରମା ଜନନୀ
କୋଣାର୍କ ଦେଖିବା ପରେ ।



# ଜାତିର୍ ମୁଖଶାଳା

ବିମଳ ପ୍ରସନ୍ନ ଦାସ

ବାଲୁକାର ଶୁଭ୍ର କବରୀରେ
କାହିଁ କେତେକାଳୁ
ତମେ କବର ଘେନିଲେ ବି
ତମ ବିଷଣ୍ଣ ମୁଖଶାଳା
ତମ ହଜିଲା ତନୁର
ଲାବଣ୍ୟ ଖୋଜୁଛି
ଜୀବନର ମ୍ଳାନ ଗୋଧୂଳିରେ
ବୈଧବ୍ୟ ଦୁଃଖର କାରୁଣ୍ୟ
ଓ ଅସହାୟ ନିଃସଙ୍ଗତା
ଭିତରେ, ପେଜୁଆ ଆଖିରେ
ଆଖିଏ ଲୁହଭରି ବୁଢ଼ୀଟିଏ
ତା ହଜିଲା ତାରୁଣ୍ୟ ଖୋଜୁଛି
ଶିଉଳି ଭରା
ତମ ଶୀର୍ଣ୍ଣ ଦେହର କାନ୍ଥରେ
ସମୟ ତା ବୁକୁର ରୁଧିର ଢାଳି
ଲେଖୁଛି ଅଲିଭା ଅକ୍ଷରରେ
ଶିଳାଲିପିର ସଙ୍ଗୀତ
ସତେ ଯେମିତି
ତମରି ତନୁର ଶିଳାରେ ଦୋଳାୟିତ
କବିତାର କମନୀୟ ପଂକ୍ତି
ରୋମାଞ୍ଚକର ପ୍ରଥମ କଦମ୍ବ ।

ଉତ୍କଳୀୟତାର ଚରମ ଉତ୍କର୍ଷ
ସାଂସ୍କୃତିକ ବିଭବର
ବିଶ୍ୱ ବିସ୍ମୟ ତମେ ।
ସୌର ସାଧନାର ପୁଣ୍ୟପୀଠ
ଇତିହାସର ଅଜସ୍ର ଐଶ୍ୱର୍ଯ୍ୟ ।
କଳା ଚାତୁର୍ଯ୍ୟର
ବିସ୍ମୟକର ବିଳାସ ବେଳାରେ
ଗୂଢ଼ ଦାର୍ଶନିକତା ଓ
ଶାଶ୍ୱତ ପାରମାର୍ଥିକତାର ତମେ
ମହାନ୍ ଜାତୀୟ ଜିଜ୍ଞାସା ।
କୈବଲ୍ୟକାମୀର ତମେ
ମୁକ୍ତି-ମହାମନ୍ତ୍ର
କଳ୍ପନା-ବିଳାସୀ କବିରି
ପ୍ରେମ ଓ ପ୍ରଣୟର
ଉନ୍ମାଦ ତରଙ୍ଗ ।
ଓଡ଼ିଆ ଶିଳ୍ପୀର ନିହାଣ ସ୍ପର୍ଶରେ
ସୂର୍ଯ୍ୟଶିଳାର କାନ୍ଥରେ
ଜୀବନର ମିଥୁନ ମୂର୍ତ୍ତି
ସୃଷ୍ଟିକରେ ଶତ କନ୍ଦର୍ପର
ଶିହରଣ
ଝରାପତ୍ରର ବିସ୍ମୃତ ବେପଥୁ ।
ସମୟ ତମକୁ କଲେ ବି
ବିବର୍ଣ୍ଣ, ବିଷଣ୍ଣ
ତମେ ଶାଶ୍ୱତ ଅକ୍ଷତ
ଏ ଜାତିର ଇତିହାସ
ଚିର ବସନ୍ତର ।



# କୋଣାର୍କ

ବ୍ରଜେନ୍ଦ୍ରନାଥ ଦତ୍ତ

କେଉଁଟା ଦେଖିବି କହ
ସମୁଦ୍ରର ଗଁ ଗଁ
ନା
କଳା ପାଗୋଡାର ମୁହଁ ?
ଦୁଇଟି ଜୀବନର
ଉଚ୍ଚାଟିତ ହା ହାରବ
ମିଶାଣ ଫେଡ଼ାଣ
ଶଙ୍ଖର ସିନ୍ଦୁକରୁ
ଝରିପଡୁଥିବା
ଦୁଇବିନ୍ଦୁ ଲୁହ ।
ଗୋଟିକରେ କଳାଦୃଷ୍ଟି
କୁହୁଳୁଚି ଅବଶିଷ୍ଟ ରାତି
ଅନ୍ୟଟିରେ ଖଣ ଖଣ
ଭଙ୍ଗା ଦର୍ପଣର ମୁହଁ
ପୁଣି କେବେ ଉଦ୍‌ବେଳିତ
ଅନ୍ଧର କାକୁତି
ଧୀର ଓ ଅଧୀର ଚକ୍ର –
ରଥପରେ କି ଅଶାନ୍ତ ଦ୍ୟୁତି !

ଏଇ ଯେ ଭାଙ୍ଗିଯାଇଥିବା
ଇଚ୍ଛାର ମାଠିଆ
କି ନର୍ତ୍ତକୀର ପଥରସ୍ତନ ପରି
ଅଚଞ୍ଚଳ ଗେହ୍ଲାପଣିଆ
କି ଭୟଙ୍କର ଶୁଭୁଚି ଏଠି
ସ୍ୱପ୍ନର ଆମନ୍ତ୍ରଣ
ଘୁମୁରା ପାରାଙ୍କ କୂଜନରେ
ସ୍ତବ ଉଚ୍ଚାରଣ !

କାହିଁ ଏଠି କେଳି ନା କଦମ୍ବ
ସବୁ କ୍ଳାନ୍ତ ଅବସନ୍ନ
ଅସୂର୍ଯ୍ୟ ବିଷାଦ
ସବୁ ରୂପ, ରସ, ଗନ୍ଧର
ଆବାହନୀ
ଉଭେଇ ଯାଇଚି ବାଲିର ରକ୍ତରେ... ।
କାହାକୁ କହୁଚ ସହନଶୀଳ
ସମୁଦ୍ର ନା ମନ୍ଦିର
କାହାକୁ କହୁଚ ଇତିହାସ
ଅକ୍ଷରର ଉଚ୍ଚାଟକୁ
ଭେଦି ଯାଉଥିବା
କାନ୍ଦଣାର ସ୍ୱର
ଧରମାର ମୃତ୍ୟୁର ସମ୍ବାଦ
ନା ଶାମୁକା ଶଙ୍ଖର
ଲହଡ଼ି ସ୍ନାନରେ
ଛାତିଫଟା ବିକଳ ଚିତ୍କାର ?
ଏତେ ସବୁ କାରୁକାର୍ଯ୍ୟ
ଉତ୍ସବର ଧୂପଦାନୀ
ସୁବାସ ସତ୍ତ୍ୱେ
ମୁଁ ଖୁଣ୍ଟି ଚାଲିଛି
ଅଚିହ୍ନା ଏଇ ଅନ୍ଧାରରେ
ପୋତି ହୋଇ ପଡ଼ିଥିବା
ମଣିଷର କଣ୍ଠସ୍ୱର
(ହୋଇପାରେ ମହାରଣା
ହୋଇପାରେ କୁଲି ଶ୍ରମିକର)
ମୋତେ ଶୁଭିଯାଉଚି
ଦୂର ଗାଁରୁ ଭାସି ଆସୁଥିବା
ଅମଙ୍ଗଳର ଆଶଙ୍କା
ମୋତେ ଶୁଭିଯାଉଚି

ଟଳି ପଡୁଥିବା ରମଣୀର
କାଚଭଙ୍ଗା ଶବ୍ଦର ଝଣ୍ ଝଣ୍
ପରାଭବ କଟୁରୀରେ
ଛେଲି ଛେଲି ପଡୁଥିବା
କପାଳ ଲିଖନ
ଓ
ନଈକୂଳ ମଶାଣିରେ
ଥୁଣ୍ଟା ଝାଉଁଗଛକୁ ଡେରି
ବାହୁନୁଥିବା
ଧଳାଖଦୀ ଓ ଜହ୍ନର ଯୁବତୀ ।
ମୋତେ ଶୁଭିଯାଉଚି
କଚାଡ଼ି ପଡ଼ିଥିବା ଲହଡ଼ିର ସ୍ୱର
ଦଧିନଉତିର ଆର୍ତ୍ତନାଦ -
କାଳର ଡଗର
ଘୋଷଣା କରୁଥିବା
ସଂଖ୍ୟାସବୁ ମୁଣ୍ଡମାନଙ୍କର ।
ମୁଁ ସେଇ ନିରାନନ୍ଦର
ମଉଛବ ଦେଖୁଚି
ସମୁଦ୍ରରେ
ମୁଁ ସେଇ ଦାମ୍ଭୀକତାର
ରାଜକୀୟ ଆଡ଼ମ୍ବର ଦେଖୁଚି
ଭଗ୍ନ ମନ୍ଦିରରେ...
ଆଉ ଉଦ୍‌ବୃତ୍ତ କଣ ଅଛି ଯେ
ଗର୍ବରେ, ଗୌରବରେ
ଫାଟିପଡ଼ିବ ?
ଚାଲ ଫେରିଯିବା -
କାହିଁକି ଆଣିଲୁ ଝିଅ
କାନ୍ଦିବାକୁ ମଥାପିଟି
ଅସ୍ୱସ୍ତି ଓ ପରମ ଦୁଃଖରେ ।



# କୀର୍ତ୍ତି କୌସ୍ତୁଭ

ଗୀତା ଦେବୀ

ମାନବର ମହାକାବ୍ୟ
ଯାହାକୁ ପଢ଼ିଲା ବେଳେ
ପଡ଼େ ନାହିଁ ଆଖିର ପଲକ
ଐତିହ୍ୟର ଅୟସ୍କାନ୍ତ
ଶିଳୀଶିଳ୍ପ
କୀର୍ତ୍ତି କୋଣାରକ ।
ଲିହଣ ମୁଗୁର ଲେଖେ
ଶିଳା ସନ୍ଦ୍ଧେ ଜାତି ଇତିହାସ
ସେ କୋଉ ବିନ୍ଧାଣି ତତେ
ଗଢ଼ିଲା ଲୋ
ତୋ ଦେହରେ ଭରିଦେଇ
ସ୍ରଷ୍ଟାଙ୍କର
ଶ୍ରେଷ୍ଠ ଜୀବନ୍ୟାସ ।
ଏ ଜାତିର ମହମହ
କର୍ପୂରର ବାସ
ଏବେ ମଧ୍ୟେ ଅବଶିଷ୍ଟ
ଚନ୍ଦ୍ରାଭାଗା କୂଳରେ କୂଳରେ
ଏ ଜାତିର ପିତୃ ପିତାମହ
ଧର୍ମପଦ ବିଶୁ ମହାରଣା
ଏବେ ବି ଜୀବନ୍ତ ତୋର

## ୫୩୦ କବିତା  କୋଣାର୍କ

ଶିଳା ପ୍ରାଙ୍ଗଣରେ
ପୃଥିବୀର ସେ କେଉଁ ଆଶ୍ଚର୍ଯ୍ୟ ତତେ
ଟପିପାରେ
ଲିହଣ ମୁନରେ ? ?
ଦେବାପାଇଁ ନିଜ ପରିଚୟ
ସାଥିରେ ଯେ ନେଇଥିଲା
ବାଡ଼ି ବରକୋଳି ଆଉ
ବଳିଆ କୁକୁର
କି ରଚିଲା କଳାକୀର୍ତ୍ତି
କଳା କାଳଜୟ
ଯୁଗାନ୍ତର ପାଇଁ
ରଖିଦେଇଗଲା ନିଜ
ଜାତି ପରିଚୟ ।
କହ କହ ଅର୍କଦେବ
କହ ଚନ୍ଦ୍ର ଦେବ
ତମେ କାଳେ ଧର୍ମର ଦେବତା
କେଉଁ ଧର୍ମ ପାଳିବାକୁ
ଚନ୍ଦ୍ରଭାଗା କୂଳେ
ମାପିନେଲ ଏ ଜାତିର
ମଥାର ମୁକୁତା
କେଉଁ ଧର୍ମ ପାଳିବାକୁ
ଜାଳିଦେଲ
ଅପୋଗଣ୍ଡ ବାଳୁତର ଚିତା
କେଉଁ ଧର୍ମ ପାଳିବାକୁ
ଅମୃତର କୀର୍ତ୍ତି କଳାପରେ
ଲେଖିଦେଲ
କଳଙ୍କର ଚିତା ?



# ଭଗ୍ନ କୋଣାର୍କ

ପୂର୍ଣ୍ଣିମା ଦାସ

ସାଗର ବକ୍ଷରେ ଓଡ଼ିଆ ପୁଅର
କୀର୍ତ୍ତି-ଭର୍ତ୍ତି ବତୀଘର,
ଶ୍ରେଷ୍ଠ ସ୍ମାରକୀ ଓଡ଼ିଶା ଭୂଇଁର
ସପ୍ତାଶ୍ଚର୍ଯ୍ୟେ ସେ ଭାସ୍ୱର ।୧ ।
ମହାକାଳ ବକ୍ଷେ ସହସ୍ର ବରଷ
ସଂସ୍କୃତିର ଜୈତ୍ର କେତନ ବାହି,
ପ୍ରକୃତି ମଣିଷ ଯୌଥ ଅତ୍ୟାଚାରେ
ଭଗ୍ନ ଅବୟବେ ରହିଛୁ ଚାହିଁ ।୨ ।
ଜୀର୍ଣ୍ଣ ଚର୍ମର ଆବରଣ ତଳେ
ଉଦ୍ଦାମ ଯୌବନ ରହିଛି ଲାଖି,
ସଂସ୍କୃତି ଅମୃତ ପରଶି ଚାଲିଛି
କଳା ପ୍ରେମୀଗଣ ପାଖକୁ ଡାକି ।୩ ।
ଦୁର୍ବଳ ଶରୀରେ କଳାର ବୋଝକୁ
ମୁଣ୍ଡେଇ ମୁଣ୍ଡେଇ ପଡ଼ିଛି ଥକ୍ି,
ଆଠ ଶ' ବରଷ ବିତି ତ ଗଲାଣି
କିଏ ନେବ ତା'ର ଦୁଃଖରୁ ମାଗି ।୪ ।
ଶୁଣିଛ କି କେହି ନିର୍ଜନ ନିଶୀଥେ
ତା' ମନ ଗହନ ନୀରବ କଥା,
ମଉନ ପାଷାଣ ଝୁରିଛି ଯେ ଲୁହ
ସେ ଲୁହେ କୋଣାର୍କ ହୋଇଛି ଓଦା ।୫ ।

ନିର୍ଭୀକତାର          ଘୁଙ୍ଗୁର ବିନା
ପାରିବ କି ନାଚି ଶ୍ରାବଣ ସାଥେ,
ବସନ୍ତ ଆସିଲେ          କି ଫୁଲ ଫୁଟିବ
ଫୁଲରୁ ପାଖୁଡ଼ା ଝଡ଼ିଛି କେତେ ।୬ ।
ଶରତ ଜହ୍ନରେ          କି ହସ ହସିବ
ଭଙ୍ଗାରୁଙ୍ଗା ତା'ର ଶିଳାକୁ ନେଇ,
ଗ୍ରୀଷମ ଜ୍ୱାଳାରେ          ଥୁଣ୍ଟା କୋଣାରକ
ଖୋଜୁଛି ବାରଣ' ବଢ଼େଇ ଛାଇ ।୭ ।
ହାତୁଡ଼ି ଶବଦ          ରହି ରହି ତୋଳେ
ପ୍ରତିଧ୍ୱନି ତା'ର ପାଷାଣ ଗାତ୍ରେ,
ଘୂରି ବୁଲୁଥାଏ          ଶିଳ୍ପୀର ଆତ୍ମା
କାନ୍ଦେ କୋଣାରକ ନିଶୂନ୍ ରାତ୍ରେ ।୮ ।
ଦିକି ଦିକି ଜଳେ          ବତୀଘର ଆଜି
ଉତ୍କଳ ସଂସ୍କୃତି ଆସିଛି ଲିଭି,
କଳାପାହାଡ଼ର          ଚକ୍ରବ୍ୟୂହ ମଧ୍ୟେ
ହତଶ୍ରୀ ହୋଇଛି କେ ପାରେ ଭାବି ।୯ ।
କାହିଁ ସେହି ରାଜ୍ୟ          କାହାନ୍ତି ସେ ରାଜା
ପୃଷ୍ଠପୋଷକତା କିଏ ସେ ଦେବ,
କାହିଁ କଳାପ୍ରେମୀ          କଳାର ଆଦର
କଳାକୁ ବଞ୍ଚେଇ କିଏ ବଞ୍ଚିବ ।୧୦ ।
ଧରାବକ୍ଷୁ ଯେବେ          କୋଣାର୍କ ମନ୍ଦିର
ଭୁଶୁଡ଼ି ପଡ଼ିବ ହେବ ବିଲୁପ୍ତ,
ଓଡ଼ିଶାର ନାମ          ଭୁଲିଯିବେ ସବୁ
ଓଡ଼ିଶା ଭାରତେ ଗୋଟିଏ ରାଜ୍ୟ ।୧୧ ।



# ବାୟା ବଧୂର ଅଧୂରା ବସା

ଗୀତାରାଣୀ ରାଉତ

କୁଟା କାଠି ତୋଳି ନୀଡ଼ଯିଏ ଗଢ଼ି
ସଂସାର କରିବ ମନାସିମନେ
ହସିଲା ପୂରିଲା ସଂସାର ହେବ ତା
ବାୟା ବଧୂଟି ଭାବୁଛି ମନେ ।
ସବୁ ନୀଡ଼ ଠାରୁ ତା ନୀଡ଼ ଗଢ଼ିବ
କଳା କଉଶଳେ.ନିଆରା କରି
ପାଣି ପବନକୁ ନ ଥିବ ଖାତିରି
ବାହୁଙ୍ଗା ଅଗରେ ଥିବ ଓହଳି ।
ଉତ୍କଳ ମାଟିର ଜନମ ତାହାର
ତା ପାଣି ପବନେ ଗଢ଼ା ଶରୀର
ଉତ୍କଳ କଳାର ଚାତୁର୍ଯ୍ୟକୁ ଆଣି
ପରଶ ଦେବ ତା ଛୋଟ ବସାର ।
ସ୍ୱାମୀ ତା ଅଟଇ ବିଶୁ ମହାରଣା
ବାଲୁତ ପୁଅ ତା ଶିଳ୍ପୀ ଧରମା
ବାୟା ବଧୂ ସେ ନୀଡ଼ ରଚନାରେ
ଦେଖାଇବ ତା'ର ଶିଳ୍ପୀ ଗରିମା ।
ଏକାଠି ହୋଇଲେ ବାଇଆ ସମାଜ
ସତେ କିବା ବାରଶହ ବଢ଼େଇ

କୁଟା କାଠିନେଇ                ବସା ଗଢ଼ିଦେଲେ
ବାହୁଙ୍ଗା ଅଗରେ ଦେଲେ ଝୁଲେଇ ।
ଥିରି ପବନରେ                ଝୁଲି ଝୁଲି ବସା
କଳା କୌଶଳର ଚାତୁର୍ଯ୍ୟ ବାଣ୍ଟି
ସତେ କି ଉତ୍କଳ                ମାଟିପରେ ଉଭା
ସପ୍ତାଶ୍ୱ ରଥର କୋଣାର୍କ ଗୋଟି ।
କଅଣ କେଜାଣି                ଘଟିଲା ତାପରେ
କାହାର ନଜର ଲାଗିଲା ଆସି
ସୂର୍ଯ୍ୟ କାମଦେବ                ବିବାଦ କି ହେଲା
ଚନ୍ଦ୍ରଭାଗା ଜଳେ ପଡ଼ିଲା ଝାସି ।
ଖଣ୍ଡ ଖଣ୍ଡ ହେଲା                କୋଣାର୍କ ମନ୍ଦିର
ସୂର୍ଯ୍ୟ ଉପାସନା ହୋଇଲା ଶେଷ
ମୂକ ସାକ୍ଷୀପରି                ଉଭା ହୋଇଅଛି
ମୁଖଶାଳା ତା'ର ଅଂଶ ବିଶେଷ ।
ବାୟା ବଧୂର                ହାତଗଢ଼ା ନୀଡ଼
ସମୟ ଜୁଆରେ ହୋଇଲା ଲୀନ
ବଂଶ ତା' ହଜିଲା                ନୀଡ଼ ତା ଛିଡ଼ିଲା
ଅଧୂରା ରହିଲା ସବୁଜ ସ୍ୱପ୍ନ
ସୃଷ୍ଟିର ରହସ୍ୟ                କିଏ କିଏ ବା ବୁଝିବ
ବଡ଼ ବିଚିତ୍ର ତା ରଚନା ଶୈଳୀ
ଆଜି ଯେ ଜୀବନ୍ତ                କାଲି ସିଏ ମୃତ
ସମୟ ଚକ୍ରରେ ଖେଳୁଛି ଦୋଳି ॥



# ସକାଳର ଚନ୍ଦ୍ରଭାଗା

ଡ. ଲକ୍ଷ୍ମୀଧର ଦାସ

ପୁତ୍ର ନରସିଂହେ, ବସାଇ ପାଖରେ
ରାଜମାତା ଆବେଗରେ
କହିଲେ ଧୀରେ
ଶୁଣ ବାବୁ !
ତୋ ପିତାଙ୍କ ସହ
ଅର୍କକ୍ଷେତ୍ରେ ପୂଜି ସବିତାରେ
ପାଇଥିଲି ତୋରେ ।
ପିତାଙ୍କ ସଙ୍କଳ୍ପ ତୋର -
ଧର୍ମ ଦେବତାଙ୍କ ପାଇଁ
ଗଢ଼ିବେ ମନ୍ଦିର
ବିଶ୍ୱେ ତା'ର ନଥିବ ବିକଳ୍ପ;
ଦଇବ ବିପାକେ
ସେ ତ ସ୍ୱର୍ଗବାସୀ ଏବେ
ଇଚ୍ଛା ତାଙ୍କ ରହିଲା ଅପୂର୍ଣ୍ଣ
ଅନୁରୋଧ, ସେଇ ପିତୃଇଚ୍ଛା
କରିବାକୁ ପୂର୍ଣ୍ଣ ।
ବୀର ନରସିଂହ ମାତୃପଦ ଧରି
କହିଲେ ବିନୟେ -
'ଜନନୀ ଗୋ !

ଏହା ଅଧମେ ଆଦେଶ
ମାତୃ-ପିତୃ ଇଚ୍ଛା ସଦା
ପୁତ୍ର ଶିରୋଧାର୍ଯ୍ୟ ।'
ଫେରିଣ ମାତାଙ୍କ ପାଶୁ
ମହାରାଜା କିଛି କ୍ଷଣ
ମଉନରେ ବସି
ଡାକିଲେ ନିର୍ମାଣ ମନ୍ତ୍ରୀ
ଶିବ ସାମନ୍ତରା,
ବିହିଲେ ଆଦେଶ-
ପଦ୍ମତୋଳା ଗଣ୍ଡ ପରେ
ତୋଳାଇବି ରଥାକାରେ
ସୂର୍ଯ୍ୟଙ୍କ ପ୍ରାସାଦ,
ସେଇ ବିଶାଳ ସ୍ଥାପତ୍ୟ
ତୁଙ୍ଗିମା ଓ ଲଳିତ ଭାସ୍କର୍ଯ୍ୟେ
ହେବ ଅଦ୍ୱିତୀୟ
ଭୁବନ ବିଖ୍ୟାତ;
ଯାହାର ଦର୍ଶନେ
ନତ ହେବ ଦେବଶିଳ୍ପୀ ମାଥ ।
ସବିସ୍ମୟ ମନ୍ତ୍ରୀ
କରଯୋଡ଼ି ନିବେଦିଲେ
ଅତି ଭୀତେ ସଂଭ୍ରମରେ
ହେ ମଣିମା !
ପ୍ରତିଷ୍ଠିତ ପୀଠେ
ମନ୍ଦିର ନିର୍ମାଣ ସହଜ ସୁଗମ
ହେବ କିଁପା ତାହା
ପଦ୍ମତୋଳା ଗଣ୍ଡର ଉପରେ !
ମନ୍ତ୍ରୀଙ୍କ ବିନୟ ବାକ୍ୟେ
ମହାରାଜା କେଇ କ୍ଷଣ, ମୌନ ଇତସ୍ତତଃ
କହିଲେ ସେ ଏତିକି ଗମ୍ଭୀରେ

'ଆମ୍ଭେ ଚାହୁଁ ତାହା,
ନ ହେବ ଅନ୍ୟତ୍ର ।'
ପଥରର ଆୟୋଜନେ ରତ
ଅଗଣିତ ପଥୁରିଆ
ରାଇଜ ଜାକର ମୂଲିଆ
ସ୍ୱଚ୍ଛାସେବୀ ଆବର ବେଠିଆ,
ନାଆ, ଗଜ, ଅଶ୍ୱ,
ନାବିକ, ମାହୁନ୍ତ, ସଇସ ।
ବଛା ବଛା ବାରଶହ ଶିଳ୍ପୀ
ଚନ୍ଦ୍ରଭାଗା ତୀରେ ତୀରେ
କରିଣ ବସତି
ଦେଉଳ ତୋଳାରେ
ଲାଗିଛନ୍ତି ଅବିଶ୍ରାନ୍ତ,
ପର୍ବତ ପ୍ରମାଣ ପଥରର ଖଣ୍ଡ
ପଡ଼ି ପଦ୍ମତୋଳା ଗଣ୍ଡ
ହୋଇଲାଣି ଲୀନ
ନ ଦିଶଇ ଭିତ୍ତି ଚିହ୍ନବର୍ଣ୍ଣ,
ମହାରାଜାଙ୍କୁ ସେ କି ଦେବେ ଉତ୍ତର ?
ସାଆନ୍ତରା ଭୟେ ଥରହର ।
ଘୋର ରାଜଦଣ୍ଡ ଭୟେ
ଚିନ୍ତିତ ବ୍ୟଥିତ ମନ୍ତ୍ରୀ,
ନେଲେକ ସିଦ୍ଧାନ୍ତ-
କରି ପଳାୟନ
ରଖିବେ ସେ ପଇତୃକ ପ୍ରାଣ ।
ପଥଶ୍ରାନ୍ତେ ରାତିର ବିଶ୍ରାମ ପାଇଁ
ପାଇଲେ ଆଶ୍ରୟ,
ଏକାକିନୀ ନିରାଶ୍ରୟା,
ବୃଦ୍ଧାର କୁଟୀର;
ସମ୍ବଳ ମୁଠାଏ ଖୁଦ ଜାଉ କରି

ଆଦରରେ ପାଖେ ବସି
ପରଷିଲା ବୁଢ଼ୀ
କ୍ଷୁଧାରେ ଆତୁର ମନ୍ତ୍ରୀ
ତତଲା ଜାଉ ମଝିରେ ।
ତରବରେ ହାତ ଦେଲେ ଭରି
ଦଗ୍ଧିଭୂତ, ଯନ୍ତ୍ରଣାରେ
ହାତ ଗଲା ପୋଡ଼ି;
ବୁଢ଼ୀ ବୋଲେ ବାପଧନ,
ନୁହେଁ ଧାରୁ
ମଝିରେ ହାତ ବୁଡ଼ାଇ
ଜାଉ ତୁ ଖାଇଲୁ
ମନ୍ତ୍ରୀ ସାଆଁନ୍ତରା
ଦେଉଳ ତୋଳିଲା ପରି
ବୁଝି ଓ ବିଚାରି କର୍ମ ତୁ ନ କରି
ଯାହା, ଏ ଦଶା ଭୋଗିଲୁ ।
ପାଇ ମହାଶିକ୍ଷା
ଫେରି ସାଆନ୍ତରା ଲାଗିଲେ କର୍ମରେ
ନବ ଉତ୍ସାହରେ
ବର୍ଷ ବର୍ଷ ଧରି
ଶିଳ୍ପୀକୁଳ ସାଧନାରେ ରତ
ଭୁଲି ନିଜ ପରିବାର ସୁଖ
ନିହଣ ସୂଚୀ-ମୁନରେ
ବିରଚିଲେ ଅକ୍ଷୟ କବିତା
ପରିଶିଲେ ସତ୍ୟ ଆଉ ଅମୃତ ଲୋକର ବାର୍ତ୍ତା ।
କବି କଳ୍ପନାରେ
କୃଷ୍ଣ, ପାଟଳ ପଥରେ
ଫୁଟିଲା ଜୀବନ
ଦେଶେ ଦେଶେ ପ୍ରସରିଲା
ଉତ୍କଳୀୟ କଳା
ଯଶ, ଗଉରବ, ମାନ ।

ଶୁଷ୍କ ପତ୍ରେ ଅଗ୍ନି ପରି
ବ୍ୟାପିଲା ସମ୍ବାଦ
ପୁର ପଲ୍ଲୀ ନଗରରେ-
ବଙ୍ଗର ନବାବ ବିଧର୍ମୀ ଯବନ-
ତୋଗାନ ଖାଁ ଧୂର୍ତ୍ତ ଓ ଦୁର୍ମତି
ଭୁଲି ପୂର୍ବ ପରାଭବ, କଳିଙ୍ଗର ଶକ୍ତି,
କରିଅଛି ଆକ୍ରମଣ
ଉତ୍ତର ସୀମାନ୍ତ;
ଘେନି ସାହସିକ
କଳିଙ୍ଗ ପାଇକ
ଅଶ୍ୱ, ଗଜ, ରାଉତ, ମାହୁନ୍ତ ଆଦି
ସେନାପତି ଆଗୁସାର
ବୀର ବିକ୍ରମରେ
ରକ୍ତ ଲିପ୍ତ ଅସି-ମୁନେ
ନେବା ପାଇଁ ସମୁଚିତ ପ୍ରତିଶୋଧ ।
ଦକ୍ଷିଣ ବନ୍ଦରୁ ଆଗତ
ଶତ ଶତ ରଣତରୀ
ଚାରିତ୍ର୍ୟ ନୌବହର ସହିତ ମିଳିତ,
ସ୍ୱୟଂ ମହାରାଜା ନରସିଂହ
ଅଗ୍ରି ଦଳନେ
ରଚିଲେକ ଦୃପ୍ତ ଅଭିଯାନ
ନେଇ ଏହାର ନେତୃତ୍ୱ ।
ପୁରପଲ୍ଲୀ ପରି
ଚନ୍ଦ୍ରଭାଗା ତୀରେ
ଚାରିତ୍ର୍ୟ ନଗରେ
ଉଷ୍ଣ ଉତ୍ତେଜନା
ମନାସିଣ ମହାରାଜାଙ୍କ ବିଜୟ
ଅହର୍ନିଶ, ଦେବଦେବୀ ଆରାଧନା ।

ମାସାନ୍ତରେ ଦ୍ରୁତଗାମୀ ତରୀ
ଅଶ୍ୱାରୋହୀ ଚାର
ପ୍ରବେଶ ହୋଇଲା ଏଇ ବନ୍ଦର ନଗର
ଘେନି ବିଜୟର ଶୁଭ ସମାଚାର-
ଦର୍ପିତ ପଦପାତେ କଳିଙ୍ଗର
ଦୁର୍ଜ୍ଜେୟ ପାଇକ ଓ କୈବର୍ତ୍ତ ବାହିନୀ
ସିଂହ ଦେଖି ଶଶା ସମ
କଲେ ପଳାୟନ
ଭୀରୁ ଯବନ ସଇନି ।
ଗଙ୍ଗା ନୀର ରକତ ରଞ୍ଜିତ
ନବାବର ଅର୍ଦ୍ଧରାଜ୍ୟ ସହ
ରାଜଧାନୀ ବୀରଭୂମି
କଳିଙ୍ଗର ହେଲା ଅଙ୍ଗୀଭୂତ;
ଲକ୍ଷ ଲକ୍ଷ ସ୍ୱର୍ଣ୍ଣମୁଦ୍ରା
ଅସୁମାରି ମଣି, ମୁକ୍ତା, ରତ୍ନ ଘେନି
ଜଳପଥେ ମହାରାଜା
ଫେରୁଛନ୍ତି ରାଜଧାନୀ ।
ପାଇ ଏ ସମ୍ବାଦ
ଜନ ସମାଜ ଉନ୍ମତ୍ତ
ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ,
ଜଳେ ମଙ୍ଗଳ ପ୍ରଦୀପ,
ରାଜପଥ ପୂର୍ଣ୍ଣ ତୋରଣରେ
ଉଦ୍‌ବେଳିତ ଜନତା ସମୁଦ୍ର
ରୁଣ୍ଡ ବନ୍ଦରରେ,
ଦିଗ୍‌ବିଜୟୀ ରାଜା ପ୍ରତୀକ୍ଷାରେ ।
ଦୂରୁ ଶୁଭେ ବାଦ୍ୟନାଦ
ବୀର କାହାଳୀ ଲହର,
ସିନ୍ଧୁ ସମୀରଣେ
ସୁଦର୍ଶନ ଲାଞ୍ଛିତ ପତାକା
ଉଡ଼େ ଫରଫର ।

ସମବେତ କଣ୍ଠ ଝରିଲା ସଘନେ-
'ଜୟ ନରପତି ନରସିଂହ ଜୟ',
ତା ସହିତ ନାନାବାଦ୍ୟ
ହୁଳହୁଳୀ ଶଙ୍ଖନାଦେ
ଚାରିଦିଗ ସ୍ତବ୍ଧ,
ମହାରାଜା ଗଜପତି ବିଜେ
ପାଟହାତୀ ପରେ,
ପାତ୍ର, ମନ୍ତ୍ରୀ, ପାରିଷଦ
ଆରୋହିଲେ ଏକେକ ଗଜରେ
ବେଢ଼ିଛନ୍ତି ଅଙ୍ଗରକ୍ଷୀ
ଅଶ୍ୱାରୋହୀ ବୀର
ପରିଚାରୀଗଣ ସହ ହସ୍ତୀ
ଢାଳନ୍ତି ଚାମର
ସମ୍ମୁଖ ଭାଗରେ ଦର୍ପେ ଢଳି ଢଳି
ପ୍ରମତ୍ତ ନୃତ୍ୟରେ ମତ୍ତ
ବିଜୟୀ ପାଇକ
କରେ ଉତ୍ତୋଳିତ ଅସ୍ତ୍ର, ଶସ୍ତ୍ର,
ମହାରାଜାଙ୍କର ଶିରେ
ବରଷନ୍ତି ଫୁଲ
ଚଢ଼ି ରାଜପଥ ପାର୍ଶ୍ୱ ପ୍ରାସାଦର ଚୂଳ
ନଗରର ପୁରାଙ୍ଗନା କୁଳ ।
ଅଶ୍ୱଗଜ ପୃଷ୍ଠେ
ଅବା ଶକଟରେ
ଧନରତ୍ନ ପୂର୍ଣ୍ଣ ଅସଂଖ୍ୟ ପେଟିକା
ରାଜ କୋଷାଗାରେ
ହୁଅଇ ପ୍ରେରିତ
ରକ୍ଷୀ ଗହଣରେ ।

ସ୍ଥପତି ଓ ଯନ୍ତ୍ରୀ
ଶିଳ୍ପୀ କାରିଗର
ମନ୍ଦିର ନିର୍ମାଣେ

ସଦା ତତ୍‌ପର ସତ୍ତ୍ୱେ
ଶେଷ ନ ହୁଅଇ
ଅନନ୍ୟ କୀରତି;
ସ୍ୱୟଂ ନରସିଂହ ନରପତି
ବୁଲି ନିରୀକ୍ଷନ୍ତି, କାର୍ଯ୍ୟ ଅଗ୍ରଗତି ।
ଦିନେ ରାଜା ସ୍ଥିର ସ୍ତମ୍ଭୀଭୂତ
ପାଷାଣେ ଖୋଦିତ
ଅଭିସାରିକାର ପାର୍ଶ୍ୱ,
କରିବାପାଇଁ ତହିଁରେ ଜୀବନ ସଞ୍ଚାର
ନିମଜ୍ଜିତ ସ୍ରଷ୍ଟା ସୃଷ୍ଟି କଳ୍ପନାରେ
ପ୍ରେମ, ଭୀତି, ଉତ୍ସାହର ଭାବ
ଶୋଭାଙ୍ଗୀ, ଭୂଭଙ୍ଗୀ ବିକାରରେ ଠୁଳ,
ବାମ ହସ୍ତେ ପୟରର ବାଜେଣି ନୂପୁର
ଓଢ଼ଣି ଉପରେ ନ୍ୟସ୍ତ,
ବାମା ବାମେତର କର ।
ଅଧରୋଷ୍ଠେ ମାଠି, କରିବାକୁ ଭାବବ୍ୟକ୍ତ
ଶିଳ୍ପୀସତ୍ତା ବିହ୍ୱଳିତ
ଭାବାବଶେ ବାହ୍ୟଜ୍ଞାନ ଶୂନ୍ୟେ
ଜାଣି ନ ପାରଇ
ପାଶେ ତାର ସହକାରୀ ନାହିଁ.
ବାମହସ୍ତ ପ୍ରସାରିଣ ପୃଷ୍ଠେ
ଆବେଗରେ ମାଗେ ପାନଖିଲେ
ବିମୁଗ୍ଧ ରାଜନ,
ସ୍ୱ ତାମ୍ବୁଳପାତ୍ରୁ ପାନଖିଲେ ନେଇ
ତା'ର ହସ୍ତେ ଗୁଞ୍ଜି ଦେଲେ,
ପାଇବା ମାତ୍ରକେ ଶିଳ୍ପୀ
ତାହା କଳେ ଭରି,
ଅପୂର୍ବ ମହକେ ତା'ର ପ୍ରାଣ ଗଲା ପୂରି
ପୁଲକ ବିସ୍ମୟେ ପୃଷ୍ଠେ ଚାହିଁ

ଦେଖି ମହାରାଜ
ଭୟରେ କମ୍ପଇ ।
ପ୍ରେମ ଗଦଗଦେ
ରାଜା ଧରି କୋଳେ
ବୋଇଲେ 'ହେ କବି !
ଦେଖି ହେଲି ଧନ୍ୟ
ତୁମପରି ଏକନିଷ୍ଠ ଶିଳ୍ପୀ
ମୋ ରାଜ୍ୟେ ଅଛନ୍ତି'
କଣ୍ଠୁ ଖୋଲି ଏକ ରତ୍ନହାର
ସ୍ନେହେ ଲମ୍ଵାଇଲେ ଶିଳ୍ପୀର ଗଳାର ।
ମୁଖଶାଳା, ନାଟ୍ୟଶାଳା
ପାର୍ଶ୍ୱଦେବ ଦେବୀଙ୍କ ମନ୍ଦିର
ହେଲା ସମାପନ,
ଦଧିନଉତି ବସିଲେ ପ୍ରଧାନ ମନ୍ଦିର
ହୋଇବ ସମ୍ପୂର୍ଣ୍ଣ,
ଯେତେଥର ମିଳି ଶିଳ୍ପୀକୁଳ
ସ୍ଥାପନ୍ତି ଅଁଳାବେଢ଼ା
ଗର୍ଭଗହ୍ୱର ଉପର
ଭାରସାମ୍ୟ ହରାଇଣ
ତାହା ସ୍ଥାନ ଚ୍ୟୁତ
ବାରଶ ବଢ଼େଇ ହେଲେ
ଘୋର ଆତଙ୍କିତ ।
ବିଳମ୍ଵ ଅସହ୍ୟ
ମହାରାଜା କ୍ରୁଦ୍ଧ ଅତିଶୟ,
ପ୍ରଚାରିତ ଦାରୁଣ ଆଦେଶ-
ସାତ ଦିନ ମଧ୍ୟେ
ମନ୍ଦିରର ମୁଣ୍ଡି ନ ମରିଲେ
ବାରଶହ ବଢ଼େଇଙ୍କ ମାଥ
ହେବ ସ୍କନ୍ଧଚ୍ୟୁତ ।

ଶିଳ୍ପୀ ସମାଜେ ଭାଳେଣି
ପାଟଶିଳ୍ପୀ 'ବିଶୁ' ଖୋଜନ୍ତି ଉପାୟ
ଅଭିଜ୍ଞ ଓ ବୟୋବୃଦ୍ଧ
ବିଜ୍ଞାଣିଙ୍କୁ ଘେନି ।
କର ଥାପି ମସ୍ତକରେ
ଏକାନ୍ତେ ବସିଣ ଆଶ୍ରୟ କୁଟୀରେ
ଗ୍ରାମ ଦେବୀ ଝାଗୁଳେଇ ସୁମରନ୍ତି
ଅର୍କକ୍ଷେତ୍ରେ ଆସିବା ପୂର୍ବରୁ
ସରଳା, କୋମଳା
ପ୍ରିୟା ଚାନ୍ଦମୁହାଁ
ଥିଲା ଗର୍ଭବତୀ,
ଜାଣି ନ ପାରିଲି
କି ହେଲା ସନ୍ତତି ?
ମୃତ୍ୟୁ ମୋ ଅସନ୍ନ
ତାହା ପୂର୍ବୁ ନ ଦେଖିବି
ଆତ୍ମୀୟ ସ୍ୱଜନ,
ଗାଆଁ ମାଟି, ତୋଟା, ବିଲବଣ
ପ୍ରିୟ ବାରମାସୀ ବାଡ଼ି-
ବରକୋଳି ଗଛ
ଶଇଶବେ ଯହିଁ ଚଢ଼ି
ଖାଉଥିଲି କୋଳି;
ଖେଳୁଥିଲି ଦୋଳି,
ନଦେଖି ସନ୍ତାନ ମୁଖ
ବିଦେଶରେ ତେଜିବି ପରାଣ
ଏହାକି କପାଳେ ମୋର
ବିଧାତାର ନିଷ୍ଠୁର ଲିଖନ ।
ଏ ସମୟେ ପଡ଼ୋଶୀ ମୁଖରୁ
ଶୁଣିଲେ ସେ 'ଏଇ...
ବିଶୁ ମହାରଣା ବସାଘର'

ସାଥେ ସାଥେ
ଏକ ଶାନ୍ତ, ସୁନ୍ଦର କିଶୋର
ବାପା, ବାପା, ବୋଲି କହି,
ପଡ଼ିଗଲା, ପାଦତଳ
ସଙ୍ଗେ ତା'ର ପରିଚିତ
ବୃଦ୍ଧ 'ବଳିଆ' କୁକୁର
ଶୁଙ୍ଘି ଦେହ, ଲାଞ୍ଜ ହଲାଇଣ
ହୁଏ ପାଶେ ଲଡ଼ବଡ଼ ।
ସୁକୁମାର ବାଳକଟି
ନେଇ ପିତୃ ଚରଣର ଧୂଳି
ମାରିଣ ମଥାରେ
ପୁଟୁଳିରୁ ବାପ ହସ୍ତେ
ସରାଗରେ ଦେଲା
ବାଡ଼ି ବରକୋଳି ।
କହିଲା ସେ ଧୀରେ–
ବାରବର୍ଷ ତଳେ
ତୋଳିବା ନିମିତ୍ତ
ଧର୍ମଦେବତାଙ୍କ ରଥ
ଆସିଲେ ଏଠାରେ
ମାଆ ଦେଲେ ଶ୍ରଦ୍ଧାରେ ମୋ
ଧର୍ମପଦ ନାମ,
ନ ପାଇଣ ଜନ୍ମକାଳୁ ତବ ଦରଶନ
ପ୍ରାଣ ମୋ ବିଷଣ୍ଣ,
ନେଇ ମାତୃଆଜ୍ଞା
ପଚାରି ପଚାରି ବାଟ
ବହୁକଷ୍ଟେ ଆସିଛି ଏ ଧାମ ।
ମହାରଣା ଭାବ ବିହ୍ୱଳରେ
ପୁତ୍ର ଧରି କୋଳେ,
ଧୋଇଲେ ତା ବଦନ ମଣ୍ଡଳ
ଅବାରିତ ଅଶ୍ରୁ ନୀରେ ।

ଭାବ ଗଦ ଗଦ ସ୍ୱରେ
କହିଲେ, 'ବାବୁରେ,
ମରଣ ପୂର୍ବରୁ ଦେଖିଲି ତୋ ଚନ୍ଦ୍ରମୁଖ
ଅପସରି ଗଲା ଆଜି
ସବୁ ମୋର ଦୁଃଖ ।
ଧର୍ମପଦ ପିତା କୋଳେ ବସି
ପଚାରି ଜାଣିଲା,
ଦେଉଳ ତୋଳାର ସମସ୍ତ ବୃତ୍ତାନ୍ତ
ରାଜାଙ୍କର କଠୋର ଆଦେଶ,
ଆଉ ତିନି ଦିନ ମଧ୍ୟେ
ନ ମାରିଲେ ଦେଉଳର ଚୂଳ
ବାରଶହ ବଢ଼େଇଙ୍କ ହେବ ଶିରଚ୍ଛେଦ ।
ଦେଲା ସେ ସାନ୍ତ୍ୱନା-
ଅଧୈର୍ଯ୍ୟ ହୁଅନା
ଘରେ ଥିବା ଶିଳ୍ପଶାସ୍ତ୍ର ପଢ଼ି
ରଥଦେଉଳର ନିର୍ମାଣ କୌଶଳ
କରିଛି ଆୟତ୍ତ
ଅବଶ୍ୟ ହୋଇବ ଶେଷ
ଯଥା କାଳେ ସବିତାଙ୍କ ରଥ ।
ନେଇ ପିତୃ ଅନୁମତି
କଲା ଆକଳନ
ଦେଉଳ ପତନ
ବାଡ଼, ଭାରକେନ୍ଦ୍ର ସ୍ଥିତି;
ଫେରି କଲା ଅନୁରୋଧ
ଶିଳ୍ପୀକୁଳ ସହଯୋଗେ
ଆଜି ଏଇ ପୂର୍ଣ୍ଣମୀ ରାତିରେ
ନିଶ୍ଚୟ ପଡ଼ିବ ଦେଉଳରେ ମୁଦ,
ଦଧିନଉତିରେ
ପଦ୍ମ କଳସରେ

ପଦ୍ମଧ୍ୱଜ ଦଣ୍ଡ,
ହୋଇବ ସ୍ଥାପିତ ।
ଦଧିନଉତି ସ୍ଥାପନ ପାହାନ୍ତାରେ ଶେଷ
ଶିଳ୍ପୀକୁଳେ ଆନନ୍ଦ ଉଚ୍ଛ୍ୱାସ,
ପର ମୁହୂର୍ତ୍ତରେ ସନ୍ଦେହ, ଆଶଙ୍କା
ଅସୂୟାର ବିଷ
ଶିଳ୍ପୀ ସମାଜକୁ କରିଲା ଅବଶ;
ମୁଖିଆ ସକଳ ମିଳି ଜଣାଇଲେ
ବିଶୁ ମହାରଣା ପାଶ-
ସେ ତ ଚପଳ ବାଳକ
ତାହାଠାରେ ଅବା
ଅଛି କି ବିଶ୍ୱାସ ?
ବଞ୍ôଥିଲେ ପ୍ରଚାରିବ ତା'ର
ପ୍ରୌଢ଼ି, ଯଶ, ପଉରୁଷ,
ଫଳେ ରାଜରୋଷ
ବଢ଼ିବ ଅଶେଷ,
ପରିଣାମ ହେବ ଭୟାବହ
ସମସ୍ତ ବଢ଼େଇ କୁଳ,
ହୋଇବେ ନିର୍ବଂଶ ।
ହେ କୁଳ ସାମନ୍ତ, ବାଛି ନିଅ,
ପୁଅମୋହ, ଜାତିଦାୟ ମଧ୍ୟେ
କିଏ ଅଟେ ଶ୍ରେୟଃ ?
ଶୁଣି ଜାତିଭାଇଙ୍କ ବିଚାର
ବିଶୁ ମହାରଣା
ଅଥର୍ବ ଓ ଜଡ଼
ଧର୍ମପଦ ହାତଯୋଡ଼ି କରିଲା ବିନତି-
ହେ ଜନକ ! ଘେନ ମୋ ମିନତି,
ଶାସ୍ତ୍ର କହେ କ୍ଷୁଦ୍ର ବ୍ୟକ୍ତି ସ୍ୱାର୍ଥ ପାଇଁ
ଜାତି ବିସର୍ଜନ

ନୁହଇ ବିଧାନ,
ଏତେ କହି ନେଇ
ପିତା ଚରଣର ଧୂଳି
ଝଡ଼ବେଗେ ହେଲା ଅନ୍ତର୍ଧାନ
ମହାସିନ୍ଧୁ ଉତ୍ତାଳ ତରଙ୍ଗେ
ଝାସ ଦେଇ ହୋଇଗଲା ଲୀନ ।
ଗଣ ପାଇଁ ଜଣ,
ଜାତିପାଇଁ ବ୍ୟକ୍ତି ଆତ୍ମଦାନ-
ଆଦର୍ଶର ବିରଳ ଦୃଷ୍ଟାନ୍ତ
ରୂପେ ଧର୍ମପଦ
ନିରବଧି କାଳ ବିପୁଳା ପୃଥ୍ୱୀରେ
ଚିରକାଳ ଲାଗି,
ହେଲା କୀର୍ତ୍ତିଷ୍ମାନ ।
କିନ୍ତୁ ବାଳକର ଆତ୍ମତ୍ୟାଗ ସତ୍ୟ
କିଛିକାଳ ରହିଗଲା ଗୁପ୍ତ
ନ ଜାଣି ତା ରାଜା
ମନ୍ଦିର ପୂର୍ଣ୍ଣାଙ୍ଗ ଦେଖି
ପରମ ସନ୍ତୋଷ,
ନିରୂପଣ ପାଇଁ ପ୍ରତିଷ୍ଠା ଦିବସ
ଅବିଳମ୍ୱେ ରାଜ-ଜ୍ୟୋତିଷଙ୍କୁ
ଡକାଇଲେ ପାଶ ।
ରାଜ-ଜ୍ୟୋତିଷ ପ୍ରବର
ରାଜକୋଷ୍ଠୀ ଦେଖି
କେଇକ୍ଷଣ ସ୍ଥିର,
କହିଲେ, 'ରାଜାଧିରାଜ,
ଅକାଳରେ ମନ୍ଦିର ପ୍ରତିଷ୍ଠା
ନୁହଇ ବିଧାନ,
ଦେବ ସବିତାଙ୍କ ପ୍ରିୟ
ପୁଣ୍ୟ ଉତ୍ତର ଅୟନେ

ମନ୍ଦିର ଓ ବିଗ୍ରହ ପ୍ରତିଷ୍ଠା
ହେବା ସମୀଚୀନ ।'

ଶନିବାର ସ୍ୱାତୀ ନକ୍ଷତ୍ରରେ
ଆସୁଛି ଏସନ ମହାକାଳୀ ପୂଜା
ଭକ୍ତ ଓ ତାନ୍ତ୍ରିକ ବ୍ୟସ୍ତ ଯୋଗାଡ଼ରେ
ଛାଗ ମେଷ ଆଦି ବହୁ ବଳି ଭୋଜା
ଦୀପଦାନ, ପିତୃଶ୍ରାଦ୍ଧ ପରେ
ସାଧବଙ୍କ ବିଦେଶ ଗମନ
ମରାମତି କାର୍ଯ୍ୟ-ଶେଷ ବୋଇତର
ନୂଆ କେତେ ବୋଇତ ନିର୍ମାଣ,
ହୋଇଲାଣି ପୂର୍ଣ୍ଣ
ଦଳଦଳ ଶ୍ରମଜୀବୀ
ପଣ୍ୟଦ୍ରବ୍ୟ କରନ୍ତି ଲଦାଣ
ଖଜାଲଡୁ, ରସକୋରା
ମୁଆଁ, ଆରିସା, ଉଖୁଡ଼ା
ନାନାବିଧ ରହଣି ମିଷ୍ଟାନ୍ନ
ଜାଇବଡ଼ି, ଚୂଡ଼ା
ମୁଢ଼ି, ହୁଡୁମ୍ବ ଚାଉଳ
ତିଆରିରେ ନିୟୋଜନ
ପରିବାରୀ, ପରିଜନ ।
ଦାସ-ଦାସୀଙ୍କୁ ତିଆରି
ସାଧବାଣୀ ବୁଢ଼ୀ
ସାଇତି ସଜାଡ଼େ
ପୁଡ଼ି ପୋଟଳାରେ,
ଆଳୁ, ସାରୁ, କନ୍ଦମୂଳ
କଖାରୁ, ବୋଇତଆଳୁ
ନା ନା ଫଳମୂଳ,
ଖଣିଦିଆ ବନ୍ତଳ କଦଳୀ
ଭଳି ଭଳିକା ଶୁଖୁଆ

## ୫୫୦ କବିତା  କୋଣାର୍କ

ହଳଦୀ ବା ଲୁଣେ
ହୋଇଅଛି ଜୁଆ ।
ସାଧବ ବୋହୂର ବିରହ ଆସନ୍ନ
କାନ୍ତେ ପରଷଇ ମନ ଲାଖି କେତେ
ଅନ୍ନ ଓ ବ୍ୟଞ୍ଜନ
ଆୟତ ଆଖିରେ କିନ୍ତୁ ଲୁହ ଢଳଢ଼ଳ
ମନ ଛନ ଛନ
ତାରୁ ବଦନ ମଳିନ ।
ଚତୁର୍ଦ୍ଦଶୀର ସଞ୍ଜରେ
ହସିହସି ବିଞ୍ଚି ବିଞ୍ଚି
ଲୋହିତ ଅବିର
ରବି ହେଲେ ଅସ୍ତ
ଆକାଶେ ଫୁଟିଲା
ଅୟୁତ ଅୟୁତ
ଧବଳ ଟଗର ।
ପାହାନ୍ତା ପହରୁ
ଗଗନ ଆଚ୍ଛନ୍ନ
ଗାଢ଼ କୃଷ୍ଣଘନ,
ସୁଆଡିଆ ବହଇ ପବନ ।
ଶୁଭେ ଗୁରୁଗୁରୁ ନିର୍ଘାତ ଗର୍ଜନ ।
ସକାଳୁ ସକାଳୁ ଘୋଟେ
କଳାଘୁମୁର ଅନ୍ଧାର
ଜଳ ବରଷଇ ମୂଷଳ ଧାରାର,
ଦରିଆରେ ଉଠେ ଉତ୍ତାଳ ତରଙ୍ଗ
ବେଳୁ ବେଳ ବଢ଼େ
ପବନର ବେଗ ।
ବେଳ ରତରତ
ପବନ ନିଥର
କିଛି କ୍ଷଣ ପାଇଁ

ଲଗାଣ ବରଷା ହୋଇଲା ବି ଥିର,
ଦେବ ଦିବାକର ଚକ୍ରବାଳ ତଳେ
ସ୍ମିତ ହସି ନେଲେ
ମେଲାଣି ସତ୍ୱର ।
ପର ମୁହୂର୍ତ୍ତରେ
କ୍ରୂର ମହାକାଳ
ମେଲି ଦେଲା ତା'ର
ଘନ କେଶ ଜାଲ
ଆକାଶରୁ ଭରି ସାରା ଭୂମିତଳ;
ସହସା ଉଠିଲା
ଆର୍ତ୍ତ ବିକଟାଳ
ପଶୁପକ୍ଷୀ ରୋଳ ।
ବିଶ୍ୱଧ୍ୱଂସୀ କାଳ ପ୍ରଖର ନିଃଶ୍ୱାସ
ପ୍ରାୟ ସନସନ ବାୟୁ ଅଣଚାଷ
ଶତସୂର୍ଯ୍ୟ ସମ ଜ୍ୟୋତି
ଆଲୋକ ମଣ୍ଡଳ
ଘୋର ଘର୍ଘର ନାଦରେ
ଘୂରେ ଧରା ଓ ଅମ୍ବର
ଥରହର କମ୍ପିଲା ମେଦିନୀ
ଲୋଟିଲା ଭୂତଳେ
ମନ୍ଦିର, ଅଟ୍ଟାଳୀ, କୁଟୀର, ଝୁପୁଡ଼ି,
ତରୁଲତା ଆଉ ଜୀବଜନ୍ତୁ ଘେନି ।
ସାଗର ଧରିଣ ରୂପ ଭୟଙ୍କର
ବିକଟ, କରାଳ
ପଡ଼ିଲାକ ମାଡ଼ି,
ଘେନି ଉର୍ମିପଳ
କ୍ରୋଧରେ ରଗଡ଼ି ଦାନ୍ତ ଧାଡ଼ି ଧାଡ଼ି,
ହାଇ ! ହାଇ !
ପ୍ରଳୟ ପୟୋଧି ଜଳେ

ଚିହ୍ନ ବର୍ଣ୍ଣ ଲୀନ
ଦୃପ୍ତ ମାନବ ସଭ୍ୟତା, ଗର୍ବ ଅଭିମାନ ।

କଳା ରାଜ୍ୟେ ଅନୁପମା
କୋଟି ଲାବଣ୍ୟର ସୀମା
ସେ ଦେଉଳ ରାଜ,
ଅଦୃଷ୍ଟର ପରିହାସେ
କୈଶୋରରେ ମୃତ
ସ୍ମୃତି ଅବଶେଷ-
ମୁଖଶାଳା ମାତ୍ର,
ମଞ୍ଜୁଳ ବର୍ଣ୍ଣିଳ
ଐଶ୍ୱର୍ଯ୍ୟ ଆକର
ଚାରିତ୍ର୍ୟ ନଗର,
ଅକାଳେ ଲଭିଲା
ସେ ଅନ୍ତିମ ଦଶା
ଦ୍ୱାପରାନ୍ତେ ଦ୍ୱାରକା ପ୍ରକାର
ମନ ଘେନା ମିଠାକଥା ପଦେ
କହିବାକୁ, ଶୁଣିବାକୁ କେହି ନାହିଁ-
'ଏଇ ଶେଷଥର ଗୋରୀ
ମା'ଲକ୍ଷ୍ମୀ ହୋଇଲେ ପ୍ରସନ୍ନ
ଆଉ ନ ଯିବି ବିଦେଶ
ବାନ୍ଧି ହୋଇ ତୋ ପିନ୍ଧା କାନିରେ
ରହିଥିବି ସଦା ଛାଇପରି ।'
କିଏ ଦେବ କାହାକୁ ପ୍ରବୋଧ-
'ଚାନ୍ଦମୁହିଁ ନ କାନ୍ଦ ନ କାନ୍ଦ
ବେଉଷା ହେଉ ନ ହେଉ
ନ କରିଣ ଡେରି
ପୁଅ ଏକୋଇଶା ପୂର୍ବୁ
ଆସିବି ଗୋ ଫେରି ।

ବିଦାୟ ବେଳାରେ-
ବୁଝାଇ ଗେହ୍ଲାଇ
କହିବାକୁ କେହି ନାହିଁ
"ସୁନାନାକୀ ଭଉଣୀ ମୋ
କରନା ତୁ ମନ ଊଣା,
ଆଣିବି ବିଦେଶୁଁ
ହୀରା, ନୀଳା, ମୋତି
ସୁନାରି ଡକାଇ
ଗଢ଼ିବି ତୋ ପାଇଁ
ନୋଥ, ଗୁଣା, ନାକଚଣା ।"
ନାହିଁ ଜୀବୀସତ୍ତା
ଜୀବ, ଜନ୍ତୁ, ତରୁ, ତୃଣ, ଲତା,
କାହୁଁବା ଆସିବ-
ମଥାରେ ସିନ୍ଦୂର ଦେବା
ଖଇ-କଉଡ଼ି ବୁଣିବା;
ଗଙ୍ଗାମାଟି ତିଳକ ଆଙ୍କିବା
ନୂଆ ବସ୍ତ୍ରେ ଘୋଡ଼ାଇବା
ଅବିର ବିଞ୍ଚିବା;
ବାହି ବାହି ଚୁଡ଼ି ଭାଙ୍ଗିଦେଇ
ପୋଛି ସିନ୍ଦୂରକୁ
ବାହୁନି ବାହୁନି
ମୁଣ୍ଡକୁ କୋଡ଼ିବା ।
ନାହିଁ ରଡ଼ି, କୁହାଟ ଓ ଦାନ୍ତ କଡ଼ମଡ଼
ଡେଣା ଫଡ଼ଫଡ଼
ମାଂସଭକ୍ଷୀ ପଶୁପକ୍ଷୀଙ୍କର
ଘରପୋଷା ଜୀବଙ୍କର
ନାହିଁ ସ୍ୱର ଶବ୍ଦ,
ଶୁଆ ନାହିଁ, ଶାରୀ ନାହିଁ
କାଉ ଓ କୁକୁର ନାହିଁ

ସବୁ କିଛି ନୀରବ ନିସ୍ତବ୍ଧ;
ଛଣେ କିଏ ରହି ନାହିଁ
କହିବାକୁ ଅନ୍ତର ବେଦନା
ଖୋଲି ରୁଦ୍ଧ ହୃଦ ।
ନାହିଁ ନାହିଁ ମଧ୍ୟେ
ଅଛି ମାତ୍ର
ରମଣୀୟ କଳାର କଙ୍କାଳ,
ସୂର୍ଯ୍ୟ, ଚନ୍ଦ୍ର ତାରା
ବାଲି, ମାଟି, ପବନ ଓ ଜଳ
ସର୍ବଦର୍ଶୀ ମହାଶୂନ୍ୟ
ଉଦାସୀ ଅମ୍ବର
ଉଦାତ୍ତ ସାଗର ।

ଉଦବୃତ୍ତ ପାଣି
ସାଗରେ ଗଲାଣି
କିଛି ଶୁଖିଲାଣି
ସତ୍ତାହୀନ ଶ୍ରୀମନ୍ତ ନଗର,
ସୁଗଭୀରା ସ୍ୱଚ୍ଛନୀରା
ଚନ୍ଦ୍ରଭାଗା ତିଟିନୀର,
ଅଛି ମାତ୍ର-
ବାଲିବନ୍ତ, ଜଳପୂର୍ଣ୍ଣ ଖୋଲ
ତୃଣହୀନ ବାଲୁକା ପ୍ରାନ୍ତର ।
ସମୁଦ୍ର ତଟରେ
ସରିତ-ସାଗର ସଙ୍ଗମର ସ୍ଥଳେ
ଶଙ୍କୁ ରୂପେ ବିଦ୍ୟମାନ-
କ୍ଷୁଦ୍ର ଜଳାଶୟ;
ଚନ୍ଦ୍ରଭାଗା ଉପତ୍ୟକା
ତରୁ, ତୃଣ ଜନପ୍ରାଣୀ ଶୂନ୍ୟ
କୁଦ, ଖାଲ, ଖମଣାରେ ପୂର୍ଣ୍ଣ
ଖଣ୍ଡିତ କଙ୍କାଳ

ବିକଟ କାନ୍ତାର ।
କାହିଁ ସେହି ରମ୍ୟ ନଦୀ ତୀର ?
ଶସ୍ୟରେ ଶ୍ୟାମଳ
ଶତ ଶତ ବୋଇତର ଚଳାଚଳ,
ସନ୍ତତ ପୂରିତ ଜନ କୋଳାହଳ;
ସେଇ ଶୋଭାର ସଦନ
ଅନୁର୍ବର ବାଲି, ଖାରିମାଟି
ଉଷର ପଦା, ପ୍ରାନ୍ତରେ
ପାଟ ଜୋର, ସରେ
ନିର୍ଜନ ଓ ନିକାଞ୍ଚନ,
ହଜିଲା ଗଉରବର ମହା ଶମଶାନ ।
ଲୁଚି ସରଗର ଶିରୀ
ରୂପ ଜୋଛନା ଲହରୀ
ଖେଳୁଥିଲା ଯେଉଁ କମ୍ର ଅପଘନେ
କାଳ କବଳରେ ସହସା ଘୋଟିଣ
କାଳ ରାହୁଛାୟା
ବିଶ୍ୱ ମାନଚିତ୍ରୁ
ପୋଛିଦେଲା ତା'ର ନାଆଁ ।
ବାହ୍ୟଜ୍ଞାନ ଶୂନ୍ୟେ
ମୋର ଚିଦାଲୋକ
ଦେଖୁଥିଲା ସୁନେଲୀ ସପନ
ଆହା, ତାହା ଏବେ ବିବର୍ଣ୍ଣ ବିଷଣ୍ଣ ।
ରୁକ୍ଷ ବାସ୍ତବତା କଲା ଆନମନା
କାରୁଣ୍ୟ ଜଳରେ ମନ ଗଲା ଭିଜି
ହଜିଲା ସପନ ରାଜି
କ୍ଷଣେ ଗଲା ଭାଜି
ବାହୁଡ଼ିଲା ଅତୀତକୁ
ଖାଲି ହେଜି ହେଜି ।

## ୫୫୬ କବିତା  କୋଣାର୍କ

ପ୍ରହରେକ ବେଳ
ଖରା ଝଲମଲ
ବଢ଼ିଅଛି ଯାତ୍ରୀଙ୍କ ଗହଳ
ପୂର୍ବବତ ମାଛଧରା ରତ
ନୋଳିଆ ନଉକା, ଯନ୍ତ୍ର ତରୀମାଳ
ଉଡ଼ାଇଣ ନାନା ରଙ୍ଗ ପାଲ ।
ସେ ଦିଗୁ ମୁହଁ ଫେରାଇ
ଚାହେଁ ନଦୀପଥ
ଶଇଶବୁ ଯାହା ଚିର-ପରିଚିତ,
ହୋଇଅଛି ପର
ଜୀବନରେ ବହୁବାର
ସେଇ ଜୋର, ସର ଓ କାନ୍ତାର,
ବେଣା, ଖେର, ସନ୍ତରାର ବଣ
ନାନା ଜାତି ଦଳେ ଆଉ ନୀଳେପୂର୍ଣ୍ଣ
ଦୀର୍ଘ ତୃଣର ଅରଣ୍ୟ ।
ଜଳତମ୍ପ, ନାଗ ପ୍ରିୟ ବାସସ୍ଥାନ
ପଥିକ ହୃଦୟେ ଜଗାଏ କମ୍ପନ...



(ସଂପାଦିତ ଅଂଶ)

# କୋଣାର୍କ ଦର୍ଶନ

ନୃସିଂହଚରଣ ରାଉତ

ହାସ୍ୟମୟୀ ଲାସ୍ୟମୟୀ ଶିଳାର ଜୀବନ୍ତ ପ୍ରତିମା
କଥା କହେ ଯେଉଁଠାରେ
ଉତ୍କଳର ଚାରୁକଳା ସ୍ଥାପତ୍ୟ ଗରିମା !

ପଢ଼ିଥିଲି ବହୁ ପୁସ୍ତକରେ
ସେ ମନ୍ଦିର ଆଶ୍ଚର୍ଯ୍ୟ ବର୍ଣ୍ଣନା
ଦିଦୃକ୍ଷାର ପ୍ରବଳ ଇଚ୍ଛାରେ
ଭ୍ରମୁଥିଲା ଦୃଷ୍ଟି ମୋର
କରି ବହୁ ଅପୂର୍ବ କଳ୍ପନା ।

ଦେଖିଲି ସେଦିନ
ଅବଲୁପ୍ତ ଚନ୍ଦ୍ରଭାଗା ଶୁପ୍ତ ବାଲୁଚର କୋଳେ
କାନ୍ଦୁଥିଲା କ୍ଷତାକ୍ତ କୋଣାର୍କ
ଓଡ଼ିଆ ପୁଅ ମୁଁ
ହୃଦ ମୋର ବିଦୀର୍ଣ୍ଣ ହେଲା
ତା ଆର୍ତ୍ତ ବିକଳେ ।

ଭାବିଲି ମୁଁ
ପଢ଼ିଥିଲି ଯାହା
ତାହା କ'ଣ ଥିଲା ମାତ୍ର
କବିର କାବ୍ୟିକ ବିଳାସ ଭାବନା

କବିତାର ସୌଷ୍ଠବ ଲାଗି
କାଳ୍ପନିକ ଶବ୍ଦର ଆଶ୍ରୟ
ନିଜ ପାଖେ ନିଭୃତ ଛଳନା ?
କାହିଁ ସେ କୋଣାର୍କ
ଯେତ ସିଏ ନୁହେଁ ?
ମନରେ ଉଦ୍ରେକ ହେଲା କେବଳ ସେଦିନ
ଏଇ ପ୍ରଶ୍ନ ବାଚ ।



# କଳା ପାଗୋଡ଼ା

ରମେଶ ପ୍ରତାପ

ଯେମିତି ଧର୍ଷଣମୂକ ନାରୀ ଏ ପଥର କାବ୍ୟ ।

କୁଷ୍ଠୀଟେ ମାଛି ଘଉଡ଼ଉଚି ଘା'ରୁ ।
ନଙ୍ଗଳା ପିଲାଟେ ପଇସା ମାଗୁଚି ।
ଟୁରିଷ୍ଟ୍‌ଟେ କ୍ୟାମେରା ଫିଲ୍ମରେ ଉଠେଇ ନଉଚି
ଭୋକର ଫଟୋ ।

ଆଦୂର ଝାଉଁବଣ କଡ଼ର ସୁଟ୍‌ରେ
ଝିଅଟି ବୋତାମ ଖୋଲୁଚି ।

ଅସ୍ତସୂର୍ଯ୍ୟର କ୍ଷତରୁ ରକ୍ତ କିଛି
ଝରି ପଡୁଚି
ପଥର ନଟୀର ସ୍ତନରେ ।



# ଚନ୍ଦ୍ରଭାଗା

ଡ. ଲକ୍ଷ୍ମଣ କୁମାର ଦାଶ

ଚନ୍ଦ୍ରଭାଗା ମୁଁ ଚନ୍ଦ୍ରମା ଟି ମୋର
ସୀମନ୍ତେ ହୋଇଛି ଟୀକା ।
କାହିଁ କେତେ କାଲୁ ଚାହିଁ ମୁଁ ରହିଛି
ବିଜନ ବେଳାରେ ଏକା ।
ହାତରେ ଧରିଛି ପୁଣ୍ୟ ବେଳାରେ
ସଜଗୁନ୍ଥା ସ୍ନେହ ମାଳ ।
କିଏ ଅଛି କହ ମୂଲାଇ ଦେବାକୁ
ଦେଇ ତା ଅମୂଲ ମୂଲ !
ମୋ ତୀରେ ଶୋଭଇ ତାଳ ଓ ତମାଳ
ମଧୁ କୁଞ୍ଜ ଗୀତି ଗାଇ ।
ଆସିବେ ସାଧବ ଆସିବେ ମାଧବ
ନୂଆ ପ୍ରୀତି ରୀତି ନେଇ ।
ରାହାସ ରଚିବେ ଅମୃତ ସିଞ୍ଚିବେ
ଶୀତଳ ହେବ ମୋ ପ୍ରାଣ ।
ରାଇ ବିନୋଦିନୀ ଚାଲିବେ ସଧୀରେ
ଅଲକ୍ତ ମୃଦୁ ଚରଣ ।
କେତେକାଳୁ ସିନା କାମନାକୁମ୍ଭ ମୋ
ରହିଛି ଶୂନ୍ୟତା ସାଥେ ।
ଧର୍ମପଦର ତ୍ୟାଗ- ପୂତ ବାଣୀ
ଗୁଞ୍ଜରି ଉଠେ ମୋ ଚିତ୍ତେ ।

'ଜୟଜଗଦୀଶ' କରହେ ଆଶିଷ
ଆହେ ମୋର ପ୍ରାଣ ସାଇଁ ।
ଉଚ୍ଛୁଳି ଉଠୁ ଏ ଶୂନ୍ୟବୁକୁ ମୋର
ଜଗତ ମଙ୍ଗଳ ପାଇଁ ।
ଇତିହାସ ଛାତି ହୋଇଛି ଅମର
ଅନନ୍ତ ପଥକୁ ଚାହିଁ ।
ଚନ୍ଦ୍ରଭାଗା ମୁଁ ଗାଉଛି ଗୀତିକା
ଅମୃତ ପଥେ ଧାଇଁ ।



# ଧର୍ମପଦ

ପବିତ୍ର ମୋହନ ଦାଶ

ହସର ଏ ରୋଗ ମୋର
ବାର ତେର ବର୍ଷ ବେଲୁ
ଆତ୍ମହତ୍ୟା ନ କରି ପାରିବାର ଫଳ
ମୋର ବିଫଳତା ପରେ
ଆଉ କେହି ଆତ୍ମହତ୍ୟା କଲେ ବା ନକଲେ
କେବଳ ମୋ ପ୍ରଥମ ଯୁବତୀ
ମେଘର ନୀଳ ଆଙ୍ଗୁଠି ଛୁଇଁବାକୁ ଯାଇ
ଦଉଡ଼ିର ଫାଶ ରଖିଥିଲା ବେକତଳେ
କିମ୍ବା ମୋର ପ୍ରିୟ ଅଧ୍ୟାପକ
ଭାଙ୍ଗିବାକୁ ଯାଇ ଗମ୍ଭୀରତା ନିଜର ଓ ପରୀକ୍ଷାଗାରର
ମରିଥିଲେ ନୀରବରେ ସିଆନାଇଡ୍‌ରେ
ଶେଷରେ ମୋ ସହପାଠୀ କଲେଜ ବେଳର
ବିଚରା ପୂଜାରୀ ଥିଲା ନିର୍ମଳ ଲୁହର
ମୃତ୍ୟୁ ବୋଧେ ସାତ ସେକେଣ୍ଡର ।
ଟ୍ରି ଗାର୍ ଦବାଇ ସାରି ନିଜ କପାଳରେ
କାନ୍ଦି ବି ପାରି ନ ଥିଲା, ଖପୁରି ଭିତର ଦେଇ
ଶେଷ ଗୁଳି ଭେଦିଗଲା ବେଳେ ।
ଏତେ ଦୁର୍ଘଟଣା ପରେ
ମୁଁ କେବେ ମାନେ ନାହିଁ କା'ର ଆତ୍ମହତ୍ୟା
ବିଶ୍ୱାସ ରଖେ

ସବୁ ଆତ୍ମହତ୍ୟା ନିଶ୍ଚେ ବିଫଳ ପ୍ରଚେଷ୍ଟା ଏକ
ନାନାଦି ପ୍ରକାର କାରୁକଳା ବିମଣ୍ଡିତ ସ୍ଥାପତ୍ୟକୁ
ଅସମୟେ ଉଜାଡ଼ି ଦେବାର ।
କିମ୍ବା ନ ମାନି ବେଳଅବେଳ
କମଳ ନୟନ ଛଳେ ପଶିବା ଜଳରେ
ବସ୍ତ୍ର ବାନ୍ଧି କଦମ୍ବ ଡାଳରେ ।

ତେଣୁ ହିଁ ମୁଁ
ଲେଉଟି ଆସିଲି ମୋର କ୍ୟାମ୍ପୋଜ୍ ନିଦକୁ
ନିଦରେ ଏକାଠି କଲି ପରିତ୍ୟକ୍ତ ସିଗାରେଟ୍ ଖୋଳ
ଖଞ୍ଜିଲି ଗୋଟିକି ଗୋଟି
ମହମର କାରିଗରୀ ଦ୍ୱାରା
ଖଟାଇ ମସ୍ତିଷ୍କ ମୋର ବାଲୁତ ବେଳର
ରକ୍ତ ମାଂସ କାଦୁଅରୁ ଶିହରଣ
ହାଡ଼ରୁ ଯୋଗାଇ ଦେଲି ନୀଳ ବିକିରଣ ।

ଏ ଉତ୍ତାରୁ ଯାହା ହେବ କେମିତି କହିବି
ପହଞ୍ଚିବ ବିଷମ ଗ୍ରୀଷମ ଦିନ
ଝରିଯିବ ତରଳ ମହମ
ଶୁଣି ମୁହାଣ ଗର୍ଜନ
ଧୂଳିରେ ଲୋଟିବ ସିଂହାସନ,
ରଖି ନ ପାରିବ କିଛି
ଅସହାୟ ଭୂର୍ଭୁବଃ ସ୍ୱଃ ଉଚ୍ଚାରଣ ।
କେମିତି ବା ଦେବଇଁ ମୁଁ ଝଡ଼ିବା ପ୍ରେମକୁ
ଅସହାୟ ସମ୍ବୋଧନ ଶୁଷ୍କ ସାନ୍ତ୍ୱନାର
କୌଣସି ଉତ୍ତାପ ଖାଲି ପ୍ରସ୍ତଚ୍ଛେଦ ସେ ଶୀତଳ ସୁଡ଼ଙ୍ଗର
ବିଧ୍ୱସ୍ତତା ମଧ୍ୟ ଏକ ଅଂଶ କୋଣାର୍କ ଦେହର ।



# ଧର୍ମପଦ

ହୃଷୀକେଶ ଦାଶ

ଅନେକ କୋଣାର୍କ ଏଠି - ବହୁ ମୁଖଶାଳା
ଶବ୍ଦାୟିତ ନିହାଣ ମୁନରେ
ମୂର୍ତ୍ତି ଗଢୁ ଗଢୁ କେବେ ବୋଲାଏ ମେଖଳା ।
ଝାପ୍‌ସା ଝାପ୍‌ସା ଦିଶେ ସବୁ
ଆନ୍ତରିକତା କିଣି ହୁଏ ନାହିଁ
ବରକୋଳି ଅଜଣା ଏଠାରେ
କୁକୁରର ଧ୍ୱନିନାଇଁ - ଲେଖାଖାଲି ଫାଟକ ପାଇଁକି ।
ବିନିଦ୍ରିତ ଗତିନେଇ ସମୟ ଯାଉଛି
ପୁଣ୍ୟମୟୀ ବିବର୍ଣ୍ଣ ବୟସ
ବାରଶ ବଢ଼େଇ ପରି
ବହୁ ମୁଖଶାଳା ନିତି ଗଢ଼ି-ପୁନଶ୍ଚ ଭାଙ୍ଗୁଛି
ଚିନ୍ତା ନାହିଁ - ଭଙ୍ଗାଗଢ଼ା ଆଜିର ନିୟମ
ପୁଣ୍ୟ କେବେ ଅସୁନ୍ଦର, ପାପଲାଗେ ସବୁଠୁ ସୁନ୍ଦର
କର୍ମମୟ ସଂସାରରେ - ଲକ୍ଷ୍ୟହୀନ ଶିଳ୍ପୀର ଚାତୁରୀ
ସୁବିଧାରେ ଗଢ଼ନ୍ତି ମନ୍ଦିର
ତେଣୁ ସବୁ ଅଳ୍ପାୟୁ ଏଇଠି
ସ୍ମୃତି ନାହିଁ, ଗୀତିନାହିଁ ଧର୍ମପଦ ପରି
ପଦ ନମସ୍କାର ।

■

# କୋଣାର୍କ

ନିବେଦିତା ରଥ

କୋଣାର୍କ !
ତୁ ମହାନ ତୋ ଇତିହାସ ମହାନ
ତୋ ରୂପ, ରସ, ଛନ୍ଦ ମହାନ
ତୋ ଦେହେ ଅପୂର୍ବ ମାଦକ
ତୋ ଦେହେ ସୁକୋମଳ ଲାଳିତ୍ୟ
ତୋ ଭାସ୍କର୍ଯ୍ୟରେ ମୁଗଧ୍ ମହୋଦଧି
ଚନ୍ଦ୍ରଭାଗା କରୁଥିଲା ପଦଧୌତ
ଝାଉଁବଣ ସାଜିଥିଲା ଆଲଟଚାମର
ଆଦିତ୍ୟର ତୁ ପହିଲି ଦର୍ଶନ
ଜଗତ ଜନ ଆଶ୍ଚର୍ଯ୍ୟ କରିଚୁ ବିହନ ।
କୋଣାର୍କ !
ତୁ ଏକ ରଙ୍ଗମଞ୍ଚ ଜୀବନ ଜୀବିକାର
ବାରଶହ ବଢ଼େଇଙ୍କ ମାନବିକତାର
ଧର୍ମପଦର ସାହସ ଓ ବଳିଦାନର
ଲାଙ୍ଗୁଳା ନରସିଂହ ଦେବଙ୍କ ଅଙ୍କାକ୍ଷର
ବେଠିଆଙ୍କ ଲହୁ ଲୁହାଣର
ତେବେ ବି ମୁଗ୍ଧ ହୁଏ ମାନବ
ଦର୍ଶନେ ତୋ ଅଙ୍ଗ ସୌଷ୍ଠବ
କୋଣାର୍କ !

ଆଜି ଓଡ଼ିଆ ସୁପ୍ତ ଦେଖି ତୋ କାରୁକାର୍ଯ୍ୟ
ତା ପ୍ରାଣେ ମହାନତା ହୁଏ ଉଦ୍ରେକ
ଦେଖି ତୋତେ ଆଜି ବି ସିଏ ନିର୍ବାକ
ତୋ ନାମ କରିବାକୁ କଳଙ୍କିତ
ତୋ ଗାତ୍ରୁ ଗୋଟିକ ପରେ ଗୋଟିଏ
ସ୍ଥାପତ୍ୟ କରି ଅପହରଣ
ଅବା ତୋ' ନାମେ ବେଳାଷୋବ ଆୟୋଜନ
ଶସ୍ତା ରାଜନୀତି, ଅର୍ଥନୀତିର
କରେ ଲମ୍ବା ଲମ୍ବା ବୟାନ
କୋଣାର୍କ !
ଏବେବି ବିଶ୍ୱେ ତୁ ପଦ୍ମପତ୍ର ଜଳ
ସୂରୁଜର ଉଦୟେ ହେଉ ଉଦ୍‌ବେଳିତ ॥



# କୋଣାର୍କ

ରଜନୀକାନ୍ତ ଦାସ

ଅନେକ ଫୁଲର ବାସ୍ନା-
ଯଦି କେବେ ବ୍ୟର୍ଥ ହୋଇଗଲା,
ଅନେକ ହ୍ରଦର ମାଛ,
ଖୋଜିହେଲେ ପୋଖରୀ, ଚହଲା
ଅନେକ ଜଳର ବିମ୍ବେ,
ପ୍ରତିଧ୍ୱନି ଉଠିଲା ବହୁତ,
ସବୁଜ ଜୋଛନା ଫିକା,
ଲୁଚିଗଲା ଫୁଲ-ମହୁରାତ ।
ଅନେକ ନଦୀର ଜଳେ,
ଦିଗହଜା ଅସଂଖ୍ୟ ନାବିକ,
ଯାତ୍ରା ଯୋଗ ଭାଙ୍ଗିଗଲେ
ପଢୁଥିବେ "ଜେମାଦେଈ ଶୋକ" ।

କାନରେ ଝୁଲୁଚି କେଶ,
ଚିହ୍ନା-ଚିହ୍ନା ପ୍ରାକ୍ତନ ଚେହେରା,
ଛିଙ୍କୁ ଥିଲା ଇତିହାସ,
ହସୁଥିଲେ ଶ୍ରୀଦଳବେହେରା ।
ସବୁରି ଧର୍ଷିତ ଛାଇ
ସମୟର ନଖ-ଦରପଣେ,
ଦିଶୁଥିଲା କଦାକାର,
ପୁରାତନ ମାର୍ବଲ ଚଟାଣେ ।

ଲେଖାଥିଲା ବହୁ ନାମ,
ପଡ଼ିଥିଲା ଅନେକ ପଲଙ୍କ,
ରୋଗୀ କେହି ନ ଥିଲେ ବି
ଶମଶାନେ ଘାରିଥିଲା ଶୋକ !

ମହ୍ୟଦେଶ ପୋତବାହୀ,
ଇଛା-ନଦୀ ନିର୍ଜନ ପଠାରେ
ସ୍ମୃତିର ବଳୟଠାରୁ
କେଜାଣି ବା କେତେକୋଶ ଦୂରେ ।
ଅଟକିଛି ନାଉରିଆ,
ଖୋଜୁଅଛି ସୁବର୍ଣ୍ଣ କୁଣ୍ଡଳ,
ପରିଚୟହୀନ ଏକ
ତାମ୍ରପାତ୍ରେ ଧରି କିଛି ଜଳ ।
ପରିଚୟ କହ ତା'ର
କହ କିଏ କେଉଁ ଦ୍ୱୀପବାସୀ,
ସ୍ମୃତିର ପିଙ୍ଗଳ ହ୍ରଦେ
ତୁମେ ଯିଏ କଳ୍ପନା ବିଳାସୀ
ଖୋଜୁଅଛ ଆଉ ଥରେ
ହଜିବାର ପୁରୁଣା ରତନ,
ଗାଡ଼ିରେ ପୁଟୁଳି ଛାଡ଼ି
ଯେଉଁପରି ଯାତ୍ରୀ ଅକିଂଚନ...
ପଶିଯାଏ ଏ ଡବାରୁ
ସେ ଡବାକୁ । ସବୁ ଏକାକାର,
ସବୁଠାରେ ଗୁଞ୍ଜରଣ
ଯାତ୍ରୀ ମେଳେ ହସ ତିରସ୍କାର ।

ଅଥବା ସମସ୍ତେ ଆମେ,
ପୋତାଶ୍ରୟେ ବେସୁରା ଖଲାସୀ
ଦରିଆର ପାଣି ମାପି,
ମନେ ମନେ ହେଉଥିଲୁ ଖୁସି ।

ହୀରା, ନୀଳା, ମୋତିମାଳ,
ପୋହଳା କି ପଦ୍ମରାଗ ପାଇଁ
ଅଲେଇଚ ବନ୍ଦରରେ
ମତିଭ୍ରମେ, ରହିଚୁ ପଛାଇ ।
ଆମେ କିରେ ଶେଷ ପିଢ଼ି,
ପିଣ୍ଡଦାନ କରୁଛେ କେବଳ
ଚୌପଦିରେ ବାଢ଼ିଦେଇ
ତୀର୍ଥ କ୍ଷେତ୍ର କମଣ୍ଡଳୁ ଜଳ ।

ସମୟର ପେଟିକାରେ
ବିଗଳିତ ଯେତେ ହସ୍ତାକ୍ଷର,
ପୁରାତନ ଦସ୍ତାବିଜ
ନଥିପତ୍ର ଅଜ୍ଞାତ କାଳର,
ଶତାବ୍ଦୀର ଯାଦୁଘରେ
ସମର୍ପିତ ଯେତେକ ଫୋସିଲ୍
ସେ ସବୁ ତମାଦି ପ୍ରାପ୍ତ
ସମୟର ପୂର୍ବ ତଫସିଲ ।
ଚାରିଟି ଶତାବ୍ଦୀ ପଛ,
ସମୟର ସୁବର୍ଣ୍ଣ ହରିଣ
ଖେଳୁଥିଲା, ଆମ ଆଗେ,
କିଏ ତାକୁ ବିନ୍ଧିଦେଲ ବାଣ
ସମୟର କଟାହାତ
କଟାମୁଣ୍ଡ ଯୋଡ଼ିବାକୁ ପୁଣି,
ଆମେ ଯିଏ ହତ୍ୟାକଲୁ
ପୃଥିବୀର ଅଦ୍‌ଭୁତ ବିନ୍ଧାଣୀ !
ଆମର କି ଇତିହାସ
ଅଭିଶପ୍ତ, ବିଚିତ୍ର, ଅମେଳ
ପୁରୁଣା ସ୍ମୃତିର ହ୍ରଦେ
ହଜିଗଲା ସୁବର୍ଣ୍ଣ କୁଣ୍ଡଳ ।

ତଥାପି ଆସିଚୁ ଆମେ
ନୂଆ ଏକ ପଦାତିକ ଦଳ,
ସମୟର ସେତୁବନ୍ଧେ
ଶୀଘ୍ର ତମ ନୌବହର ତୋଳ ।

ଆମରି ଛାଉଣୀ ପାଶେ,
ଫୁଟୁ ଫୁଲ, ଫୁଟୁରେ ବହୁତ,
ସବୁଜ ଜୋଛନା ସାଥେ,
ହସୁଥାଉ ଫୁଲ ମହୁରାତ ।
ଅନେକ ଜଳର ବିମ୍ବେ
ପ୍ରତିଛବି ହେଉ ବୃହତ୍ତର,
ଅନେକ ଧ୍ୱନିରେ ଉଠୁ
ପ୍ରତିଧ୍ୱନି ଆଶା-ବିଶ୍ୱାସର ।

ସମୟର ସବୁ ଦାବି
କେତେବେଳେ ବ୍ୟର୍ଥ ହେବ ନାଇଁ,
ଅନେକ ହ୍ରଦର ମାଛ
ଆସିଯିବେ ସମୁଦ୍ରକୁ ଡେଇଁ ।
ଇତିହାସ ଦାସୀ ନୁହେଁ,
ପିନ୍ଧୁଥିବ ନୂତନ ପୋଷାକ ।
ମାଲିକର ବାହାଘରେ,
ରଖିବାକୁ ତାଙ୍କ ବଂଶଟେକ ।
ଝଡ଼ରେ ଦୋହଲା ଗଛ,
ସବୁପତ୍ର ଝରିଯିବ ଯେବେ,
ତଥାପି ଥୁଣ୍ଟା ଗଛବି
କଅଁଳିବ ନିଜ ମତ୍ତଗର୍ବେ ।



# ନର୍ତ୍ତକୀ କୋଣାର୍କର୍

ଶଶୀକାନ୍ତ ନାୟକ

କାଳ କାଳ ଧରି କୋଣାରକ ଦେହେ
ନର୍ତ୍ତକୀ ରୂପେ ହୋଇଛ ଉଭା
ରୂପ ଯଉବନ ଶିଳ୍ପୀ ନିହାଣେ
ପାଉଅଛି ଶୋଭା ରଜନୀଦିବା
ଶିଳ୍ପୀର ପ୍ରେୟସୀ ତୁମେ କି ରୂପସୀ
କିବା ଅଟ ଶିଳ୍ପୀ ମନର ଦେବୀ
ମନ୍ଦିର ଗାତ୍ରରେ ଅତି ସରାଗରେ
ଗଢ଼ି ଦେଲା ଶିଳ୍ପୀ ତୁମରି ଛବି ।
ରାଜା ଆଦେଶରେ ନିହାଣ ଚାଳିଲ
କଳାର ପୂଜାରୀ ବାର ବରଷ
ଗାଆଁ ମାଟି ଛବି ବାଲ୍ୟ ବାନ୍ଧବୀ
ମନେ ପଡ଼ି ଛୁଟେ ଦୀର୍ଘଶ୍ୱାସ ।
ସରସୀ ତୁଠରେ ପ୍ରେୟସୀ ସାଥିରେ
ଭେଟି ଥିବ ଶିଳ୍ପୀ ଅତି ଗୋପନେ
ରାଜ କାର୍ଯ୍ୟ ସାରି ଆସିଲେ ମୁଁ ଫେରି
ବଧୂ କରି ନେବି ମୋର ସଦନେ ।
ବାରଟି ବରଷ ନିଶି ଓ ଦିବସ
ଶିଳ୍ପୀ ମନତଳେ ରହିଛି ବନ୍ଧା
ପଲ୍ଲୀ ଗାଆଁଟିରେ ରହିଛି ପ୍ରେୟସୀ
ସହିଥିବ କେତେ ଟାପରାନିନ୍ଦା ।

ଦିବସର ଅନ୍ତେ      ଯାମିନୀ ଆସନ୍ତେ
ବାରଶହ ପ୍ରାଣେ ପଡ଼େ ଭାଳେଣି
ରାଜା ନରସିଂହ      ମହିଷୀର ସଙ୍ଗେ
ରଚିଥିବେ କେତେ ମଧୁ ଯାମିନୀ ।
ଶିଳା ଓ କଳାରେ      ପ୍ରଣୟ ଉଚ୍ଛୁଳେ
ଶିଳ୍ପୀ ବଧୂ ପାଇ ନାହିଁ ତା' ସ୍ୱାଦ
ରାଜା ବୁଝିନାହିଁ      ପ୍ରଣୟୀ ହୃଦୟ
ବାରବର୍ଷ ବିତିଗଲା ବିଷାଦ
ଆଜି ନାହିଁ ଶିଳ୍ପୀ      ନିଜ ଛବି ଟିଏ
ଅବା ରାଜଛବି ମନ୍ଦିର ଗାତ୍ରେ
ମନର ଦେବୀଙ୍କୁ      ନିହାଣ ମୁନରେ
ତୋଳି ଦେଇଛି ସେ ସାରା ଜଗତେ ।
ମଣିଷ ମନର      ଗୋପନ ଭାବନା
ଶିଳ୍ପୀ ଯାଇଛି ନୀରବେ ଆଜି
ମନ୍ଦିର ଗାତ୍ରରୁ      ସେଇ କଥା କହେ
ଜଗତ ଜନଙ୍କୁ ଶିଳା ନର୍ତ୍ତକୀ ।
ପଥର ଦେଉଳ      ପଥର ଦେବତା
ବୁଝେନା ମଣିଷ ମନର କଥା
ଜୀବନ୍ତ ମାନବ      ଜୀବନ ଉଜାଡ଼ି
ଯୁଗେ ଯୁଗେ ପୂଜୁ ଅଛି ଦେବତା ।



# ଆଭିଜାତ୍ୟ, କୋଣାର୍କ ଓ ନାରୀ

**ରଶ୍ମିରଂଜନ ରାୟ**

ହେ କୋଣାର୍କ ! ସପ୍ତାଶ୍ୱର୍ଯ୍ୟ ପଦକପ୍ରଧାରି !
ତୁମେ ବି ସେଇଆକଳ ?
ତୁମେ ମଧ୍ୟ ନାରୀ ପାଇଁ ହେଲ ବିଡ଼ମ୍ବନା ?
ରିଙ୍ଗି ଭୋଟ ବଳେ
ଏ ବିଶ୍ୱବ୍ରହ୍ମାଣ୍ଡ ଯା'ରେ କହେ ଯୋଗେଶ୍ୱର
ସଜାଇଲା କଳଙ୍କିନୀ ସେ ଭୁଆସୁଣୀକୁ
ତ୍ରେତୟାରେ ବାରବାର ଅଗ୍ନିଦଗ୍ଧା ଯଶଭୋଗ୍ୟା ବିଧୂରା ବୈଦେହୀ
ପ୍ରଜାନୁରଞ୍ଜନ ରାମ ମର୍ଯ୍ୟାଦା ପୁରୁଷ ସିଂହ
ପ୍ରିୟତମ ସ୍ୱାମୀଙ୍କ କୃପାରୁ
ସତ୍ୟେ ବୃନ୍ଦାନାରୀ ହେଲା ଯଶର ତୁଳସୀ
ହାତ ମାରି ଅଗ୍ନିକୁ ମୁଁ ପରଖିଛି ହାତ ପୋଡ଼ିଯାଏ
ଯଶଟା ନିଆଁ କି ହିମ ଆଜିଯାଏ ଅଣ୍ଡାଳୁଛି ମୁହିଁ
ନାରୀ ମୁହିଁ ସେ ଯଶ ମୋ ଆଦୌ ଲୋଡ଼ା ନାହିଁ ।

ଏ କି କଲ ? ଏ କି କଲ ତୁମେ ?
ଇଜତ ମହତ ସବୁ ଭୂଲୁଣ୍ଠିତ କଲ ?
ନାରୀର ଦେହକୁ ନେଇ ଏ ଖେଳ ରଚିଲ ?
ଲଙ୍ଗଳା କରିବା କ'ଣ
କଳା ସୌଧ ତୋଳିବାକୁ ନିହାତି ଜରୁରୀ ?

ଉଲଗ୍ନ ନ ହେଲେ ନାରୀ
ଶୂନ୍ୟ ସତେ ହୋଇଯିବ କାଗଜ କି ପତ୍ର ?
ସେ କି ଏକ ତୁଚ୍ଛା କ୍ରୀଡ଼ନକ ?
ହେ କୋଣାର୍କ !
କାହିଁ ତୁମେ ଏପରି ଦଂଶିଲ
ପୁଅାଣୀ ଅଳତା ଗୋଡୁ ଲିଭିନାହିଁ
ଛାଡ଼ି ପ୍ରାଣପତ୍ନୀ
କାରିଗର ଚାଲିଗଲା ଅର୍କର ଭୂମିକୁ
ରାଜାର ଆଦେଶେ
ପ୍ରଭାତୁ ଶର୍ବରୀ ଯାଏ
ଶାଶୂର କୁଟୀଳଗାଳି ନଣନ୍ଦର କୁତ୍ସିତ ଭର୍ତ୍ସନା
ନବ ବିବାହିତା ବଧୂ ହରାଇଛି ପାଶୁ ଯିଏ
ଦଶଦିନ ତଳ ହାତ ସ୍ନେହର ପରଶ
ହୃଦରେ ହୃଦୟ ଜଡ଼ି ଏକାକାର ହୋଇଯିବା ପୀରତି ଫଲଗୁ
"କଳଂକିନୀ କଳାହାତ ମୋ ପୁଅକୁ ଠେଲିଦେଲା ଦଗ୍ଧ ପୁଲିନକୁ
ପିଶାଚିନୀ ବାଞ୍ଝ ହେଉ, ହେଉ ଆଣ୍ଠୁକୁଡ଼ି"
ଥପ ଥପ ଝରଇ ଲୋତକ
"ଏ ଡାକୁଣୀ ରକ୍ତଶୋଷା ତଣ୍ଡି
ଶୋଷିଦେବ ପ୍ରାଣପକ୍ଷୀ ମୋ ରଙ୍କୁଣୀ ସ୍ନେହ ପିତୁଳାର
ବ୍ୟଭିଚାରିଣୀର ଯାଏ ଆସେ କେତେ
ଉଡ଼ିଯିବ ସାଜି ସୋହାଗିନୀ, ଆଉ କାହା ସାଥେ" ।
ଶବ୍ଦର କରତଦାନ୍ତ ଚିରି ଚିରି ଦିଏ ତା'ର ଛାତିର କଲିଜା
ନିଶାର୍ଦ୍ଧରେ ସାଇଁ ସାଇଁ ବାଆ ବହେ
ଭରି ଭରି ତା' ପ୍ରାଣର ତତଲା ନିଃଶ୍ୱାସ
ଆଜି ମଧ୍ୟ ତୋ ବେଳାର ଝାଉଁ ଜଙ୍ଗଲରେ ।

ହେ କୋଣାର୍କ ! ସପ୍ତାଶ୍ଚର୍ଯ୍ୟ ପଦକ ପ୍ରଧାରି !
ଆହୁରି ଆଶ୍ଚର୍ଯ୍ୟ ଲାଗେ ହେବ ଅଷ୍ଟାଶ୍ଚର୍ଯ୍ୟ
ତୋ ଦେହରେ ତୋ କଳାରେ
ଅବଳାକୁ ଲଳନା ବି କରିଛି ଧର୍ଷଣ
ଦେଖି ବଡ଼ କ୍ଷୋଭ ଲାଗେ,
ନରପରି ନାରୀ ମଧ୍ୟ ଅବଳାକୁ ଦିଏ ନିର୍ଯ୍ୟାତନା ।

ହେ ଈଶ୍ୱର ଜାଣିଲି ମୁଁ
ଏ ପୃଥିବୀ ଯା'ରେ କହେ ମାନ୍ୟ ଆଭିଜାତ୍ୟ
ସେ ମୋହର ଲାଗିଯାଏ ଯେଉଁଠାରେ
ହେଉ ସିଏ ନର ଅବା ନାରୀ; ଅବା ସ୍ଥାବର ଜଙ୍ଗମ
ସେ ଲୁଣ୍ଠନ କରିଥାଏ ବାରବାର ଦୁର୍ବଳା ନାରୀକୁ
ଦୁଃଖଦେଇ ସୁଖନେବା ସୁନାମ ଯାହାର
ହେ ଈଶ୍ୱର ! ତୁମକୁ ମୋ ବାରବାର ଅଳି
ଆଭିଜାତ୍ୟ ମୋହରକୁ ମାର ନାହିଁ
ହୃଦ ଯା'ର ନାହିଁ ଛାତି ପଞ୍ଜରା ଭିତରେ ।



# କୋଣାର୍କ ଦର୍ଶନେ

ଇଂ ଗଦାଧର ମିଶ୍ର

ସାଗରର ବେଳାଭୂମି ପରେ -
ଠିଆ ତୁମେ ଊର୍ଦ୍ଧ୍ୱେ ଟେକି ମଥା
ହେ ମୂକ କୋଣାର୍କ - ମୁହଁ ଖୋଲି କୁହ ଥରେ କଥା ।।
ଉତ୍କଳର ପୂରୁବ ଦିଗନ୍ତେ ତୁମକୁ ଗଢ଼ିଛି ଶିଳ୍ପୀ
ଭାଙ୍ଗି କେତେ ବଟାଳି-ନିହାଣ
ଲଭିବାକୁ ଦରଶନ, ମନେ ଜାଗେ ଉଦ୍‌ବେଳନ
କରେ ତବ ସ୍ମୃତିର ଚାରଣ ।।
ଯେଉଁ ଶିଳ୍ପୀ କଲେ ସୃଷ୍ଟି, ଗାତ୍ରେ ତବ କଳାର ସମ୍ଭାର
ସମୟ ଦେଇଛି ଗିଳି, ଇତିହାସେ ନାମ କାହିଁ ତା'ର ?
ଘୁଞ୍ଚିଗଲା ଚନ୍ଦ୍ରଭାଗା ଦୂରେ -
ତା' ଜଳ ଦର୍ପଣେ ଦେଖିବାକୁ ତୋ ରୂପମାଧୁରୀ
ଅର୍ଣ୍ଣବ ଗମ୍ଭୀରେ ଗାଏ ତବଗୁଣ, ଟେକି ଉଚ୍ଚେ ଫେନିଳ ଲହରୀ ।।
ଦୂର ଦିଗ୍‌ବଳୟ ତଳେ, ଅସ୍ତରାଗ ବୋଳି ଭାନୁ ହେଲେ ଅସ୍ତମିତ
ଉଦୟ ହୁଅଇ ଶଶିନାଶି ତମସାର ରାଶି
ଚନ୍ଦ୍ରାଲୋକ କରି ବିଚ୍ଛୁରିତ ।।
ନୀରବ-ନିସ୍ପନ୍ଦ ରାତ୍ରୀ ମୁଖରିତ ହୁଏ ତହିଁ ବୀଣାର ଝଙ୍କାରେ
ଭାଙ୍ଗି ନିଶି ନିର୍ଜନତା - ନର୍ତ୍ତକୀୟେ ନାଚନ୍ତି ଛନ୍ଦରେ ।।
ଅଥର୍ବ ପାଷାଣ ଗାତ୍ରେ ସୃଷ୍ଟିହୁଏ ପ୍ରାଣର ସ୍ପନ୍ଦନ
ସଙ୍ଗୀତ ଆସର ଜମେ - ଶୁଭେ ତହିଁ ରୁମ୍‌ଝୁମ୍ ନୂପୁର ନିକ୍ୱଣ ।।

ହସର ଲହରୀ ଜିଣେ ମହୋଦଧି ଉତାଳ ତରଙ୍ଗ
ନର୍ତ୍ତକୀର ପଦଛନ୍ଦେ, ବାଜିଉଠେ ପଟହ ମୃଦଙ୍ଗ ।।
ହେ ମୂକ କୋଣାର୍କ ! ଦରଶନ ଲଭି ତବ ହୋଇଲି କୃତାର୍ଥ
ଅନ୍ତରର କାମନା ବାସନା ମୋର - ହେଲା ଚରିତାର୍ଥ ।।
ଗଭୀର ପୁଲକ ଜାଗେ ମୋ ଅନ୍ତରେ ଲଭି ତବ ପ୍ରତ୍ୟକ୍ଷ ସାନ୍ନିଧ
ହେ ମୂକ କୋଣାର୍କ !
ତୁମେ ଉଭା ସିନା ଉତ୍କଳର ବକ୍ଷେ, ଛବି ତୁମ ବିଶ୍ୱର ଆରାଧ ।।
ନରପତି ନରସିଂହ ନୁହେଁ ଧନ୍ୟ, ଯା ନିର୍ଦ୍ଦେଶେ ଗଢ଼ା ଏ ମନ୍ଦିର
ଏ ଜାତିର ବରପୁତ୍ର କଳାକାର ଇତିହାସ ସ୍ୱର୍ଣ୍ଣାକ୍ଷରେ ନାମ ରହୁ ତା'ର
ଚିରଦିନ ହେଉ ସେ ଅମର ।।
ମୋ ପ୍ରାଣରେ ସୃଷ୍ଟିକର ଅବଲୁପ୍ତ କଳାର ଚରିତ
ଆଶୀର୍ବାଦ କର ଏ ଜାତିକୁ କଳା ତା'ର ହେଉ ଉନ୍ନିବୀତ,
ହେଉ ଚିର ଉତ୍କର୍ଷିତ ।।
କାଳ, କଳାପାହାଡ଼ର ସ୍ପର୍ଶେ ଅପରୂପ ଲାବଣ୍ୟ ପ୍ରତିମା
ଖଣ୍ଡ-ବିଖଣ୍ଡିତ ଦେହେ ମୌନେ ହୋଇଅଛି ଠିଆ,
କେ ବୁଝିବ ତା' କଳା ଗରିମା ?
କିମ୍ବଦନ୍ତୀ କୁହେ -
ବାରବର୍ଷେ ଗଢ଼ିଥିଲେ ବାରଶ' ବଢ଼େଇ - ଏହି ସେ କିରତୀ
ନ ପାରିଲେ ଚୂଳମାରି ଦେଉଳର
ଏକା ରାତିରେ ଧରମା କରି ତାହା, ଉଡ଼ାଇଲା ଶିଳ୍ପୀଜାତି ଛତି ।।
ଡେଇଁଲା ସାଗର ବକ୍ଷେ, ରଖି ଶିଳ୍ପୀକୂଳ ଟେକ
ଇତିହାସେ ହୋଇଅଛି ଲେଖା -
ତୁମେ ତ ପ୍ରତ୍ୟକ୍ଷ ସାକ୍ଷୀ, କିନ୍ତୁ କିଆଁ ମୂକ ?
ଆର୍ଯ୍ୟଭୂମି ଉତ୍କଳର ତୁମ ଛବି ଶ୍ରେଷ୍ଠ ଭାସ୍କର୍ଯ୍ୟ ସମ୍ପତ୍ତି
ହେ ମୂକ କୋଣାର୍କ ! ଘେନ ଏ ଜାତିର ଶତକୋଟି ସଶ୍ରଦ୍ଧ ପ୍ରଣତି ।।



# କୋଣାର୍କ

ଭାରତ ଭୂଷଣ ନନ୍ଦ

ତମେ କେବେ କୋଣାର୍କ ଦେଖିଛ ?
ଏ ପ୍ରଶ୍ନ ଆଜିର ନୁହେଁ, ଅନେକ ଦିନର
ଯୁଗଯୁଗର ଏ ପ୍ରଶ୍ନ
ଏ ପ୍ରଶ୍ନ ସମାଧାନ ହୀନ
ଇତିହାସ କହେ-
ଲାଙ୍ଗୁଲା ନରସିଂହଙ୍କ ରାଜତ୍ୱର ଏ ହେଉଛି
ମୂକସାକ୍ଷୀ
ସିବେଇ ସାନ୍ତରା-ବିଶୁମହାରଣା ଆଉ
ବାରଶହ ବଢ଼େଇଙ୍କ ବାରବର୍ଷ ତପସ୍ୟାର ଆଶ୍ଚର୍ଯ୍ୟ
ଏ କୋଣାର୍କ !

ତମେ କେବେ କୋଣାର୍କ ଦେଖିଛ ?
କେମିତି ଦେଖିଛ ! ମୁଁ ଜାଣେନି
ମୁଁ କିନ୍ତୁ ଶୁଣିଛି ଓ ପଢ଼ିଛି-
ସତ୍ୟବାଦୀର ସିଦ୍ଧ ସାଧକ ନୀଳକଣ୍ଠଙ୍କ
କୋଣାର୍କ ଦେଖିବାର କଥା
ଚପଳମତି-କୋମଳମନା-ଅଲିଅଳ ଆଉ
ଅଝଟିଆ ଶିଶୁଙ୍କ ମେଳେ ଶିଶୁସୁଲଭ ଭାବନେଇ
ସେଦିନ ସେ ଦେଖିଥିଲେ

କୋଣାର୍କ ସାଜିଛି ଠିକ୍ ଶିଶୁଟିଏ
ବାରଶହ ବଢ଼େଇଙ୍କ ମାନସର ଶିଶୁ
ଏଇ ଛଡ଼ା ହୋଇଛି କୋଣାର୍କ !
ଉତ୍କଳମଣି ଗୋପବନ୍ଧୁ
କୋଣାର୍କକୁ ଦେଖିଥିଲେ ସାହସିକ ଓ ସ୍ୱାଭିମାନୀ
ଓଡ଼ିଆ ଘରର ପୁଅ ଧର୍ମପଦ ଭାବେ
ଯେଉଁଠି ଥିଲା
ଦେଶଭକ୍ତି-ଜାତିପ୍ରୀତି, ତ୍ୟାଗ ଓ ଭକ୍ତି
ବାରଶହ ବଢ଼େଇର ଦାୟ ନା, ଧର୍ମପଦର ଦାୟ
ଏ କୋଣାର୍କ !
ତମେ କେବେ କୋଣାର୍କ ଦେଖିଛ ?
ପ୍ରଗତିବାଦୀ କବି ସଚ୍ଚିବାବୁ ଦେଖିଥିଲେ
କୋଣାର୍କ
ବାରଶହ ବଢ଼େଇଙ୍କ ମଧ୍ୟେ,
ଯାହାଙ୍କ ହାଡ଼ କଙ୍କାଳ ଚିତ୍ର ଏହାର ପ୍ରତ୍ୟେକ ଶିଳା ମଧ୍ୟେ
ହୋଇଛି ଚିତ୍ରିତ
ଯାହା ମୁଖର ହସ-କାନ୍ଦ ସମାନ
ସେ ହେଉଛି କୋଣାର୍କ !

ତମେ କେବେ କୋଣାର୍କ ଦେଖିଛ ?
ମାନସିଂହ ଦେଖିଥିଲେ କୋଣାର୍କ
ଫୁଟିଥିଲା ତା'ର ସୌଷ୍ଠବ କବିର ଲେଖନୀ ମୁନରେ
ଅତିକାନ୍ତ-କୋମଳ ଓ କମନୀୟ ଭାବେ ଜୀବନ୍ତ ଚିତ୍ର
ସେଇଠି କୋଣାର୍କ ହୋଇଉଠିଛି
ରୂପ ବିଚିତ୍ର
ଦର୍ଶକ ଓ ପାଠକ ତା ଦେଖି ହୁଅନ୍ତି ଆଶ୍ଚର୍ଯ୍ୟ

କହିଚାଲନ୍ତି ଏ ହେଉଛି ଅନ୍ୟତମ
ସପ୍ତାଶ୍ଚର୍ଯ୍ୟ !
ଭାନୁଜୀ ରାଓ ଦେଖନ୍ତି କୋଣାର୍କ
ପିକ୍‌ନିକ୍ ଓ ବଣଭୋଜି ମଧ୍ୟରେ
ବାରବର୍ଷ ତାରୁଣ୍ୟର ଗାଈଭଳି ଆଖି ମଧ୍ୟେ
ଯେ କବିଙ୍କୁ ପଚାରିଛି
ତମେ କେବେ କୋଣାର୍କ ଦେଖିଛ ?
ତା'ର ଏଇ ପ୍ରଶ୍ନ ଛନ୍ଦହୀନ ଓ କପଟଶୂନ୍ୟ
ତା'ର ଲାଲି ଓଠର ହସର ମାଦକତା ହିଁ
ଏଇ କୋଣାର୍କ !
ରବିବାବୁ ଦେଖିଥିଲେ କୋଣାର୍କ
ଦିନେ ଲାଲ୍ ପାଗୋଡ଼ାର ପ୍ରେତ ମଧ୍ୟେ ।

ଯେଉଁଠିକି ବାରଶହ ଶିଳ୍ପୀଙ୍କ ବୁକୁଫଟା ବିଳାପ ଆଉ
ହା'ଅନ୍ନର ଡାକ ଶୁଣିବାକୁ ମିଳେ ନିରନ୍ତର,
ସେ ହେଉଛି କୋଣାର୍କ
ଏ ଜରାଜୀର୍ଣ୍ଣ କୋଣାର୍କ !
କିନ୍ତୁ ମୁଁ ଦେଖିଛି କୋଣାର୍କ, ତମ ଆମ ମନ ମଧ୍ୟେ
କେତେକେତେ ସ୍ୱପ୍ନର, ଭବିଷ୍ୟତର କୋଣାର୍କ,
ଆଶାଶୂନ୍ୟ ହୋଇ ନିରାଶା ପାଖରେ
କାହାର ଶାପ ଓ ପାପରେ ଆଜୀବନ
ସମ୍ପୂର୍ଣ୍ଣ ପରାସ୍ତ ହୋଇ ଭାଙ୍ଗିପଡୁଥିବା
ଏକ ଏକ କୋଣାର୍କକୁ ପ୍ରତ୍ୟେକ ରାତିରେ ।



# କୋଣାର୍କ

ନାରାୟଣପ୍ରସାଦ ମିଶ୍ର

ମହନୀୟ ଭାସ୍କର୍ଯ୍ୟର ଶ୍ରେଷ୍ଠତମ କୃତି,
ଅପରୂପ ସୌନ୍ଦର୍ଯ୍ୟର ମୂର୍ତ୍ତ ପ୍ରତୀକ,
ଅର୍କପୀଠ, ହେ କୋଣାର୍କ ! ବିଗତ ଯୌବନା,
ବାର୍ଦ୍ଧକ୍ୟର କୃଷ୍ଣ ଛାୟା ଆବୋରିଛି ଅଙ୍ଗୁ,
ଯୌବନର ଉଦ୍ଦାମତା, ଚଳ ଚଞ୍ଚଳତା,
ତନୁ ବଲ୍ଲରୀରୁ ଲୁପ୍ତ, ଲୋଳିତ ବଦନା ।
ତଥାପି ଅଦ୍ଭୁତ ତୁମ କାଉଁରୀ ପରଶ,
ଦର୍ଶକର ମନ ପ୍ରାଣେ ଜଗାଏ ପୁଲକ,
ହୁଏ କବି କର ଲେଖନୀ ଚଳଚଞ୍ଚଳ,
ତୁମ ଅନୁପ୍ରେରଣାରେ, ତୁମରି ସ୍ମୃତିରେ,
ବର୍ଣ୍ଣିବାକୁ ବିସ୍ମୃତ ତବ ଅନନ୍ତ ମହିମା,
ବର୍ଣ୍ଣାଢ୍ୟ ସୁଷମା କାନ୍ତି, ମଧୁର, ସ୍ୱପ୍ନିଳ ।
ଇତିହାସ, ଶତ ମୁଖ, ତବ ଜୟ ଗାନେ,
ବର୍ଷ, ବର୍ଷ, କାଳ, କାଳ, ଯୁଗ, ଯୁଗ ଧରି,
ପାରାବାର ନିତି ବନ୍ଦେ, ତବ ପଦ ପ୍ରାନ୍ତେ
ଶିଳ୍ପୀ କୁଳର ନୟନ ଅଶ୍ରୁଳ ପ୍ରଶ୍ନିଳ
ଅନ୍ୱେଷନ୍ତି ସତେ ଅବା ବିଶ୍ୱ, ଧରମାରେ
ଜରାଜୀର୍ଣ୍ଣ ତୁମର ଏ ପାଷାଣର ଗାତ୍ରେ ।
ଅନ୍ତର୍ଦାହେ ଜଳି ଜଳି କର ରୋମନ୍ଥନ,

ଗୌରବାବହ ଆପଣା ସ୍ୱର୍ଣ୍ଣାଭ ଅତୀତ,
ମ୍ରୀୟମାଣ ଦୁଃଖ, ଲଜ୍ୟା, ଅନୁଶୋଚନାରେ
ନୀରବ, ନିଥର ତୁମେ ନିସ୍ତେଜ ବିବର୍ଣ୍ଣ
ଗୁମୁରି ଗୁମୁରି କାନ୍ଦୁଅଛ ସଂଗୋପନେ
ଅନୁଭବି ମାନବର ତାଚ୍ଛଲ୍ୟ ବେଭାରେ ।
ସାଥୀ ତୁମେ ଝାଉଁବଣ ବୁଝେ ମର୍ମ ବ୍ୟଥା,
ଛାଡ଼େ ସମ ବେଦନାର ଉଷ୍ମ ଦୀର୍ଘଶ୍ୱାସ,
ପବନ ହିଲ୍ଲୋଳେ ତା'ର କରୁଣ ମୂର୍ଚ୍ଛନା,
ଆନ୍ଦୋଳିତ କରିଥାଏ ସାଗର ହୃଦୟ,
ବ୍ୟଥାତୁରେ ମଥା ପିଟେ ବେଳା ଭୂମି ତଟ,
ଉଫେଂଣେ ତରଙ୍ଗେ କରି ବିରକ୍ତି ବ୍ୟଞ୍ଜନା ।
କ୍ରୋଧରେ ଆରକ୍ତ ମୁଖ କରନ୍ତି ତପନ,
ଅସ୍ତଗାମୀ ହେବା ଆଗୁଁ, ବାରୁଣୀ ଗଗନେ,
ବିନ୍ଦୁ ବିନ୍ଦୁ ଝରି ତବ ବ୍ୟଥାର ଲୋତକ,
ଭିଜାଏ କାକର ରୂପେ ବାଲୁକା ଶଯ୍ୟାରେ,
ସୁବିସ୍ତୀର୍ଣ୍ଣ ବେଳା ଭୂମି, କରେ ସିକ୍ତ ଆର୍ଦ୍ର,
ନୁହେଁ କିଗୋ ଏହା ତୁମ ବେଦନା ବ୍ୟଞ୍ଜକ !
ଅଶେଷ ଯାତନା ସହି ତଥାପି ମଉନ,
ଦିନୁ ଦିନ କ୍ଷୀଣ ଆୟୁ, ହୁଏ ଶିରୀହୀନ,
ବିବଶ ମାନବହୃଦେ, ତିଳେ ବି ଦରଦ,
ନାହିଁ କାହା ପାଇଁ, ସ୍ୱାର୍ଥେ, ସଦା ସିଏ ଅନ୍ଧ,
ଉପକାରୀ, ଅପକାରୀ; ବୁଝେ ନାହିଁ ଭେଦ,
କି ବୁଝିବ ବ୍ୟଥା ତୁମ, ବୁକୁତଳ ଖେଦ !



# କୋଣାର୍କର୍ ଜନ୍ମ

ବ୍ୟୋମବିହାରୀ ରଥ

ପ୍ରାଚୀ ନଦୀ ତଟେ ନଇଁ ଆସୁଥିଲେ ସେଦିନ ସୂର୍ଯ୍ୟଦେବ
ପ୍ରତିଚୀ ଅଙ୍ଗନେ ଫୁଟି ଦିଶୁଥିଲା ବର୍ଣ୍ଣ ଅବିର ଭାବ ।୧ ।
ମହାଶୂନ୍ୟର ଭାସ୍କର ସିଏ ଲୁଚିଯାଉଥିଲେ ସିନା
ନିହଣ ମୁଗୁର ଧରୁଥିଲେ ଇଏ ଭାସ୍କର ମହା ମନା ।୨ ।
ଶିଳ୍ପୀ କୁଳର କଳ୍ପ ବଟ ସେ ଶିଳ୍ପୀ କୁଳର ମଉଡ଼ ମଣି
ଶୟନେ ସ୍ୱପନେ ଶିଳ୍ପ ବିନା ଯେ ଆନ କିଛି ଆଉନପାରେ ଜାଣି ।୩ ।
ଦରଗଢ଼ା ଏକ ଅଶ୍ୱ ମୂର୍ତ୍ତି ଦୁଆରେ ତାଙ୍କର ହୋଇଛି ଉଭା
ଅସ୍ତ ଗିରିର ସୂର୍ଯ୍ୟକୁ ଜିଣି ବିସ୍ତାର କରି ବର୍ଣ୍ଣ ବିଭା ।୪ ।
ଟିକିଏ ରହୁଛି ଟିକିଏ ଚାହୁଁଛି
          ଚଳାଉଛି ପୁଣି ନିହାଣ ମୁନ
ଆଉଟିକେ ଦେଖିଥାନ୍ତି କି ବୋଲି
          ଶୁଭି ଯାଉଥିଲା ଅସ୍ଫୁଟ ସ୍ୱନ ।୫ ।
ଆନେ ନାହିଁ ମନ ଆନେ ନାହିଁ ଧ୍ୟାନ
          ସେହି କଥାଟିରେ ଘୂରୁଛି ମଥା
ମନେ ପକାଉଛି ଶିଳ୍ପୀ ଯେପରି
          ସ୍ମୃତି ପେଟିକାରୁ ଅତୀତ କଥା ।୬ ।
ଘୋଟକ ଆରୋହୀ କେତେ ବେଳେ ଆସି
          ଅତିଥି କିଏ ସେ ହୋଇଛି ଘରେ
ଶିଳ୍ପୀ କୁଳର ମଉଡ଼ ମଣିକୁ ଜଣାନାହିଁ
          ସିଏ ଚାହିଁନି ଥରେ ।୭ ।
ଭୋଜନ ପରବେ ଅଛନ୍ତି ଅତିଥି
          ପରଶୁଥା'ନ୍ତି ଭାସ୍କର ରାଣୀ
ସହସା ସେକାଳେ ଶିଳ୍ପୀ ମୁଖରୁ
          ଶୁଣାଗଲା ଏକ ପ୍ରଳାପ ବାଣୀ ।୮ ।

ଏଡ଼ିକି ମୂର୍ଖ ଏତେ ନିର୍ବୋଧ, ଉତ୍କଳର ଏ ଲାଙ୍ଗୁଳା ରାଜା
ସଦା ସର୍ବଦା ବଜାନ୍ତି କେବଳ
        ନର ହତ୍ୟାର ଟମକ ବାଜା ।୯ ।
ଭାଷିଲେ ଅତିଥି "ରାଜଧର୍ମ" ଏତ
        ଏଥିପାଇଁ ରାଜା ନୁହନ୍ତି ଦୋଷୀ
ନୂଆ ପାଟି ଶୁଣି ଚମକି ଭାସ୍କର
        ନରମ ଆଖିରେ ଚାହିଁଲେ ହସି ।୧୦ ।
ଏପରି କଲେକି ଅକ୍ଷୟ ଯଶ
        କ୍ଷୟଶୀଳ ଭବେ ରଖିବେ ସେହି ?
ସତ କଥା ସିନା ରାଜଧର୍ମ ରାଜା ।
ପାଳୁଛନ୍ତି ତିଳେ ସନ୍ଦେହ ନାହିଁ ।୧୧ ।
ନିଷ୍ପଳକ ନେତ୍ରେ ଚାହିଁଲେ ଅତିଥି
        ନସ୍ପୁରିଲା କିଛି ମୁଖରୁ ଭାଷା
ବୁଝି ପାରିଲେନି ରହିବ କିପରି
ଅକ୍ଷୟ ଯଶ ଅମର ଆଶା ।୧୨ ।
        ହସ ହସ ମୁଖେ କହିଲେ ଭାସ୍କର
ଉତ୍ତର ଏହାର ସହଜ ଅତି
ଆଖି ଖୋଲି ଧୀରେ ଚାହାଁନ୍ତୁ ଶ୍ରୀକ୍ଷେତ୍ର
        ଲିଙ୍ଗରାଜଙ୍କ ଦେଉଳ କତି ।୧୩ ।
ପୂରୁବ ଦିଗରେ ଉଇଁଲେ ଅରୁଣ
        ବିଦାୟ ଘେନିଲେ ଅତିଥି ବର
ଭାସ୍କର ବଚନ, ଅଶ୍ୱଗଠନ ହୃଦୟେ ତାଙ୍କର ଟାଣିଲା ଗାର ।୧୪ ।
ସେଦିନ ସଞ୍ଜେ କଟୁଆଳ ଦୁଇ
        ପହଞ୍ଚିଲେ ଆସି ଶିଳ୍ପୀ ଘରେ
ଜଣାଇଲେ - "ରାଜା ଡକାଇ ଅଛନ୍ତି -
        ଭାସ୍କର ଦମ୍ପତି ଯିବେ ସତ୍ୱରେ ।୧୪ ।
ହଲକ ଶୁଖିଲା ଭାସ୍କର ଗୃହିଣୀ
        କହିଲେ, "କାହିଁକି - କହିଲ ଏହା
ରାଜା ଗୁପ୍ତଚର ଖବର ଦେଇଛି
        ଡକାଇ ଅଛନ୍ତି ଉତ୍କଳ ନାହା ।୧୫ ।

ଡରିଲେନି କିନ୍ତୁ ଭାସ୍କର ତିଳେ
କଟୁଆଳ ପଛେ ଚାଲିଲେ ଧୀରେ
ନୃପତି ଛାମୁରେ ପହଞ୍ଚିଲେ ଯାଇ
ପ୍ରଣମିଲେ ଧୂଳି ଲଗାଇ ଶିରେ ।୧୬ ।
ପ୍ରଣାମ ତୁମର ଘେନିବା ପାଇଁ ମୁଁ
ଯୋଗ୍ୟ ନୁହେଁ ହେ ଶିଳ୍ପୀ ବର
ଅଭିନନ୍ଦନ ଘେନା କର ମୋର
ଦେଖାଇଛ ତୁମେ ମୁକ୍ତିଦ୍ୱାର ।୧୭ ।
ସୁପ୍ତ ମନେ ମୋ ଜଗାଇଛ ତୁମେ
ଚେତନାର ନବ ମୃଦୁ ଅଙ୍କୁର
ପ୍ରକୃତ ବାଟ ଦେଖାଇଛ ତୁମେ
ଯଶ ମୋର ରଖିବାକୁ ସଂସାର ।୧୮ ।
ଆଜିଠାରୁ ଏହି ଆଦେଶ ମୋହର
ଗଢ଼ାହେବ ଏଠି ଦେଉଳ ଏକ
ରଥ ପରି ହେବ ଆକୃତି ଯା'ର
ସବୁ ଦେଉଳରୁ ବଳିବ ଟେକ ।୧୯ ।
ଶିଳ୍ପୀର ଭୂଇଁ ଏ ଉତ୍କଳ ମୋର
ଅଭାବ ନାହାନ୍ତି ଶିଳ୍ପୀକୁଳ
ବଛାବଛା ଯେତେ କାରିଗରସବୁ
କରନ୍ତୁ କାର୍ଯ୍ୟ ହୋଇଣ ଠୁଳ ।୨୦ ।
ଆଗରେ ରହିବ ତୁମହାତ ଗଢ଼ା
ଅଶ୍ୱ ମୋହର ଅମର ହୋଇ
ଯାହା କହି ଅଛ ତୁମରି ବଚନ
ସାର୍ଥକ ତୁମେ କରହେ ଯାଇ ।୨୧ ।
ଚାହିଁ ରହିଥାନ୍ତି, ଭାସ୍କର ଖାଲି
ମୁଗ୍ଧ ନୟନେ ନୃପତି ଆଡ଼େ
ବହିଯାଉଥାଏ ଆନନ୍ଦାଶ୍ରୁ
ଦୁହିଁଙ୍କ ସ୍ନିଗ୍ଧ ନୟନ କଡ଼େ ।୨୨ ।



# ସମ୍ପର୍କ-କୋଣାର୍କର୍

ବିପ୍ରଚରଣ ପାତ୍ର

ଏମିତି ହୁଏ
ଅନେକ ଦିନ ଲାଗେ ତଳରୁ ତାଳିଗା
ଚନ୍ଦ୍ରଭାଗାର ଛାତିପରେ
କେତେ ଉଦ୍‌ବେଳନ
ସମୟର ନିଥର ସୁଅରେ
ପ୍ରଚେଷ୍ଟାର ପଥର ଖଣ୍ଡ ଭାସିଯାଏ
ପୁଣି ଥାକ ଥାକ ଯୋଡ଼ାହୁଏ ଥରକୁ ଥର
ଆବେଗର ନିହାଣ ମୁନରେ
ଫୁଟି ଉଠେ ଭଲ ପାଇବାର ଫୁଲ
ତୋଳାହୁଏ ସମ୍ପର୍କ ସୌଦ୍ଧ-କୋଣାର୍କ ।

କିଏ ଜାଣିଥିଲା
ଏହା ବିଡ଼ମ୍ବନା ନୁହେଁ ତ ଆଉ କ'ଣ ?
ଯାହା ବି କିଛି ଗୋଟେ ହରାଇବାକୁ ହେବ
ବାରଶହ ବଢ଼େଇ ଅଥବା ଧର୍ମପଦ
ସେଇଆ ହୁଏ
ପରିସ୍ଥିତିର ଅତଳ ସମୁଦ୍ରରେ
ଭାବପ୍ରବଣତାର ଧରମା ହଜିଯାଏ
ସବୁଦିନ ପାଇଁ ହତାଶବୋଧର ଢୁଇରେ
ବିଚରା କୁହୁଳୁଥାଏ ଅସହାୟ ବିଶୁ ମହାରଣା ।



# କୋଣାର୍କ ଦର୍ଶନେ

ରାମନାରାୟଣ ରାୟ

ତୁହି ପରା ସେହି କଳାର କୋଣାର୍କ
ସୂରୁଯ ପଦାଙ୍କ ପଡୁଛି ଯହିଁ,
ନରସିଂହ ଦେବ ରାଜନ ଗଢ଼ିଲେ
ବାର ବରଷର ରାଜସ୍ୱ ଦେଇ ।
ମହୋଦଧି ତୀରେ ବାଲୁକା ସ୍ତୂପରେ
ବାରଶ ବଢ଼େଇ ମନ୍ଦିର ତୋଳି,
ହତାଶ ହୋଇଲେ ମୁଣ୍ଡି ମରୁନାହିଁ
କାରିଗର କୂଳ ବସିଲେ ଭାଳି ।
କାରିଗର ନେତା ବିଶୁ ମହାରଣା
ପ୍ରମାଦ ଗଣିଲା ସାଥିଙ୍କ ପାଇଁ,
ପିତାଙ୍କର ଦେଖି ବିରସ ବଦନ
ବାଳୁତ ଧରମା ଆସିଲା ଧାଇଁ ।
କହିଲା ପିତାହେ ଅନୁମତି ଦିଅ
ମନ୍ଦିରର ଚୂଳ ମାରିବି ମୁହିଁ,
ବାଳୁତ ବୋଲି ମୁଁ ଉପହାସ କିଆଁ
କୁଳର ମହତ ରଖିବି ଯାଇ ।
ଚୂଳିମାରି ସାରି କୁମର କହିଲା
ବାପା ହେ ମୋ ଆଡ଼େ ଅନାଅ ଥରେ,
ପୁଅରେ ଦାୟୀକି ଜାତି ପାଇଁ ଦାୟୀ
ବିଚାର ନିଶ୍ଚୟ କର ମନରେ ।

ପୁଅ ପଛେ ଯାଉ ଜାତି ବଞ୍ଚିଥାଉ
ବିଶୁଙ୍କ ମୁଖରୁ ଗଲା ବାହାରି,
ଡେଇଁଲା ଧରମା ସାଗର ଗରଭେ
ରଖି ଜାତି ଟେକ ନିଜକୁ ହାରି ।
ବାର ବରଷର ବାଳୁତ କୁମର
ପ୍ରାଣବଳି ଦେଲା ଚୂଳି ବସାଇ
ବିନ୍ଧାଣି ଜାତିର ମହତ ରହିଲା
ବାରଶହ ମୁଣ୍ଡ କଟିଲା ନାହିଁ ।
ଏମିତି ଦୃଷ୍ଟାନ୍ତ ଇତିହାସେ ନାହିଁ
କିଏ ସେ କାନ୍ଦୁଛି ଏ ଜାତି ପାଇଁ ?
ଧନ୍ୟ ସେହି ପିତା ଜାତିପ୍ରାଣ ନେତା
ସୁକୃତି ଲଭିଲା ପୁତ୍ରର ପାଇଁ ।
ଇତିହାସ ତା'ର ମୂକସାକ୍ଷୀ ହେଲା
ଜନଶ୍ରୁତି ହୋଇ ରହିଛି ସେହି,
କାଳର କରାଳ ଲୋଲୁପ ଦୃଷ୍ଟିରେ
ରହିନାହିଁ କେହି ରହିବନାହିଁ ।
ପ୍ରସ୍ତର ତନୁରେ ନିହାଣ ମୁନରେ
କେତେ ମୃଣମୟୀ ଜୀବନ୍ତ ହୋଇ,
ନର୍ତ୍ତକୀ ମୁଦ୍ରାରେ ଛନ୍ଦ ତୋଳୁଛନ୍ତି
ଆଖିରୁ ପଲକ ଯାଏ ଉଭେଇ ।
ପ୍ରେମୀ ଯୁଗଳଙ୍କ ପ୍ରେମ ହାବଭାବ
ଭଙ୍ଗୀ ରଙ୍ଗ ନାଚ ଜୀବନ୍ତ ହୋଇ,
ଅନୁଭବି ଯିଏ ଅନୁଭବ କରେ
ସ୍ପନ୍ଦନ ଉଙ୍କୁଟେ ଯେ ଭାବଗ୍ରାହୀ ।
ଲାଜକୁଳି-ଲତା ସରମରେ ମରେ
ଅଜଣା ପ୍ରେମିକ ପରଶ ପାଇ,

ଓଡ଼ିଆ ପାଇକ ସଇନ ସାମନ୍ତ
ସମର ହୁଙ୍କାର କରୁଛି ରହି ।
ଭୀମକାନ୍ତ ତା'ର ଗୁଣଗାନ ଶୁଣି
ଗର୍ବକରେ ଆଜି ଓଡ଼ିଆ ଭାଇ,
ଶତ ପାଇକର ଲୁହ-ଲହୁ ଧୋଇ
ବିଳାପ କରୁଛି ତାଙ୍କରି ପାଇଁ ।
ନଟିଆ ନାରଦ ନିଜ ମୁଖୁ ଶୁଣି
ଶ୍ରୀକୃଷ୍ଣ ନନ୍ଦନ ଆସିଲେ ଧାଇଁ,
ସୂରୁଯ ଦେବଙ୍କ ଗୁଣାବଳୀ ଶୁଣି
ରୋଗୀଏ ଧାଆନ୍ତି ଆରୋଗ୍ୟ ପାଇଁ ।
କୁଷ୍ଠରୋଗୀଗଣ ଆରୋଗ୍ୟ ଲଭନ୍ତି
ଚନ୍ଦ୍ରଭାଗା ଜଳେ ପାପକୁ ଧୋଇ,
ଚନ୍ଦ୍ରଭାଗା ପରା ଚିର-ପୁଣ୍ୟତୋୟା
ଆଦିମ କାଳରୁ ତୋ' ପାଶେ ରହି ।
ଦର୍ଶନାଭିଳାଷୀ ସ୍ନାହାନ କରନ୍ତି
ପାପ, ତାପ ସବୁ ଧୋଇବା ପାଇ ।
ପୁରାଣର ସେହି ପୁଷ୍କର ହ୍ରଦଟି
ଚନ୍ଦ୍ରଭାଗା ନାମେ ପ୍ରସିଦ୍ଧି ପାଇଁ ।
ରବି ଅଭିଶାପେ 'ସଂଜ୍ଞାଦେବୀ' ପରା
ଆସିଲେ ତୋ' କୂଳେ ଅଶ୍ୱନୀ ହୋଇ,
ନିଜ କାୟା ଛାଡ଼ି ନଳିନୀ ସାଜିଲେ
ସୂର୍ଯ୍ୟଦେବ ଗଲେ ଖୋଜିବା ପାଇଁ ।
'ଚନ୍ଦ୍ରରେଖା' ବାଳା ସୁଷମା ମେଖଳା
ବିହରନ୍ତି ନିତି ସାଗର କୂଳେ,
'ଚନ୍ଦ୍ରଭାଗା' ବାମା ପ୍ରଣୟ ଆଶାରେ
ରବି ଗୋଡ଼ାଇଲେ ପ୍ରତୀୟ ଭୋଳେ ।

ଅବଶେଷେ ବାଳା ନିରାଶ୍ରୟା ହୋଇ
ଶରଣ ପଶିଲା ମାତାର କୋଳେ,
ପ୍ରଣୟ ପିଆସୀ ରବି ନିତି ଆସି
ଆକୁଳ ନୟନେ ପ୍ରିୟାକୁ ଭାଳେ ।
ସୂରୁଜ ନଳିନୀ ଚିରନ୍ତନ ପ୍ରେମ
କାହାଣୀ ରହିଛି କାଳ କାଳକୁ,
'ଅର୍କାସୁର' ବଧି 'ଅର୍କତୀର୍ଥ' ବେଦୀ
ମହତ୍ୱ ରଚିଛୁ ଯୁଗ ଯୁଗକୁ ।
ଇତିହାସ ଆଉ ଜନଶ୍ରୁତି ପାଇଁ
କେତେ କାହାଣୀର ତୁ ମୂଳାଧାର,
ତୋ ମହିମା ଗାନ ରହୁ ସବୁଦିନ
ଭାବୁକ ଭାବନା ଶତ-ମୁଖର ।
ବିଦେଶୀ ଜାହାଜ ସାଗରେ ଅଟକେ
ଜାଣିଲା ବିଦେଶୀ କାରଣ ତୁହି,
ତୋପମୁନେ ଦେଲା ତୋ ଚୂଡ଼ା ଉଡ଼ାଇ
କେମିତି କୋଣାର୍କ ସହିଲୁ ତୁହି ?
ତୁ ପରା ବିଶ୍ୱର ସପ୍ତମ ଆଶ୍ଚର୍ଯ୍ୟ
କୀରତି ଥାପିଛୁ କାଳ କାଳକୁ,
'ନରସିଂହ ଦେବ' ମାନସ ସନ୍ତାନ
ପ୍ରଣତି ଢାଳନ୍ତି ସୂର୍ଯ୍ୟଦେବଙ୍କୁ ।



# କୋଣାର୍କକୁ ଚିଠିଟିଏ

ପ୍ରତିମାରାଣୀ ମିଶ୍ର (ଷଡ଼ଙ୍ଗୀ)

ଚିଠି ଲେଖିବାକୁ ବସିଛି କୋଣାର୍କ
କାଗଜ କଲମ ଧରି
କେତେ ଗୋଟି ପ୍ରଶ୍ନ ପଚାରିବି ତୋତେ
ତୋ ଦେହ ଉଠିବ ଥରି ।

ଅଭିମାନ ଯେତେ ଅଭିଯୋଗ ସେତେ
ମୁଁ ଗବେଷଣା କରିବିନି
ଅନୁରାଗେ ତୋତେ ଅନୁରୋଧ କରେ
ଆଶା, ଭୁଲ୍ ମୋତେ ବୁଝିବୁନି ।

ବାରଶହ ବଢ଼େଇ ବାରବର୍ଷର ରାଜସ୍ୱ
ଲଗେଇ ଗଢ଼ିଲେ ତୋତେ,
ବାର ବର୍ଷକାଳ ଘର ଦ୍ୱାର ଛାଡ଼ି
ନିରେଖୁଥିଲେ ଲୋ ତୋତେ ।

ଜୀବନ ତାଙ୍କର କିପରି କଟାନ୍ତି
କେବେ ତର୍ଜମା କରୁଛୁ ?
ନିହାଣ ମୁଗୁର ଧରି ବଞ୍ଚିଥିବା
ଅନ୍ତର କୋହ ଶୁଣିଛୁ ?

ରାଜାଙ୍କ ଆଦେଶ କର୍ତ୍ତବ୍ୟ ଆହ୍ୱାନ
ଜାତିର ସେ ଇତିହାସ
ତୋତେ ଜନ୍ମଦେବେ ସାଧନା ସାଧନେ
ପାଲଟି ଗଲେ ଲୋ ନିଃସ୍ୱ ।

ବନ୍ଧୁ ପରିଜନ ବାପା, ମାଆ, ପୁତ୍ର
ଭାରିଜା, କନ୍ୟାରେ ଛାଡ଼ି
ପଥର ସହିତ ପଥର ହୋଇଲେ
ତତଲା ନିଃଶ୍ୱାସ ଛାଡ଼ି ।

ମାନସ ରାଜରୁ ମାନସୀ ଦୂରେଇ
ତୋ ଶରୀର ଦେଖୁଥିଲେ
କେବେ ତୁ ଦେଖିଛୁ ସେ ମାନସ ହୃଦ
ବିରହିଣୀ ହୃଦ ଭଲେ ।

କେତେ ଯୁବ ଶିଳ୍ପୀ କଳ୍ପନା ରାଜ୍ୟରେ
ପ୍ରଣୟିନୀଙ୍କୁ ଭାବନ୍ତି
ଫେରିଗଲେ କେବେ ପାଛୋଟି ଆଣିବେ
ଶିଳ୍ପୀ ବଧୂକୁ ଚିନ୍ତନ୍ତି ।

କେତେ କେତେ ଶିଳ୍ପୀ ନିରାଶ ହୋଇଣ
ଆତ୍ମହତ୍ୟା କରିଦେଲେ
କେତେବା ମାନସୀ ଅତୀତ କଳ୍ପନା
ତେଜି ସନ୍ନ୍ୟାସିନୀ ହେଲେ ।

ଯେଉଁ ଶିଳ୍ପୀ କୁଳ ତୋତେ ଗଢୁଥିଲେ
ତାଙ୍କୁ କି ଚିନ୍ତା କରିଛୁ ?
ଶିଳ୍ପୀକୁଳଙ୍କର ବାରବର୍ଷ ଆଶା
ପ୍ରତୀକ୍ଷାକୁ ଚିନ୍ତିଅଛୁ ?

ଶିଳ୍ପୀ ପରିବାର ଭରଣ ପୋଷଣେ
ରାଜା, ଯୋଗାଡ଼ କି କରିଥିଲେ ?
ରକ୍ତସାର ଦେହ ବଞ୍ଚିକି ପାରଇ
ତୁଚ୍ଛା ଆହାର ପାଇଲେ ?

ଶରୀର ଧରିଣ ବିରହୀ ପରାଣ
କି ଦୁଃଖରେ ସଢୁଥିଲା
ପତି ପତ୍ନୀ ଦୁଃଖ ଜାଣିତୁ ପାରିନୁ
ତୋ ମନରେ ବି ତ ନ ଥିଲା ।

ଗର୍ଭର ସନ୍ତାନ ଜନମ ହୋଇଲା
ଦିନକୁ ଦିନ ବଢ଼ିଲା
ମାଆ କୋଳେ ରହି ବାପ ପରିଚୟ
ଦରୋଟି କଣ୍ଠେ ପୁଚ୍ଛିଲା ।

କି ଉତ୍ତର ଦେଲା ସେ ହତ ଭାଗିନୀ
କେବେ କି ତୁ ଭାବିଅଛୁ ?
ଅଣ ବାପୁଆର କି ଅସହ୍ୟ ବ୍ୟଥା
ଉପହାସ ତୁ ଶୁଣିଛୁ ?

ସତେ ଲୋ କୋଣାର୍କ ଚିହ୍ନିଛୁ କି କେବେ
ତୋ ଏନ୍ତୁଡ଼ି ଶାଳ କଥା
ଶିଳ୍ପୀର ଶରୀର ମନ ପ୍ରାଣ ବ୍ୟଥା
ତରୁଣ କିଶୋର ଗାଥା ।

ଦେହରୁ ମନରୁ ବସନ୍ତ ଫେରିଲା
ବାରବାର, ଥର ଯା'ର
ଶରୀରର କ୍ଷୁଧା, ତା'ପ୍ରାଣର ତୃଷ୍ଣା
କାମନା ଲୋ ଚୁର୍‌ମାର୍ ।

ତୋର ମନ୍ଦିରର ମୂର୍ତ୍ତିକୁ ଦେଖିତୁ
ଭାବିଛୁ କି ନାରୀ ଭାବ,
ଅଭାବରେ ରହି ଶିଳ୍ପୀକୁ ଦେଖାଇ
ମୂକ ହେଲା ତା' ସ୍ୱାଭାବ ।

ଲୋକେ କହନ୍ତି ଲୋ, ନବ ଯଉବନୀ
ଦେଖି ଶିଳ୍ପୀ ଗଢ଼େ ତୋତେ,
ଉନିଦ୍ର ରଜନୀ ଭୋକ ଉପାସରେ
ରହିଲେ ଲୋ ନାରୀ କେତେ ?

ନିଆଁ ଘିଅ ପରା ଏକ ସାଥେ କେବେ
ରହିପାରନ୍ତିନି ସତ୍ୟ,
ବିଚରା ଶିଳ୍ପୀର ବିରହୀ ପ୍ରାଣକୁ
କିପରି କରିଲା ଶୁଦ୍ର !

ନିଜ ଭାର୍ଯ୍ୟାଠାରୁ ଦୂରରେ ରହି ଲୋ
ଶିଳ୍ପୀ ନିରେଖିଲା ନାରୀ
ରକ୍ତ, ମାଂସ ଦେହ କିପରି ସହିଲା
ସଂଯମକୁ ହୃଦେ ଧରି ।

ତୋତେ ବା ସମୟ ମିଳିବ କେଉଁଠି
ତୋ'ର ସ୍ୱପ୍ନରେ ତୁ ଭୋଳ
ଜୀବନ ପାଇବୁ ମୁକୁଟ ପିନ୍ଧିବୁ
ସେଥିରେ ଥିଲୁ ଚଞ୍ଚଳ ।

ତୋତେ ନେଇ ରାଜା ନରସିଂହ ଦେବ
ଦେଖିଥିଲେ କେତେ ସ୍ୱପ୍ନ
ବିଶ୍ୱାସ ବି ତାଙ୍କ ଥିଲା ଲୋ କୋଣାର୍କ
ଗରବେ ଧ୍ୟାନରେ ମଗ୍ନ ।

ଯୁଗ ଯୁଗ ପାଇଁ ଠିଆ ହେବୁ ତୁହି
ତାଙ୍କ ମନ ଯଶ ବହି
କାଳଜୟିନୀ ତୁ ହେବୁ ବୋଲି ତାଙ୍କ
କୀର୍ତ୍ତିକୁ ବକ୍ଷରେ ଧରି ।

ବୁଝିତୁ ପାରିନୁ ବୁଝି ପାରିବୁନି
କି ଘଟଣା ଘଟିଗଲା,
ଶିଳ୍ପୀ କୁଳଙ୍କର ଲୁହ ଲହୁ ମିଶି
ସାଗର ଲୁଣି ବଢ଼ିଲା ।

ଅଶରୀର ହୋଇ ଅତୃପ୍ତ ପ୍ରାଣର
ଆତ୍ମାର ସ୍ୱାକ୍ଷର ନେଇ
ଜନ୍ମ ନେଲା ଅବା କେଉଁ କାଳ ସ୍ରୋତେ
କଳାପାହାଡ଼ ବୋଲାଇ ।

ଦୀର୍ଘଶ୍ୱାସ ତାଙ୍କ ସୁନାମି ଆକାରେ
ସର୍ବଗ୍ରାସୀ ଚାଲିଗଲା
ସାଗର ବେଳାର ଶୀତଳ ସମୀର
ମହାବାତ୍ୟା ପାଲଟିଲା ।

ସେଇ ଲୁଣି ସ୍ପର୍ଶ କଲା କି ବିମର୍ଷ
ତୋ ସୌନ୍ଦର୍ଯ୍ୟ ଊଣା ହେଲା
ସୁନାମି ଆସିଲା ତୋତେ ଭାଙ୍ଗି ଦେଲା
ତାଣ୍ଡବ ନୃତ୍ୟ କରିଲା ।

ଏବେ ତୁ ବଞ୍ଚିଛୁ ମୁହଁ ଦେଖାଉଛୁ
ଅଧା ପ୍ରାଣ ପରାହୋଇ
ନଗ୍ନ ମୂର୍ତ୍ତି ତୋର ବିଦେଶୀ ହାତରେ
ଦେଉ ଲଜ୍ଜ୍ୟା ମୁଖେ ନାଇଁ ?

ଆଜିବି ରହିଛି ତୋ ପଥର ମୂର୍ତ୍ତି
ବିଦେଶୀ ସଂଗ୍ରହାଳୟେ
ସୌନ୍ଦର୍ଯ୍ୟ ତୋହର କିଏ ଦେଖେ ଅବା
ନଗ୍ନ ମୂର୍ତ୍ତିର ଆଳୟେ

ଆଙ୍ଗୁଳି ନିର୍ଦ୍ଦେଶେ ସେ ମୂର୍ତ୍ତି ଦେଖନ୍ତି
ଖୋଜି କଳା ନଇପୁଣ୍ୟ
ଅଶ୍ଳୀଳ ନୁହଁଇ ବୈରାଗ୍ୟ ସନ୍ତକ
ବୁଝେଇ କହୁତୁ ଧନ୍ୟ ।
ସବୁ ସତ୍ତ୍ୱେ ଏବେ ବଞ୍ଚିଛୁ ଲୋ ତୁହି
ବଞ୍ଚେଇ ଓଡ଼ିଆ ପୁଅଙ୍କୁ
ବଞ୍ଚେଇଛୁ ରାଜ୍ୟ କଳାଚାତୁରୀକୁ
ସେ ନରସିଂହଦେବଙ୍କୁ ।

ବଞ୍ଚିଛୁ ସହସ୍ର ଶିଳ୍ପୀର ପ୍ରତିଭା
ତ୍ୟାଗର ପ୍ରତୀକ ହୋଇ
ଯା' ଲାଗି ବଞ୍ଚିଛୁ ଯା'ଗୁଣ ଗାଉଛୁ
ତା'ର ନାଆଁ ଗୋଟେ ନାହିଁ !

ବଞ୍ଚି ବଞ୍ଚେଇବା ଜଗତ ବେଭାର
ବିବେକ ତୋହର ନାହିଁ
ବଞ୍ଚିଥା ତଥାପି ବୈରାଗୀ ମନର
ଶତ ପ୍ରଶ୍ନପତ୍ର ହୋଇ ।

ଲେଖୁ ଲେଖୁ ଲେଖି, ଲେଖା ସରୁନାହିଁ
ତୋତେ ଭାରି ପଡ଼େ ମନେ
ମହାକାଳ ସ୍ରୋତ କେଡ଼େ ବେଗି ବହେ
ରାତି ସରଇ ସପନେ ।

ଭୁଲ୍ ବୁଝିବନି ମନେ ଧରିବୁନି
ମୋ କହିବା କଥା ମାନ
ତଥାପି ତୁ ଆମ କୀର୍ତ୍ତି ଗଉରବ
ଓଡ଼ିଆ ପୁଅ ସମ୍ମାନ ।

ଜାଣେନି, ତୁ ପାଇବୁକି ପାଇବୁନି
ମୋର ହାତ ଲେଖା ଚିଠି
ତୋ କଥା ପଡୁଛି, ଆଜି ସବୁଠାରେ
ଏଠିସେଠି ଓ ସବୁଠି ।

ଅନେକ ରାତିର ଉନିଦ୍ର ରଜନି
ଆଜି ମୋର ସରିଯିବ
ମୋ ହାତ ଲେଖାଟି ତୋ ହାତରେ ଯେବେ
ସତରେ ପହଞ୍ଚିଥିବ ।

ଅକୁହା ବ୍ୟଥା ମୋ ପରଷି ଦେଲି ଲୋ
ତୋ ବ୍ୟଥା ବଢ଼େଇ ଦେଲି
ହୃଦୟ ମୋହର ଆସ୍ୱସ୍ତି ଲଭିଲା
ମନେ ଖୋଲି କହି ଦେଲି ।

ସୂର୍ଯ୍ୟ ଦେବତାଙ୍କୁ କରୁଛି ଜଣାଣ
ରଖିବେ ସେ ତୋର ମାନ
ପୂଜା ପାଉଥିଲେ ସେ କାଳେ ଯେପରି
କରିବେ ତା'ର ବିଧାନ ।

ଜଣେଇ ଦିଅନ୍ତୁ ସର୍ବଶକ୍ତିମାନ
ଅଟନ୍ତି ଆଦିତ୍ୟ ତୋର
ସତ୍ୟ ଶାନ୍ତି ମୈତ୍ରୀ ସବୁ ସେଠି ଆସୁ

ରହୁ ଟେକ ତୋ ଶିଳ୍ପୀର ।

ଶିଳ୍ପୀ ଥିଲେ ସିନା ଶିଳ୍ପୀ ବଞ୍ଚିଥିବ
ଶିଳ୍ପ ପ୍ରାଣର ସଳିତା
କଳାକାର ସିନା ବଞ୍ଚି ରହେ ତା'ର
କଳା ଜୀବନ ବାରତା ।

ଅର୍କକ୍ଷେତ୍ରେ ତୋର ଅର୍କ ବିସ୍ତାରୁ ଲୋ
ତୋର ରୂପ ବଞ୍ଚିଥାଉ
ଉତ୍କଳ କଳାର ଉତ୍କଳ ଶିଳ୍ପୀର
ଜୟଜୟ ପଡୁଥାଉ ।

ଇତି କଲି ଚିଠି, ଇତି ତୁ ନ ହୁଅ
ମୁଁ ତୋର ସାଥୀ ପ୍ରତିମା
ଦୋଷ ଧରିବୁନି କେବେ ରାଗିବୁନି
ରୋଷ କରିବୁନି ଜମା ।

ଚିଠି ପାଇ ଚିଠି ଲେଖିଦେବୁ ସେଠି
ତୋ ପଥର କାନ୍ଥ ଦେହେ
ପାଷାଣ ପ୍ରତିମା ସଜୀବ ହୋଇବ
ପ୍ରତିଟି ସ୍ପନ୍ଦନେ ସ୍ନେହେ ।

ସ୍ନେହ, ପ୍ରେମ, ମୈତ୍ରୀ ବାଣୀ ପ୍ରଚାରିବୁ
କହିବୁ ଜାତିର କଥା
ଶିଳ୍ପୀର ଯା' ନାହିଁ ତୋ' ଦେହରେ ଆଜି
କହିବୁ ଅଭାବ ଗାଥା ।



# କୋଣାର୍କ

ସୁଶ୍ରୀ ସୌଦାମିନୀ ବେହେରା

ଇତିହାସକୁ ଲେଉଟାଇଲେ ବାରି ହୋଇପଡ଼ ତୁମେ
କେଉଁ କାଳୁ ମୂକସାକ୍ଷୀଟିଏ ଠିଆ ହୋଇଛ
ତୁମ ଦେହରେ ଅଛି ବାରଶହ ବଢ଼େଇଙ୍କର
ଛାଡ଼ିଯାଇଥିବା ଚିତ୍ର ମେଖଳା ।

କମକୂଟ ଦେହ ତୁମର କଳା ଓଢ଼ଣୀରେ ଢାଙ୍କି ହୋଇ
ଠିକ୍ ଏକ ଲାଜକୁଳୀ ଲଳନାର ସୌନ୍ଦର୍ଯ୍ୟରେ
ବିମଣ୍ଡିତ ତୁମେ
ସୂର୍ଯ୍ୟଙ୍କ ଆଭାରେ ଆଭୂଷିତ
ପଦ୍ମିନୀ ନାରୀର ସଂଜ୍ଞାକୁ ଦୋହଲାଇ
ସମସ୍ତଙ୍କ ମନକୁ ଆନ୍ଦୋଳିତ କର ।

ତୁମ ଦେହରେ ଖୋଦିତ ହୋଇଛି କେତେ ବୃକ୍ଷଲତା
ପ୍ରେମୀ ଯୁଗଳଙ୍କ ଗହନ କଥା
ତୁମକୁ ଦେଖିଲେ ଲାଳାୟିତ ମନରେ
ତନୁରେ ଖେଳିଯାଏ କେତେ ଶିହରଣ ।

ଦ୍ୱିତୀୟ କୋଣାର୍କ ନିର୍ମାଣର ସ୍ୱପ୍ନ ଦେଖେ ଏ ମଣିଷ !
ଆଉ କି ଗଢ଼ି ହେବ ଦ୍ୱିତୀୟ କୋଣାର୍କ !
ତୁମେ ଯେ ଅଦ୍ୱିତୀୟ !

ଗର୍ଭ ଗୃହରେ ନାହିଁ ମୂର୍ତ୍ତିର ଆବାହନ
ଅବା ଲୋଡ଼ାନାହିଁ ସିନ୍ଦୂର ଧୂପଦୀପ ଦାନ
ସମସ୍ତଙ୍କ ପ୍ରିୟ କଳା ପାଗୋଡା
ସତରେ ତୁମର ପଟାନ୍ତର ନାହିଁ ।

ଶତାବ୍ଦୀର ପାହାଚ ଚଢ଼ି ଦୃଶ୍ୟାୟନ ହୁଅ
ଜରାଜୀର୍ଣ୍ଣ ତନୁ ତୁମର ଫିକା ଫିକା ଲାଗେ
ଠିକ୍ ଅପରାହ୍ନ ବୟସରେ ପାଦଦେବା ନାରୀ ପରି
ପ୍ରେମ ବାଣ୍ଟୁଥିଲ ଦିନେ
କିନ୍ତୁ ଏବେ ଲାଗେନା
ସେ ପ୍ରୀତିର ଅନୁଭବ କି ମହକ
ହୃଦୟରେ ଖେଳେନାହିଁ ସେ ସ୍ପନ୍ଦନ ।

ନଗ୍ନତାର ପ୍ରତିଛବିରେ କିନ୍ତୁ ବାସ୍ତବତାର ନିଦର୍ଶନ
ସ୍ପଷ୍ଟ ବାରି ହୋଇପଡ଼ ଏକ ଦାର୍ଶନିକ ମନରେ ।
ତୁମେ ଏବେ ବନିଯାଇଛ ଗବେଷଣାଗାରର
ବନ୍ଧା ପଡ଼ିଥିବା ବିନ୍ଧାଣୀର ନିହାଣ ହାତୁଡ଼ି ଭିତରେ
ସୌନ୍ଦର୍ଯ୍ୟର ଗନ୍ତାଘର
ପାଲଟି ଯାଇଛି ରଙ୍ଗହୀନ ରଙ୍ଗଶାଳା ।

ହିନିମାନୀ ହୋଇ ପଡ଼ିଛ ଏ ଦାୟିତ୍ୱହୀନ ସମାଜ ଆଗରେ
ବେଶୀ ଅସହାୟ ଲାଗ, ନା କାନ୍ଦିପାର ନା ହସିପାର
କିନ୍ତୁ ନିଜ ବ୍ୟକ୍ତିତ୍ୱକୁ ନ ହରେଇ ନିରବରେ ରୁହ ।



# ଶିଳ୍ପୀ-ପ୍ରିୟା

ପ୍ରଭାକର ମହାପାତ୍ର

କୋଣାର୍କ ଭ୍ରମଣ ବେଳେ ସେଦିନ ମିଳିଥିଲା
ଭୂଲୁଣ୍ଠିତା ପାଷାଣ ପ୍ରତିମା ଏକ
ମନ୍ଦିର ଗାତ୍ରରୁ ଖସି-ଶୋଇଅଛି
ପାଦପର ଶୀତଳ ଛାଇରେ ।

ଶିଳ୍ପୀର ନିହାଣ ମୁନରେ ଗଢ଼ା ତା'ର ସ୍ୱପ୍ନ
ଆଖିରେ ଆଖିଏ ନିଦ
ସତେ ଅବା ଅନିଦ୍ରା ଅନେକ କାଳରୁ
ଓଠରେ ଲାଖି ରହିଛି ଅମଳିନ ଫୁଲର ପାଖୁଡ଼ା
ଶିଳ୍ପୀର ପ୍ରେମିକା ଯଉବନୀ ସଦାକାଳେ ପରା ।

ସଂସାର ଜଞ୍ଜାଳ, ରୋଗ, ଶୋକ ଦୁଃଖର ଧାଡ଼ିନାହିଁ
ଧୀର ସ୍ଥିର ନିଶ୍ଚଳ ଧ୍ୟାନମୁଦ୍ରାରେ
କଳମଠୁ ସରୁ ଶିଳ୍ପୀର ସାଆଣ ଦିଆ
ନିହାଣ ମୁନରେ ଅଙ୍କା-ବଙ୍କା ଅଧା ଢଙ୍କା ଭୂଲତା
ଦେହସାରା ନେସି ହୋଇଛି ଧଳାମେଘ କଳାମେଘ
ନିଜ ନିଜ ଜାଗାମାନଙ୍କରେ ।

ତନୁଲତା ଫଳ ପୁଷ୍ପରେ ମଣ୍ଡିତା
ଧଳା ପଥରଟିର କଳା ଅଂଶ ଜାନୁ ଗହ୍ୱରରେ
ପୂରିଲା ପୂରିଲା ଦେହ ଉନ୍ନତ ସ୍ତନ

ଦେହରେ ଶାଢ଼ି ଅଛି ଶାଢ଼ିନାହିଁ
ଦିଶୁଛି ଅର୍ଦ୍ଧନଗ୍ନ, କେମିତି ଫୁଟି ଉଠିଛି କାହାକୁ
ଅପେକ୍ଷା କରିବାର ଭାବ
ଓଠରୁ ଝରୁଛି ଇନ୍ଦ୍ରଧନୁର ରଙ୍ଗ
କଳାମେଘୀ ଆଖିରୁ ଝରୁଛି ସ୍ୱପ୍ନ ।
ଅକସ୍ମାତ ଆବିଷ୍କାର କଲି ଏକ କ୍ଷୁଦ୍ର କ୍ଷତ ସ୍ତନମଣ୍ଡଳରେ
ଫଳ ଲୋଭରେ କେଉଁ ପକ୍ଷୀର ଚଞ୍ଚୁର ବିଫଳ ଆଘାତ ଅବା
ଯୌବନ ଉନ୍ମତ କେଉଁ ଦର୍ଶକର ଦୁଷ୍ଟାମି
ହୋଇପାରେ ନିହାଣରେ ଦନ୍ତକ୍ଷତ ଶିଳ୍ପୀର ଶୂନ୍ୟ ଶୃଙ୍ଗାର
ପ୍ରିୟା ବିରହରେ କଟିଗଲା ଜୀବନର ଏତେ କାଳ ।

ଭାବୁଥିଲି ଶିଳ୍ପୀର ସର୍ଜନଶୀଳତା
ତାର ଅଧୁରା ସ୍ୱପ୍ନ, ବିରହୀ ଜୀବନ ଗାଥା,
ପାଷାଣ ପ୍ରତିମାଟିକୁ ଧୂଳିଝାଡ଼ି ରଖନ୍ତି ମୋ ଶୟନ କକ୍ଷରେ
ପଥର ମୂର୍ତ୍ତିଟେ ଦେଖି କ'ଣ ଭାବୁଛ ଏତେ
ପତ୍ନୀଙ୍କରେ ପଛରୁ ମନ୍ତବ୍ୟ
ଶୋଭା ପାଏନାହିଁ ଏଠି ଭାବ ବିହ୍ୱଳତା ।



# ଆଲୋକିତ କୋଣାର୍କ

ଡ. ମାୟାଧର ମହାପାତ୍ର

ତମ ଦେହର ଶିଳାଖଣ୍ଡକୁ
କିଏ କେତେ ରୂପରେ ଦେଖିସାରିଛି
କେତେ ଗାଇ ସାରିଛନ୍ତି ତମ ଗାଥା
ମୁଁ କିନ୍ତୁ ଦେଖୁଛି ଆଜି
ଏକ ଶୀତୁଆ ସନ୍ଧ୍ୟାରେ
ଆଲୋକିତ ଭଗ୍ନଶିଳାର କଥା ।

ନାଟ୍ୟମଣ୍ଡପରେ ଚାଲିଛି ମହୋତ୍ସବ
ନୃତ୍ୟାଙ୍ଗନାମାନଙ୍କର ପାଦର ଘୁଙ୍ଗୁର
କେତେ ଚଳ ଚଞ୍ଚଳ
ମର୍ଦ୍ଦଳର ତାଳେ ତାଳେ
କେତେ ଜୀବନ୍ତ ଆଉ ସ୍ମୃତିମୟ ।
କାନଭାସ୍‌ରେ ଶିଳ୍ପୀ ଜଣେ ଆଙ୍କୁଛନ୍ତି ଚିତ୍ର
ଚନ୍ଦ୍ରଭାଗାର ବାଲୁକା ଉପରେ କିଏ
ବାଲିରେ ଗଢୁଛି କଳା ଆଉ ସ୍ଥାପତ୍ୟ
କିଏ କରେ ସୂର୍ଯ୍ୟ ଉପାସନା
କିଏ ଗାଏ ବିଶ୍ୱ ପ୍ରେମର ବନ୍ଦନା
ପ୍ରୀତିର କରୁଣା ।
ତମେ ଆଜି ଅନ୍ଧାର ଭିତରେ ଓଡ଼ିଆର

ଆଲୋକିତ କଳାର ବିଶ୍ୱାସ
ତା'ରି ସାମ୍ନାରେ ନୃତ୍ୟାଙ୍ଗନା କରୁଅଛି ନୃତ୍ୟ
ଭିନ୍ନ ବାସ୍ନାରେ ବାସ୍ନାୟିତ
ମୋର ସମଗ୍ର ଚେତନା ।
ସଞ୍ଚରି ଯାଉଛି ତାଳୁରୁ ତଳିପାଯାଏଁ ।
ଏଇ ମୁହୂର୍ତ୍ତରେ ଆସନ୍ତ କି ବିଶୁ ମହାରଣା
ସାଙ୍ଗରେ ଧରି
ପୁଅ ଧର୍ମପଦ,
ବାଡ଼ି ବରକୋଳି, ବଳିଆ କୁକୁର
ଦେଖନ୍ତ, ତମ ହାତ ତିଆରି କୋଣାର୍କ ଆଜି ଆଲୋକିତ ।
ବାଲୁକା ଶିଳ୍ପୀ ସୁଦର୍ଶନ, ସୁବଳ
ନୃତ୍ୟାଙ୍ଗନାରେ ସୁଜାତା, କବିତା
କାନ୍‌ଭାସ୍‌ରେ ବଳଦେବ ଆହୁରି ଅନେକ
ତମେ ହିଁ ଲେଖିପାରିବ ଭଲଭାବେ
ଏହି ଶୀତୁଆ ସନ୍ଧ୍ୟାରେ
ଏକ ଆଲୋକିତ କୋଣାର୍କର
ଇତି କଥା ।
କେଡ଼େ ରୋମାଞ୍ଚକର
କେତେ ପ୍ରଣୟସ୍ପର୍ଶ ।
ବିରଳ ଅନୁଭବରେ
ପଥର ସାମ୍ନାରେ କେମିତି
ମଣିଷ ପାଉଛି ମୋକ୍ଷ ।



# ଧର୍ମପଦର୍ ଆତ୍ମହତ୍ୟା

ଚିନ୍ତାମଣି ବେହେରା

ହେ ଅଗ୍ରଜ ଜାତି-ଧର୍ମପଦ
କିମ୍ବଦନ୍ତୀ କହେ ଆଜି          ଆତ୍ମହତ୍ୟା କରିଥିଲ ତୁମେ
ଭୁଲିବାକୁ ଦ୍ୱନ୍ଦ୍ୱ ଗୃହଭେଦ ।
ଜାତିପାଇଁ ପ୍ରାୟଶ୍ଚିତ୍ତ          ସଗୌରବେ ବରିଥିଲ ତୁମେ
ରଖିବାକୁ ଶିଳ୍ପୀ-ସନମାନ,
ଅଯୋଗ୍ୟ ଦାୟାଦ ଶିଳ୍ପୀ          ବୁଝିଲେନି କିନ୍ତୁ ତୁମ ବାଣୀ
ଅର୍କପୀଠ ତେଣୁ ଶ୍ମଶାନ ।
ନିର୍ମମ ଶାସକ କାଳ          ନିଜ ହାତେ ଧ୍ୱଂସକରେ ଆଜି
ତୁମ ଅର୍କ-ଦେବାଳୟ ଶିଳା
ନିଜର ପତନ ଆଣି          ଦେଖି ପୁଣି ସହେ ତାକୁ ବୁକେ
କହ କେଉଁ ଜାତି-ବୃହନ୍ନଳା ?
ସଂସ୍କୃତି-କୋଣାର୍କ ଚୂଡ଼ା          ମୁଣ୍ଡି କେହି ମାରିଥିଲା ଦିନେ
ଅବିଶ୍ୱାସ୍ୟ ଆଜି 'ଧର୍ମପଦ'
ଶତ ଶତ ତୈଳଜୀବୀ          ତ୍ରିଶଙ୍କୁର ସ୍ୱର୍ଗସ୍ୱପ୍ନ ନିତି
ପ୍ରାଣେ ଆଣେ କ୍ଷୟ ଅବସାଦ ।
ଶୁଣୁଚ କି ଧର୍ମପଦ          ଏ ଜାତିର ପ୍ରାଣ-ରନ୍ଧ୍ରେ ବାଜେ
କ୍ଷୋଭ କ୍ଳାନ୍ତି ନୈରାଶ୍ୟର ସ୍ୱର
ନେତୃତ୍ୱର ପ୍ରତାରଣା,          ମିଥ୍ୟା ଅଶ୍ରୁ, ସ୍ୱାର୍ଥବାଦ ପାଇଁ

ଲୋତୁଚ କି ସ୍ୱର୍ଗେ ପ୍ରତିକାର ?

ଏ ଜାତି ଜାଣିନି ବଂଚି ସସମ୍ମାନେ ବିଶ୍ୱ-ଦରବାରେ
ଭୁଲିଅଛି 'ନଚିକେତା' - ଗାଥା
ମୃତ୍ୟୁ-ଗର୍ଭେ ଶୋଇ ତେଣୁ ରଚେ ମିଥ୍ୟା ଜୀବନର ଗାନ
'ସତ୍ୟବାଦୀ' ସ୍ୱପ୍ନେ ଜାଳି ଚିତା ।
ସ୍ୱାର୍ଥ ଆଜି ହୋଇଅଛି ଆଦର୍ଶର 'ଅବକାଶ ଚିନ୍ତା'
କାହିଁ ମୁକ୍ତି 'କାରା-କବିତା'ର ?
ଅଭିନବ ବନ୍ଦୀଶାଳା ନିଜ ମନେ ଗଢ଼ି ଜନନେତା
ଦେଶପ୍ରୀତି କରେ କାରବାର ।
ଶତଶତ ଶିଳ୍ପୀପ୍ରାଣେ ଆଣି ତୁମେ ଅମୃତ-ଅଙ୍କୁର
ରୋପିଥିଲ ଯାହା ଧର୍ମପଦ
ବିଷବୃକ୍ଷ ବୋଲି ତାହା ପଡ଼ିଲାଣି ଚିହ୍ନା ଦେଶେ ଆଜି
'ଲେ ସ୍ୱାର୍ଥ-ହଳାହଳ ବାଦ ।
ଶିଳ୍ପୀ ଆଜି ତୈଳଜୀବୀ ପଣ୍ୟକରେ ତୁମ ପୂତ ନାମେ
ଗୃହେ ରଖି ତୁମ ତୈଳଚିତ୍ର
ଜାଣୁଥିବ ସ୍ୱର୍ଗେ ଥାଇ ନିଜ ଗୃହେ ପାଳଟିଛ ତୁମେ
ପ୍ରାଣହୀନ କିମ୍ବଦନ୍ତୀ ମାତ୍ର ।
ଏ ଜାତିର ଶ୍ରେଷ୍ଠକଳା କୋଣାର୍କର ଇତିହାସ ଜାଣି
ଉତ୍ତିଷ୍ଠତ ହେଉ ଜାତି-ଚିତ୍ତ
'ଧର୍ମପଦ' ହତ୍ୟା ପାଇଁ ଦାୟୀ ଯେଣୁ ପ୍ରତି ଜଣ ଆମେ
କରିଶିଖୁ ଆତ୍ମ-ପ୍ରାୟଶ୍ଚିତ୍ତ ।



# କୋଣାର୍କ : ଏକ ଭଙ୍ଗାଭଙ୍ଗା ସ୍ୱପ୍ନ

ଧୀରେନ୍ ଆଚାର୍ଯ୍ୟ

ଲକ୍ଷ ଜୀବନର
ସୁରକ୍ଷାର ପ୍ରତିଶ୍ରୁତି
ଦୋଚାରୁଣୀ ସ୍ୱପ୍ନଟିଏ ହୋଇ
ଦଖଲ କରିଗଲା ବୋଲି
ଜଣେ ରାଜାର
ରାତିକର ଆଖିକୁ
ତୁମର ଜନ୍ମ
ସେଥିରେ
ରାଜା ବିଚରାର
ଦୋଷ କଣ ?

ଭାଗ୍ୟବତୀ ସ୍ୱପ୍ନଟିଏ
ଗର୍ଭବତୀ ହେବାପାଇଁ
ରାତିଏ ରାତି
ଆଖିଏ ସ୍ୱପ୍ନ
ଆଉ ସବୁଠାରୁ ବେଶୀ
ଆବଶ୍ୟକ ହୁଏ
ଏକ ବାଚାଳ
ଅଥଚ ରାଜକୀୟ ମନ ।
ସେମିତିକା ସ୍ୱପ୍ନଟିଏ
ଯଦି ଦେଖି ପାରିଲା
ଜଣେ କେହି ଭାଗ୍ୟବନ୍ତ ରାଜା
ସେଥିରେ ରାଜା ବିଚରାର
ଦୋଷ କ'ଣ ?

ତୁମକୁ କ'ଣ ଜଣା ନ ଥିଲା-
ଶିବେଇ ସାନ୍ତରାଠୁ
ବିଶୁ ମହାରଣା
ଧରମାଠାରୁ
ଧୀରେନ୍ ଆଚାର୍ଯ୍ୟ ଯାଏ
କେହି କେବେ ଦେଖି ପାରନ୍ତିନି
ସେମିତି ମଖମଲି
ମୁଲାୟମ ସ୍ୱପ୍ନଟିଏ
ରାତି ଅବା ଦିନ,
କବନ୍ଧ ସକାଶେ
ଛତା, ଛତୀ ପଗଡ଼ିର
କିବା ପ୍ରୟୋଜନ ?

ତେବେ ଝଡ଼ି ପଡ଼ିଲ ଯେ !
ଦ୍ୱିତୀୟରେ ପଢୁଥିବା
'ମାମା', 'ବାପି'ଙ୍କର
ହାତ ତିଆରି ଟଳମଟଳ
ତାସ୍‌ର ଘରପରି
ଝଡ଼ି ପଡ଼ିଲେ ଯେ !

ଭାବିଲ କି ?
ଖୋଦିତ ପଥର ଚାପାରେ
ଚୂର୍‌ମାର୍ କରିଦେବ
ପିତୃରାଜାର ଧାର୍ମିକ ଅହଂକାରକୁ ?
ହେଲେ ଏକଥା ବି କ'ଣ
ଭାବିବାର ନ ଥିଲା ତୁମର ?
ଯାହା ପୁଣି କେବେ
ଦୋହରାଇ ହୁଏନା
ଆଉ କେଉଁଦିନ
ତାହାହିଁ ତ ସ୍ୱପ୍ନ ।



# ରାଜ ନର୍ତ୍ତକୀ

ଡ. ଅନ୍ତର୍ଯ୍ୟାମୀ ମିଶ୍ର

ଏ ସେଇ ଶିଳାଶିଳ୍ପ
ଯେଉଁଠି ପଥର କଥା କହେ
ଆଉ ତାକୁ ଛୁଇଁଛୁଇଁ
ବହି ଯାଉଥିବା ପବନ ଗୀତ ଗାଏ ।

ଧରମାର କରୁଣ କାହାଣୀ -
ଦିନରେ ମୂର୍ତ୍ତି, ରାତିରେ ନର୍ତ୍ତକୀ,
ପାଦରେ ଘୁଙ୍ଗୁର ବାନ୍ଧି ନାଚିବ ସେ
ପ୍ରତି ରାତିରେ ଶିଳ୍ପୀକୁ ଆଖିଠାରି
ଭଙ୍ଗିମାର ଉପହାର ଦବ
ନିହାଣରେ କଳାର ନୈପୁଣ୍ୟ ପାଇଁ
ତା'ର ଏ ସମର୍ପଣ, ତା'ର ବା ଦୋଷ କ'ଣ ?
ସେ ଯେ ଭଲପାଏ ଶିଳ୍ପୀକୁ
ତା'ର କଳା କୌଶଳକୁ ।

କିନ୍ତୁ ଏ ଯେ ରାଜାର ଆଦେଶ !
ରାଜ ନର୍ତ୍ତକୀ ସେ
ସମ୍ମୁଖରେ ଶୃଙ୍ଖଳାର ଲକ୍ଷ୍ମଣରେଖା
ରାଜଦଣ୍ଡ ଦୁର୍ନିବାର ।

ସେ କିନ୍ତୁ ଚାହେଁ ମୃତ୍ୟୁ,
ରାଜାଦେଶ ଶିରୋଧାର୍ଯ୍ୟ
ମୃତ୍ୟୁରେ ହିଁ ତା'ର ଅନନ୍ତ ଜୀବନ,
'ମୃତ୍ୟୁ' ଚିରମହାୟାନ
ରାଜ ନର୍ତ୍ତକୀର ସମର୍ପିତ 'ଜୀବନ' ନୁହେଁ
କଳା ଦୀର୍ଘଜୀବୀ ହେଉ, ବଞ୍ଚି ରହୁ କୋଣାର୍କ ।



# କୋଣାର୍କ

ଦୁର୍ଯ୍ୟୋଧନ କାଠୁଆ

ତମେ ଦିନର କୋଣାର୍କ
ରାତିର କୋଣାର୍କ ବି,
ତମେ ତାତିର କୋଣାର୍କ
ରତିର କୋଣାର୍କ ବି ।
ହସର କୋଣାର୍କ, ରସର କୋଣାର୍କ
ଲୁହର କୋଣାର୍କ, ଲହୁର କୋଣାର୍କ,
ଅଭିମାନ, ସ୍ୱାଭିମାନ,
କଷଣ ଓ କାରୁଣ୍ୟର ଉତ୍ତରଣ ତମେ
ପାଷାଣ ବୁକୁରେ ଲେଖା ଅଲିଖିତ ଜାତିର ଐତିହ୍ୟ,
ବୁନ୍ଦା ବୁନ୍ଦା ଝାଳ ତମେ ତୁହା ତୁହା କୋହ ।

ଅନ୍ଧାର ରାତିରେ
ହାଉଯାଉ ଆଶା ଓ ଭାଷାଙ୍କ ମେଳରେ,
ନିର୍ଜନ ଝାଉଁବଣର ବିଦୀର୍ଣ୍ଣ ବ୍ୟଥାରେ,
ତରଙ୍ଗଙ୍କ ବିକ୍ଷୋଭରେ
କାଇଁ ତମ ତୁନି ହେବା
କେବେ ତ ଭାଙ୍ଗେନି !

ଅୟୁତ ବ୍ୟଥାର ଗୋପନ ଦଲିଲ୍
ଛାତିତଳେ ଚାପିଦେଇ ଚାହିଁଥାଅ

ଉଦୟ କିରଣର ରଙ୍ଗ ବୋଲି ହେବାକୁ
ଦୁନିଆକୁ ଭୁଲେଇ ଦେବାକୁ ।

ସୂର୍ଯ୍ୟ ଉଇଁବା ଆଗରୁ
ଅରୁଣ ତା' କିରଣର ଲଗାମ୍ ଟାଣି
ଗର୍ଭଗୃହକୁ ଚାହେଁ ଇଷ୍ଟ ଭକ୍ଷା ଦେବାଲାଗି ।
ରୁଦ୍ଧଦ୍ୱାର ଦେଖି ହତାଶ ହୁଏ, କ୍ରୋଧରେ
ଲାଲ୍ ରଙ୍ଗ ଢାଳିଦିଏ ମୁହଁରେ, ସ୍ତନରେ, ସର୍ବାଙ୍ଗରେ
ସବୁ ଅଭିଶପ୍ତା ଅପ୍ସରୀଙ୍କ, ରାତିସାରା ଖାଲି ବାଲିରେ
କ'ଣ ଗୋଟେ ଖୋଜୁଥିବା ପାଦ ଚିହ୍ନମାନ
ସକାଳେ ଲାଲ୍ ଦିଶନ୍ତି, କେହି କେଉଁଠି ନ ଥାନ୍ତି ।
ରାତିସାରା କିଏ ବୁଲୁଥିଲେ ନିଛାଟିଆ ବେଳାଭୂଇଁରେ ?
ବାରଶ ବଢ଼େଇ କ'ଣ ଧରମାକୁ ଘାଟରେ ହଜେଇ
ଅବାଟରେ ଖୋଜୁଥିଲେ ପ୍ରାୟଶ୍ଚିତ ପାଇଁ ?

ସୂର୍ଯ୍ୟ ଉଠେ ଉପରକୁ
ଝାଉଁବଣର ଝଙ୍କାରରେ ଭୁଲି ନ ଯାଉ
ଉପରକୁ ଉପରକୁ ଉଠେ ମଧ୍ୟାହ୍ନ ମାର୍ତ୍ତଣ୍ଡ,
ବେଳାଭୂଇଁର ପ୍ରକାଣ୍ଡ ତାଉଆରେ ବାଲିସବୁ
ଟକ୍‌ମକ୍ ହୋଇ ଫୁଟେ, ସୁଖ ସନ୍ଧାନରେ
ବୁଲୁଥିବା ମୁହଁମାନ ସରୁ ହୋଇଯା'ନ୍ତି, ପ୍ରସାଧନ ନିଗିଡ଼ି
ବୋହିଯାଏ, ଯୁଗ ଯୁଗର ଲୁହରେ ଲୁଣିଆ
ମହାସାଗରର ଜଳ ଶୋଷ ମାରିପାରେନି
ସମୟ ନିଜକୁ ନିଜେ ବି ମାଫ୍ କରେନି ।

ଧୀରେ ଧୀରେ ବେଳ ଗଡ଼ିଯାଏ, ଅସ୍ତସୂର୍ଯ୍ୟର
ଲାଲିମା ନେସି ହୋଇଯାଏ ତମ ଗାତ୍ରରେ ଖୋଦିତ
ଅସ୍ତସୂର୍ଯ୍ୟର ସର୍ବାଙ୍ଗରେ । ସନ୍ଧ୍ୟା ଓହ୍ଲେଇ ଆସେ

ଅଚାନକ ଚାରିଦିଗରୁ, ଅନ୍ଧାର ବାହାରି ଆସେ
ଝାଉଁବଣରୁ । ଅନ୍ଧାର ରାତିରେ ତାରାମାନେ ଦେଖୁଥାନ୍ତି
ଶାଳ ଭଞ୍ଜିକାଙ୍କ ଶୃଙ୍ଗାର, ଜହ୍ନରାତିରେ
ହରିଣ୍ମୟ କ'ଣ ଅଜାଡ଼ି ହୋଇପଡ଼େ ଖାଲି ବାଲିରେ ।

ତମ ପ୍ରାଙ୍ଗଣରେ ନୂପୁର ବାଜେ, ମର୍ଦ୍ଦଳ ବାଜେ,
ତାଥେଇ ତାଥେଇ ନାଚରେ ସମୟର ବ୍ରହ୍ମରନ୍ଧ୍ର ଚହଲିଯାଏ ।
ତଥାପି କାହିଁକି ତମର ତୁନି ଭାଙ୍ଗେନି,
ଲୁହ ଶୁଖେନି !

ଏ ସହସ୍ରାବ୍‌ଦିର ଅଶାନ୍ତ ମଣିଷ
ଶାନ୍ତି ପାଇଁ ତମ ପାଖକୁ ଧାଉଁଛି,
ତମ କିଶୋରୀଙ୍କ ପାଦ ସାଉଁଳୁଛି, ସେମାନଙ୍କ
କଟିସୂତା, ସ୍ତନହାରରେ ବନ୍ଧା ପଡ଼ିଛି,
କଠିନ ସ୍ତନରେ ମୁଣ୍ଡ ପିଟୁଛି ।

କୁହ ! ତଥାପି କାହିଁକି ତମ ତୁନି ଭାଙ୍ଗୁନି,
ଲୁହ ଶୁଖୁନି, ସାରା ସାଗର ଜଳ
ଲୁଣି ହୋଇଗଲା ପରେ ବି ।



# ବିରହର ଶିଳାଲେଖ

ବିପିନ୍ ମହାନ୍ତି

ବାରଶ ବଢ଼େଇ ଲେଖିଯାଇ ଥିଲେ
ବିରହର ଶିଳାଲେଖ,
ବିଚ୍ଛେଦ କାହାଣୀ ଯାହାକୁ ଦୁନିଆ
କହୁଅଛି କୋଣାରକ ।
ପାଷାଣ ଓ ନାରୀ ଦୁହେଁ ଏକାପରି
ବଖାଣିଛି ଶିଳ୍ପୀ ଆଙ୍କି,
ପାଷଣଠୁ ଟାଣ ନାରୀର ହୃଦୟ
ଇତିହାସ ଗଲା ଲେଖି ।
ଯେଉଁଠାରେ ଶିଳା ପାଲଟିଛି କଳା
ଆହା କହୁଛନ୍ତି ଲୋକ ।

ତୁମରି ବିରହ ମୋତେ ଅହରହ
ଦେଉ ଅବା ଯେତେ ଦୁଃଖ,
ତୁମ ବିଛେଦରେ ଗଢ଼ିତ ପାରିବି
ଆଉ ଏକ କୋଣାରକ
ଦୁନିଆ ଖୋଜିବ କିଏ ଏହି ଶିଳ୍ପୀ
ବିରହର ଉପାସକ ।



# ଧରମା

ଯୋଗେନ୍ଦ୍ର କୁମାର ନାୟକ

ଚନ୍ଦ୍ରଭାଗା ବେଳାଭୂଇଁର ଶୁଖିଲା ବାଲିଶେଯ
କେବେ କି ଚାହିଁନାହିଁ
ଗହୀର ବାଲିରେ ପୋତି ହେଇଥିବା
ବାରଶ ବଢ଼େଇର ନିହାଣ
କେହି କି ଶୁଣିନାହିଁ ଗୁଣୁଗୁଣଉ ଥିବା
କୋଣାର୍କର ଭଗ୍ନଶିଳା
ମୁଖଶାଳାରେ ନୀରବି ଯାଇଥିବା ନଟୀର
କରୁଣ କ୍ରନ୍ଦନ ?

ଯେବେ ଶୁଭୁଥିଲା ତରଙ୍ଗର ଉତ୍ତାଳ ତନୁରେ
ସାଗର ଗର୍ଜନ
ମାଟି ଆମ ସହିଥିଲା ଛାତି ପାତି
ଯେତେବେଳେ ମଣିଷର ପାପ,
କି ରଙ୍ଗା ! କି ବିନ୍ଧାଣୀ
ସବୁ ଦୁଃଖର କାହାଣୀ ଲାଗି
ପଥର ଛାତିରେ ଲେଖା
ପଦ୍ମଶିଳାର କାବ୍ୟ ।

ଦୁଃଖକୁ ଚିହ୍ନିବୁ ବୋଲି ଉଣା ହେଲା କି ମା'
ମମତାର ବାଡ଼ି ବରକୋଳି
ମନ୍ଦିର ଚୂଡ଼ାରୁ ଫେରି ଆସିଲାକି ପୁତା ?

ନିର୍ଲିପ୍ତ ସାଗରର ନୀଳଢ଼େଉ
ଯେବେ ପୋଛୁଥିଲା ମାତୃଗର୍ଭ
କିବା ଅଛି ଫେରିବାରେ
ବାରବର୍ଷ ବିଚ୍ଛେଦର ସୁପ୍ତ ଅନୁରାଗ !

ଫେରି ଆସ ହେ ବିନ୍ଧାଣୀ ବାରଶ'
କେବେହେଲେ ତ ପୋଛିଦିଅ ନିହାଣ ମୁନରେ
ବାରବର୍ଷ ତପସ୍ୟାରୁ କଳାର କଳଙ୍କ
ଫେରିଆସି ବୟାନ କର
ଅସମର୍ଥ ବିନ୍ଧାଣୀର ଭୀରୁପଣ
ଥରେ କୁହ ତ ବାରଶ ବଢ଼େଇରେ ଦାୟ
ନା ଧରମାରେ !



# କୋଣାର୍କ

କମଳ କୁମାର ମହାନ୍ତି

ରୂପର ଅରୂପ
ଅରୂପର ରୂପ
ଅର୍କର ଉଲ୍ଲାସେ ଏଇ
ପଥର ଦେହରେ କଳାର ଓଡ଼ିଶୀ
ଜିଣିଛି ବିଶ୍ୱ !

ଝାଉଁ ଉହାଡ଼ରେ ଆହା କି ଶିଳ୍ପ
ବାଲୁକା ରାଶିରେ ଦିଶଇ ଅଳ୍ପ
ଗୁମର ଜାଣିଛି ଇତିହାସ ତା'ରେ
ଶିଳ୍ପୀର ଜାତି ପଥର ବନିଛି
ଲହୁଲୁହାଣର ଭୀତିରେ ମୁରୁଛି
ଉଭେଇଛି କାଳରାତି
ତରଳି ଯାଇଛି ରାଜାର ଅହଂ
ମନ୍ଦିର ଚୂଡ଼ା ଦେଖି ।

କଳା ପାଗୋଡ଼ା !
ତୁମ କାନ୍ଥରେ କାନ ଡେରିଦେଲେ
ଥରିଯାଏ ଦେହ ଉଦ୍‌ବେଳନର ବିପୁଳ ରୋମାଞ୍ଚେ
ସତେ ମାଡ଼ି ପଡୁଥାଏ ଶଙ୍କା
କାହିଁ ଫେରିବକି ସେହି କଳିଙ୍ଗ ସାହସୀ

ଆପଣା ଛାତିକୁ ଢାଲ କରି ଯିଏ
ବଞ୍ଚାଇପାରେ ଜାତି !
କାୟା ବିସ୍ତାରି ବାହୁ ପ୍ରସାରୀ
ଧସିଆସେ ଯେବେ ବିଦେଶୀ ଅରି
ବୁହାଇ ଦେଇ ଶୋଣିତ ନଦୀ
ତଥାପି ହାରଇ ଏ ଜାତି ଆଗେ
ଅନୁଶୋଚନାର ଅଶ୍ରୁରେ ଧୋଇ
ହିଂସାର ତରବାରୀ ।

ଆଜି ଏ କୋଣାର୍କ ହୃଦୟ ତୀର୍ଥେ
ପତନର ପଦଧ୍ୱନି !
ଝାଉଁ ବାଟିକାରୁ ଚନ୍ଦ୍ରଭାଗାର ବେଳାଭୂମି
ଖଣ୍ଡିତ କେତେ ସ୍ୱପ୍ନରେ ଚରେ
ସଂଶୟର ଚୋରାବାଲି

ସତେ ଆଉ କି ଫେରିବେ
ବିଶୁ ମହାରଣା ବାରଶ' ବଢ଼େଇ
ଦରିଆ ବାଲିକୁ ଉଜ୍ଜ୍ୱଳ କରି
ଆସିବ ଧରମା
ଗଢ଼ିବାକୁ ପୁଣି
କଳା ମୁଗୁନିର କାବ୍ୟକଳାରେ
ବିସ୍ମୟର କୋଟିତୀର୍ଥ
ଆଉ ଥରେ ନୂଆ କରି !



# ଧରମା

ଡ. (ଶ୍ରୀମତୀ) ଲାଲା ସେନାପତି

ହେ ଉତ୍କଳ !
କୀର୍ତ୍ତିଶାଳୀ କୋଣାର୍କର, ଅପୂର୍ବ ଭାସ୍କର
ବାରବର୍ଷ ତପସ୍ୟାର, ସିଏ ପୁଣ୍ୟ ଫଳ ।
ଶିଳ୍ପୀକୁଳ ଗଉରବ, ଗୋପନେ ଗରଭେ
ରଖି ଚୁଲି ମାରିଥିଲା, ଧରମା ନୀରବେ ।
ସଂସ୍କୃତିର ନଉତିକୁ, ଶୀର୍ଷରେ ରଖିଲା
ଶକୁନ ବିଦେଶୀ ତାକୁ, ଚୋରି କରି ନେଲା ।
ବାରଶହ ବଢ଼େଇର, ମୁଣ୍ଡରକ୍ଷା କରି
ନିଜେ ଝାସ ଦେଇଥିଲା, ପିତା ସତ୍ୟ ପାଳି ।

ହେ ଉତ୍କଳ !
ଗରବର ଗୋବର୍ଦ୍ଧନ ଗିରିକୁ ଟେକିଲା
ସର୍ଜ୍ଜନାର ପ୍ରତିଶ୍ରୁତି ଦେଉଳେ ରଚିଲା ।
ଇତିହାସ ଝୀଇଁଅଛି ଭଙ୍ଗା ଦେଉଳରେ
ବିଷାଦରେ ବିସ୍ତାରିତ ବାଲୁକା ପ୍ରାନ୍ତରେ ।
ଲୁଣି ଲୁଣି ଲୁହ ଧାରେ ଚନ୍ଦ୍ରଭାଗା କୂଳେ
ମାଘମାସ ସପ୍ତମୀର ସନ୍ନ୍ୟାସୀ ସକାଳେ ।
ଏବେ ତାକୁ ଖୋଜେ ଜହ୍ନ ଖୋଜେ କୁଆଁତାରା
ସାରା ବିଶ୍ୱ ଖୋଜୁଅଛି କରି ଗଳା ହୀରା ।



# କୋଣାର୍କ

ରସାନନ୍ଦ ସାହୁ

ସେ ଏକ ମନ୍ଦିରନୁହଁ
ମୁଖଶାଳା ।
ମୁଖଶାଳା ନୁହଁ
ବୈଦୁର୍ଯ୍ୟମୟ ରଥଟିଏ
ଛଲାଙ୍ଗ୍ ମାରିବାକୁ ଉଦ୍ୟତ
ଆକାଶକୁ
ଅବଗଣନା ଆରମ୍ଭ ଦଶ-ନଅ-ଆଠ
ପ୍ରସ୍ତୁତ ସାରଥୀ ଅରୁଣ
ପ୍ରସ୍ତୁତ ରଥୀ ସୂର୍ଯ୍ୟଦେବ ।

ରଥ ନୁହେଁ ଏ...
ଗଜପତି ଲାଙ୍ଗୁଲା ନରସିଂହ ଦେବଙ୍କ
ଅମରତ୍ୱର କୀର୍ତ୍ତି
ଆଖି ଝଲସା 'ମାନପତ୍ର' ।

ଯା' ଉଜ୍ଜ୍ୱଳତାର ଚଞ୍ଚକତାରେ
ଉଭାନ୍ ଠିକଣା
ଶହ ଶହ ଶିଳ୍ପୀ, କାରିଗର
ଶ୍ରମିକ, କୃଷକଙ୍କର...
ବର୍ଷ ବର୍ଷର ତ୍ୟାଗ, ସାଧନା, ଉତ୍କର୍ଷତା

କରୁଣତମ ଦୀର୍ଘଶ୍ୱାସମାନଙ୍କର ଇତିହାସ
ପରିଚୟ...
ଇମିତିକି ଫସିଲ୍ ।
ବାରଶ' ବଢ଼େଇଙ୍କର
ମୁଣ୍ଡକାଟର ସ୍ୱାଭାବିକ ଆଦେଶ
ବାରବର୍ଷ ଅବୋଧ ବାଳକ ଧରମାର
ଆତ୍ମବଳି
ଆଇମା' କାହାଣୀ ।

-୨-

କୋଣାର୍କ - ଏକ ମାନପତ୍ର
ନିର୍ଜୀବ ପାଷାଣ ରୁକ୍ଷ ତନୁରେ
ଫୁଟିଥିବା ମନ୍ମୟ କବିତା ଫୁଲମାନଙ୍କ
ବର୍ଣ୍ଣିଳ ବଗିଚାର / କୋଣାର୍କ ଏକ ମାନପତ୍ର
ଗଜପତିଙ୍କ ପ୍ରଜାପତି ଓ ଭଅଁର
ଶୋଷର ବାଙ୍ମୟ ଭୂଗୋଳର
କୋଣାର୍କ ଏକ ମାନପତ୍ର
ମୃଗୟା ଓ ଦିଗ୍‌ବିଜୟର
ପରାଜୟକୁ ଭୁଲିବାର ଏକ
ଚିତ୍ର - ଆଶ୍ୱାସନାର ।

ଦିନେ ମୁଁ ସେଇଠି ଭେଟେ
ଇଭା ବ୍ରାଉନ୍‌କୁ
ନୀଳ ନୟନା ବିଦ୍ୟାଧରୀ ଇଭା
ଗୋଟେ ମୈଥୁନ - ବନ୍ଧ ପାଖରେ ଲାଖିଥିବା
ମଧୁର ଚେତନାର ଅବୋଧ ଶୀତ୍କାର !
ପାଷାଣ କବିତାର

ସ୍ତବକଟିଏ ନେଇ ମୁଁ
ଖୋସିଦିଏ ତା' ସୁନେଲି
କେଶର ଗଭାରେ ।

ଜହ୍ନିଫୁଲ ଇଭାର ନଇଁଯାଏ ମୁହଁ
ଆହୁରି...
ଦୁଇ ନୀଳ ହ୍ରଦର ଆଖି ବୁଜି ହେଇଯାଏ
ଥରିଯାଏ କଅଁଳ ସ୍ଫୀତ ଓଠ... ।

ସେ ହେଇଯାଏ
ଉତ୍ସବମୟ ।

-୩-

ଇଭାମାନେ ଆସନ୍ତି
ଯାଆନ୍ତି -
ସେ କିନ୍ତୁ ଠିଆ ହେଇଥାଏ ସେମିତି
ଉତ୍ସବଟିଏ ହେଇ
ଦିନପରେ ଦିନ
ବର୍ଷ ପରେ ବର୍ଷ
ଇଭାମାନଙ୍କ ପରି ଶିଳ୍ପୀ ଅପେକ୍ଷାରେ
ଗୋଟେ ପରିପୂର୍ଣ୍ଣ ମୁହୂର୍ତ୍ତର
ଅନୁଭବରେ ସିକ୍ତ ହେବା ପାଇଁ ।



# କୋଣାର୍କ

ଫଣୀନ୍ଦ୍ର ଭୂଷଣ ନନ୍ଦ

ବ୍ରାହ୍ମଣୀ ବାଲିରେ ସେ
ତା'ର ସମସ୍ତ ପୋଷାକ ଖୋଲିଥିଲା
ମୁଁ ଭେଟିଥିଲି କୋଣାର୍କକୁ ।

ତା' ଦେହର ଉତ୍ତାପ ଧାସରେ
ପୋଡ଼ିଯାଇଥିଲା ବାଲି
ବ୍ରାହ୍ମଣୀର ପାଣି
ମନ ଓ ହୃଦୟ
ତରଳି ବୋହିଯାଇଥିଲା
ମୁଁ ସରି ଯାଇଥିଲି
ବୁନ୍ଦା ବୁନ୍ଦା ପାଣି ହୋଇ
ଉଡ଼ିଯାଇଥିଲି ଅନ୍ଧାରରେ ।

କେବଳ ତାଆରି ସ୍ୱର
କେବଳ ତାଆରି ଧଡ଼କନ
ପ୍ରତିଧ୍ୱନିତ ହେଉଥିଲା
ମୋ ଜାଗାରେ ଗଢ଼ି ଉଠିଥିଲା
କୋଣାର୍କ ଦେହର ଦାହର ।

କୋଣାର୍କ ପ୍ରସ୍ତୁତ ଥାଏ
ସବୁ ଅଦଉତି ପରେ ବି

## ୬୨୨ କବିତା  କୋଣାର୍କ

ପୋଷାକ ଖୋଲିଦିଏ ପବନ ଖେଳରେ
ବୋକଦିଏ ମେଘର ଝଲକରେ
ସଙ୍ଗମ ରଚୁଥାଏ ଆକାଶ ସହ
ସଞ୍ଜ ଓ ସକାଳେ ।

ମୁଁ ଭେଟେ ରାତିର ନୀରବ
ପ୍ରହରେ କୋଣାର୍କକୁ ।

କୋଣାର୍କସହ ସାମ୍ନାସାମ୍ନି ହେଲେ
ମୁଁ ଭୁଲିଯାଏ ବାଟ
ଡଙ୍ଗା ଜାଣେନା କୂଳର ଠିକଣା
ନଈ ଚିରଦିନ ବାଟବଣା
ନିଜ ନିଜର ସ୍ମୃତି ସହ
ସ୍ୱପ୍ନ ସହ
ସ୍ପଷ୍ଟ ହୁଏ କୋଣାର୍କ ।

ମେଘ ରାତିରେ କୋଣାର୍କ
ବିଜୁଳି ଶବଦରେ ଝଲମଲେଇଯାଏ
ଭାଙ୍ଗିଯାଏନା ତା'ର ଯୌବନ
ବରଂ ମୁଁ ଚଡ଼କି ଯାଏ ବାରବାର ।

ଯେଉଁ ପବନ ଛୁଇଁ ଛୁଇଁ
କୋଣାର୍କକୁ ଆନମନା ହୁଏ
ସେହି ପବନ ମାଡ଼ରେ
ମୁଁ ହଜାଇ ଦିଏ ମୋର ଯନ୍ତ୍ରଣା ।

କୌଣସି କବିତା ରଚି ପାରେନା
କୋଣାର୍କର ଇତିହାସ
ତା'ର ଦୁଃଖ ଓ ଦରଦ

ମୁଁ ଭାଙ୍ଗୁଥାଏ ପ୍ରସ୍ଥ ପ୍ରସ୍ଥ
ପବନ ମାଡ଼ରେ ।

ପରସ୍ପରର ପ୍ରେମ ଓ ଭାବନା
ଧକ୍‌କା ଖାଏ
ବ୍ରାହ୍ମଣୀ ଚିରଦିନ ମୋ ସ୍ୱପ୍ନରେ
ଘୁମାଏ ।

ସେ ଉଲଗ୍ନ ହେଲାବେଳେ
ଗରମ ହୋଇଯାଏ କୂଳ
ମୁଁ ଦେଖିନି କେବେ ବି
କୋଣାର୍କକୁ
ମୋର ପ୍ରେମିକାକୁ
ଉଚ୍ଛନ୍ନ ଆକୁଳ ।

ସେ ପୋଷାକ ଖୋଲିବା ସତ୍ତ୍ୱେ
ମୁଁ ଛୁଇଁ ନ ଥିଲି
ଦେଖିନଥିଲି ତା' ଦିହ
ସେ କୋଣାର୍କ ପରି
ନିଜ ଶିବିରରେ ସୁରକ୍ଷିତ;
ମୁଁ ବି ।



# କୋଣାର୍କର୍ ଘୋଡ଼ା

ଆଶୁତୋଷ ପରିଡ଼ା

ସିଏ କ'ଣ ଫିଟି ଆସିଥିଲା
ସୂର୍ଯ୍ୟଙ୍କ ଅସ୍ତାବଳରୁ,
ମେଘର ପର୍ବତ, ସମୁଦ୍ର ଓ ଝାଉଁବଣ ଡେଇଁ
ପହଞ୍ଚି ଯାଇଥିଲା ଏଠି
ପଥରର ଏ ଆଶ୍ଚର୍ଯ୍ୟ ପାଖରେ ?
କେତେ ଶତାବ୍ଦୀ ବିତି ଗଲାଣି,
ସେ ରହିଛି ନିଜ ଦୃପ୍ତ ବିଶାଳତାରେ ।

ଏକ ଉଗ୍ର ଅବୟବ ଲମ୍ୱିଆସିଛି ଆଗକୁ
ନିଆଁର ଶିଖା ପରି
ଉଦ୍ୟତ ତରବାରି ପରି;
ତା'ର କ୍ରୁଦ୍ଧ ଖୁରାର ଆଘାତରେ
ଲୋଟି ପଡ଼ିଛି କେହି ଯୋଦ୍ଧା
କେଉଁ ଶତ୍ରୁ ପକ୍ଷର ?
ନା, ତା ନିଜ ପିଠିରୁ ଖସି ପଡ଼ିଥିବା ସବାର ?

ତା' ନାକରୁ ବାହାରି ଆସୁଛି ତପ୍ତ ନିଃଶ୍ୱାସ
ବାଜୁଛି ଭଙ୍ଗା ମନ୍ଦିରର ଛାତିରେ,
କେଉଁ ପଥରର ରକ୍ତରେ
ତିଆରି ହୋଇଛି ତା'ର ଇତିହାସ ?

ଗଭୀର ରାତିରେ
ପଥରର କାନମାନେ ଶୁଣିପାରନ୍ତି ତା'ର ହ୍ରେଷା
ତା'ର ଖୁରାର ଶବ୍ଦ,
ମନ୍ଦିରର କାନ୍ଥରେ
ଚିରକାଳ ଆଲିଙ୍ଗନାବଦ୍ଧ ଯୁଗଳ ମୂର୍ତ୍ତିମାନେ,
ନୃତ୍ୟରତ ଅପ୍‌ସରାମାନେ
ଯୁଦ୍ଧଯାତ୍ରୀ ସୈନ୍ୟ ଓ ସାମନ୍ତମାନେ
ଆଉ ଯେତେ ହାତୀ, ସିଂହ,
ସାପ ଓ ସରୀସୃପମାନେ
ଦେଖିପାରନ୍ତି, ଯେତେବେଳେ ସେ ଡେଇଁପଡ଼େ
ଚୌତରାରୁ ତଳକୁ;
ଗୋଟେ ପାଗଳ ଘୋଡ଼ା ଧାଇଁବୁଲେ
ସୂର୍ଯ୍ୟ ମନ୍ଦିରର ଚାରିପାଖରେ,
ସବୁ ମୂର୍ତ୍ତିମାନଙ୍କୁ ଡାକେ
ଓହ୍ଲାଇ ଆସିବାକୁ ଏକ ଶୋଭାଯାତ୍ରାକୁ
ପଥର ଘୋଡ଼ାଙ୍କୁ କହେ
ଟାଣିବାକୁ ସୂର୍ଯ୍ୟଙ୍କ ରଥକୁ ।

କୋଣାର୍କର ବିଶାଳ ଚକସବୁ
ଘୂରିବାକୁ ଆରମ୍ଭ କରନ୍ତି ନିଜ ନିଜ ସ୍ଥାନରେ
ନିମଜ୍ଜିତ ବାଲିର ଚଟାଣ ଉପରେ,
ଘୁଞ୍ଚେନାହିଁ ବାଲିଭର୍ତ୍ତି ପଥରର ରଥ,
ନିଜ ଓଜନରେ ଚାପି ହୋଇଯାଏ
ଏକ ବିଷଣ୍ଣ ଅତୀତ ।

କୋଣାର୍କର ଘୋଡ଼ା
ଫେରିଆସେ ନିଜ ପଥରର ଅବସ୍ଥାନକୁ,

ପ୍ରତିଦିନ ଉତ୍ତପ୍ତ ହୁଏ ସୂର୍ଯ୍ୟ କିରଣରେ
ଶୋଷିନିଏ ସବୁ ଚକିତ କୋଳାହଳ,
ସମୟର କମ୍ପନ;

ପ୍ରତି ରାତିରେ ସେ ଦେଖାଦିଏ
ଏକ ଅଦ୍ଭୁତ ସ୍ୱପ୍ନ ଭିତରେ,
କେତେ କ୍ଷୁଧିତ ଆତ୍ମାର ଜ୍ୱାଳା ନେଇ
କେତେ ଅବଦମିତ ଶକ୍ତି ନେଇ
ସେ ଘୂରିବୁଲେ ବିନା ଲଗାମ୍‌ରେ,
ବିନା ଶସ୍ତ୍ର, ବିନା ଆରୋହୀରେ ।

ସମୁଦ୍ରରୁ ଉଠିଆସୁଥିବା ସୂର୍ଯ୍ୟପରି
ସେ ବାହାରି ଆସୁଥାଏ
ପଥରର ନୀରବତାରୁ ।
ଡାକେ ସମସ୍ତଙ୍କୁ
ସବାର ହେବା ପାଇଁ ତା' ପିଠିରେ ।
ଯାଇ ପହଞ୍ଚିବାକୁ ଆଲୋକର କେନ୍ଦ୍ରରେ ।
ମହାକାଳର ସୀମାରେ ।



# ପାଷାଣ ପ୍ରତିମା କୋଣାର୍କ

**ହରିହର ମିଶ୍ର**

ଏ କେଉଁ ପାଠଶାଳା
ତମେ ଶିଖିଲ
ପଥରରେ ଫୁଲ ଫୁଟେଇବା

ଅଳଙ୍କରଣର ଅହଙ୍କାର
ସହିତ କି ବିଚିତ୍ର ସମ୍ପର୍କ
ନିରହଙ୍କାର ନିରାବରଣର

କିଭଳି ଶୃଙ୍ଗାର ପୁଣି
କିଭଳି ମିଳନ ଏତେ
ଉଲଗ୍ନତା ଓ ଶାଳୀନତାର
କିଭଳି ବିଚ୍ଛେଦ ପୁଣି
କିଭଳି ମିଳନ ଏହା
ଜନ୍ମରେ ଯେଉଁ ଦେହ
ମରଣରେ ତାହା

ଜନ୍ମହେବା ପାଇଁ ଯାହା
ମରିବାରେ ତାହା
ମଝିରେ ଅଜଣା କେତେ ଆକର୍ଷଣ
ଏ ଦେହର, ମଦିରାହୀନ ଶିଳାପାତ୍ର
ଝଲସୁଛି ସୁବର୍ଣ୍ଣର ଭ୍ରାନ୍ତିରେ କେବଳ
ଯାହା ଅଛି ପଥରରେ
ହୃଦୟର ବୁଝାମଣା
ରସ ଓ ରହସ୍ୟ
ମଣିଷ ବୁଝୁନି ତାହା
ଏହାହିଁ ତ ତୁମ ଅବସୋସ ?



# କୋଣାର୍କ

**ବଂଶୀଧର ଷଡ଼ଙ୍ଗୀ**

ପ୍ରତିଦିନ ସୂର୍ଯ୍ୟ ଦେବତାଙ୍କୁ ଟେକିଦିଏ ଦୁଃଖ ସବୁ ଆଞ୍ଜୁଳାରେ ଭରି ।
ମୁଁ ସିନା ଅଣ୍ଟାଏ ପାଣିରେ ଥାଇ ଆଞ୍ଜୁଳାଏ ଦୁଃଖ ଦିଏ ଦେବତାଙ୍କୁ ।
ଚାରିପାଖେ ଥାଏ କିନ୍ତୁ ମୋ ଦୁଃଖର ଅସରନ୍ତି ପାଣି ।

ମୋ କଳା ଦେହରେ ଦୁଃଖ ଜଳୁଥାଏ ପଇତାଟେ ହୋଇ ।
ଚୁପୁଡ଼ା ଗାମୁଛା ଗୋଟେ ମୋ କାନ୍ଧରେ ପଡ଼ିଥାଏ ରକ୍ତେ ଓଦା ହୋଇ ।
ମୁଁ ପ୍ରତ୍ୟହ ସୂର୍ଯ୍ୟ-ପୂଜାକରେ ମୋ ରକ୍ତରେ ପୂର୍ଣ୍ଣାହୁତି ଦେଇ ।

ବିନ୍ଦୁ : ଥରେ ଆସି ଦେଖିଯା : ମୋ ଦେହର ଭଙ୍ଗା କୋଣାର୍କକୁ
ରକ୍ତରେ ପଡ଼ିଚି ଛାଇ ବିଶ୍ୱାମିତ୍ର ମେଘନା ମୂର୍ତ୍ତିର ଏବଂ
କୋଳାହଳ ମୁଖରିତ ମୋ ରକ୍ତର ସହର ।
ହେ କୋଣାର୍କର ନଟୀମାନଙ୍କର:
ଝାଂଜ ଏବଂ ମୃଦଙ୍ଗର ସ୍ୱର ।
ଉଚ୍ଚାଟ ନ କର ।

ବିନ୍ଦୁ: ମୁଁ କି ଏକ ଅବହେଳିତ ମୂର୍ତ୍ତି କେଉଁ କୋଣାର୍କର
ଚାରିପାଖେ ବେଢ଼ିଅଛି ଅଳନ୍ଧୁ ଓ ବୁଢ଼ିଆଣୀ ଜାଲ
ଅପୂଜା ରହିଚି ପ୍ରଭୁ ବହୁଦିନୁ । ଅନ୍ଧାରରେ ମୋ ଦେହ ବତୁରେ ।
ହେ ସୂର୍ଯ୍ୟ ଦେବତା ମୋତେ ଆଲୋକିତ କର
ଦୁସ୍ତର ଅନ୍ଧାର ମୋର ଚାରିପାଖେ । ପ୍ରଭୁ : ତ୍ରାହିକର ।।
ମୋ ବ୍ୟକ୍ତିତ୍ୱର ନବଗ୍ରହ ମୂର୍ତ୍ତି ଖଣ୍ଡଖଣ୍ଡ ହୋଇ ସାଇତା
ହୁଏ ତା ଦେହର ଯାଦୁଘରେ ଏବଂ ମୋର ଅହଙ୍କାର
ଭାଙ୍ଗି ଚୁରମାର୍ ହୁଏ ତା' ଦେହର ସମୁଦ୍ର କୂଳରେ
ସ୍ତନର କୋଣାର୍କ ତା'ର ନଖାଘାତ ହୁଏ ସମୟର
ସୁତୀକ୍ଷ୍ଣ ନଖରେ । ମୋ ପରି ସିଏ ବି ଶୁଣେ ସମୟର ପାଦଶବ୍ଦ
ପ୍ରତି ମୁହୂର୍ତ୍ତରେ । ମୋ ପ୍ରେମିକା ବୋଲି ଯିଏ ଗର୍ବ କରିପାରେ
ଏ କଥା ବୁଝିବା କ'ଣ ତା' ପକ୍ଷରେ କଷ୍ଟ ହୋଇପାରେ ।



# କହ କୋଣାରକ କହ

ଗୀତାଞ୍ଜଳି ପଣ୍ଡା

ପ୍ରଥମ ସକାଳ ସୂର୍ଯ୍ୟ ଯେଦିନ
ଛୁଇଁଥିବ ତୁମ ଦେହ
ମନେପଡୁଛିକି ସେଦିନ ପୁଲକ
କହ କୋଣାରକ କହ ।

ଦେଖିଥିଲି ତୋର ଲାବଣ୍ୟ ରୂପକୁ
ଝରୁଥିଲା ପ୍ରୀତିଝର
ମନେପଡ଼େ ଆଜି ଯେଦିନ ପହିଲେ
ମନର କିଶୋରୀ ମୋର
ଝାଉଁବଣ ସବୁ ଗୀତ ଗାଉଥିଲେ
ପବନର ସୁରେ ସୁରେ
ସାଗରର ଉର୍ମି ନୃତ୍ୟ କରୁଥିଲେ
ଓଦା ବେଲାଭୂମି ପରେ ।

ପାଶେଥିଲ ପ୍ରିୟ ହାତଚାପିଦେଇ
ଭିଡ଼ିନେଇଥିଲ ମୋତେ
ମନ ହରିଣୀ ମୋ' ହଜିଯାଇଥିଲା
ପୀରତି ମଗନ ନୃତ୍ୟେ ।

ସେଦିନ ସକାଳ ସୂର୍ଯ୍ୟ ଆସିଲେ
କୁହୁଡ଼ିର ଛାତି ଚିରି

ଉଷ୍ମ ପରଶେ ତୋ ଛାତି କଳସୁ
ଝରିଲା ଅମୃତବାରି ।

ମନେପଡ଼େ ଆଜି ଆପଣା ଇଚ୍ଛାରେ
ଭିଜି ଓଦା ଜରଜର
ଧୀର ପବନରେ ତୋ ପଣତ କାନି
ଝାଳ ପୋଛିଦେଲା ମୋର ।
ଆଜି ଅପରାହ୍ନେ ମୁଁ ଯେବେ ଦେଖୁଛି
ମଉଳା ଖରାର ରୂପ
ଆପଣା ଦେହରେ ବୟସ ଛାଡ଼ିଛି
କେତେ ଯେ ଅଜଣା ଛାପ
ଯଉବନ ସ୍ତମ୍ଭ ଭାଙ୍ଗି ପଡ଼ିଲାଣି
ଧୂଳିରେ ଲୋଟୁଛି ମନ
ଝାଉଁବଣ ଛାଇ ଲମ୍ବି ଯେ ଗଲାଣି
ସରି ଆସିଲାଣି ଦିନ ।

ତୋ ଦେହ ତ ଏବେ ଭାଙ୍ଗି ପଡ଼ିଛିକି
ସମୟର ବାଲିପରେ
ମନତଳ ଢେଉ ଘୁଞ୍ଚିତ ଯାଉଛି
ଜୀବନଠୁ ବହୁ ଦୂରେ
ହତଶିରୀ ଆଜି ଘନ ଝାଉଁବଣ
ସବୁଜ ସପନ ନାହିଁ
ପବନ ଆଣିଛି ନିଆଁର ଝଲକ
ମନର ଦହନ ପାଇଁ
ହେଲେ ଆଜିପୁଣି ସଞ୍ଜ ଆଗରୁ
ତୋର ଭଗ୍ନଦେହ ଛୁଇଁ
ଆପଣା ଛାତିରେ ଅନୁଭବିଛି ମୁଁ
ସପନ ମୋ ସରିନାହିଁ ।

ତଥାପି ମୋ ଦେହେ ବଢୁଛି ମମତା
ପ୍ରୀତିର ଅମୃତ ଧାର
ଏବେବି ଶୁଭୁଛି ଭଙ୍ଗା ଛାତିତଳେ
ପଥର ଗୀତର ସ୍ୱର ।

ସତେଲୋ କୋଣାର୍କ ପହିଲି ପରଶ
ଦିଏଲୋ ପୁଲକ ଭରି
ଦେହ ଭାଙ୍ଗିଗଲେ ବୟସର ସାଥେ
ମନତ ଯାଏନା ମରି
ଆଜି ବି ମୋ ଦେହ ଶିହରି ଉଠୁଛି
ଛୁଇଁଲେ ତୋ ଭଗ୍ନଦେହ
ପ୍ରୀତି ଛୁଇଁଦେଲେ ପ୍ରେମ ତ ହଜେନା
କହ କୋଣାରକ କହ ।



# କୋଣାର୍କ

ହଂସନାଥ ମୁଦୁଲି

କୁହ କୋଣାରକ କୁହ
କେମିତି ଏ ଜାତି ଗଢ଼ିଥିଲା ତୋତେ
ପଥରକୁ ଚିରି ନିହାଣ ମୁନରେ ଢାଳି ତା' ଅନ୍ତର ଲୁହ ।

ବାରଶ ବଢ଼େଇ ବାର ବରଷରେ ଲହୁ ସବୁ ଲୁହ କରି
ପାଷାଣ ଦେହରେ ଜୀବନର ଛବି ଦେଇଥିଲେ ଯେ ଉତାରି
ସେହି ସବୁ ଛବି ବିଳାପ କରୁଛି ଆଜି କାହିଁ ବାଢ଼ି କୋହ ।୧ ।

ବିଶୁ ମହାରଣା ସବୁ କଳା ଦେଇ ଗଢ଼ିଥିଲା ତୋତେ ବସି
କେଉଁ ଦୋଷ ଲାଗି ଅଧା ରହିଗଲା ବୁଝିହେଲା ନାହିଁ କିଛି
ବାରଶ ବଢ଼େଇ ପାଇଁକି ସହିଦ ହୋଇଗଲା ତା'ର ପୁଅ ।୨ ।

ସମୟ ସୁଅରେ ଆଜି ତୁ ରହିଛୁ ସାଗର କୂଳରେ ଠିଆ
ଭାଙ୍ଗି ପଡ଼ିଥିବା ଅବୟବ ଦୁଃଖ ହୋଇଛି ତୋ ଦେହ ସୁଆ
ଆମେ ଖାଲି ଯାହା ଅତୀତକୁ ଭାଳି ଚାହିଁଛୁ ଭବିଷ୍ୟ ମୁହଁ ।୩ ।

ବେଳେବେଳେ ମନେ ଉଠିଆସେ ଝଡ଼ ଆମେ କି ପାରିବୁ ନାହିଁ
ତୋହପରି ଏକ ଚାରୁ ଚିତ୍ରଟିଏ ଆଜି ଗଢ଼ିଦେବା ପାଇଁ
ସତ ପାଲଟିବ ସ୍ୱପ୍ନ, ଆମ ଶିଳ୍ପୀ ସାଥିରେ ତୁମେଟି ଥାଅ ।



